# ସମୟ ସୁଅ




ଗୌରାଙ୍ଗ ଚରଣ ପରିଡ଼ା

# ସମୟ ସୁଅ

*ଲେଖକ :*
ଗୌରାଙ୍ଗ ଚରଣ ପରିଡ଼ା
ସର୍ବୋଦୟ ନଗର
ପୁରୀ- ୨ (ଓଡ଼ିଶା)

*ପ୍ରକାଶିକା :*
ଶ୍ରୀମତୀ ପ୍ରେମଶୀଳା ପରିଡ଼ା
ସର୍ବୋଦୟ ନଗର
ପୁରୀ- ୨ (ଓଡ଼ିଶା)

*ପ୍ରଥମ ସଂସ୍କରଣ :*
ଜୁଲାଇ -୨୦୧୩
(ରଥଯାତ୍ରା)

*ଅଳଙ୍କରଣ ଓ ଅକ୍ଷର ବିନ୍ୟାସ :*
ବି. ପି. ପ୍ରିଣ୍ଟର୍ସ
ବାଶେଳୀ ସାହି, ପୁରୀ- ୧

*ମୁଦ୍ରଣ :*
ବିଶ୍ୱମୁକ୍ତି ପ୍ରେସ
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

ମୂଲ୍ୟ : ଟ ୧୫୦/-
(ଏକଶତ ପଚାଶ ଟଙ୍କା ମାତ୍ର)





# Samaya Sua

*Writer :*
**Gourang Charan Parida**
Sarbodaya Nagar,
Puri-2 (Odisha)

*Publisher :*
**Smt. Premasila Parida**
Sarbodaya Nagar,
Puri-2 (Odisha)

*First Edition :*
**July-2013**
(Car Festival)

*DTP & Design :*
**B. P. Printers**
Baseli Sahi, Puri-1

*Printer :*
**Biswamukti Press**
Chandrasekharpur,
Bhubaneswar

**Price : ₹. 150/-**
**(Rupees One Hundred Fifty only)**

# ନିଜ କଲମରୁ ...



ଏ ପୁସ୍ତକରେ ସନ୍ନିବେସିତ ସମସ୍ତ ପ୍ରବନ୍ଧ ଶ୍ରୀଯୁକ୍ତ ବିମଳ ପ୍ରସାଦ ଦାସଙ୍କ ସଂପାଦନାରେ ପୁରୀରୁ ପ୍ରକାଶିତ ପାକ୍ଷିକ ସମ୍ବାଦପତ୍ର 'ଉତ୍କଳ ନକ୍ଷତ୍ର'ରେ 'ସମୟ ସୁଅ' ସ୍ତମ୍ଭରେ ବିଭିନ୍ନ ସମୟରେ ପ୍ରକାଶ ପାଇଛି । ଭିନ୍ନ ଭିନ୍ନ ସାମାଜିକ ପ୍ରସଙ୍ଗ ତଥା ସାଂପ୍ରତିକ ଘଟଣାବଳୀ ଉପରେ ମୁଁ କେବଳ କିଛି ବିଶ୍ଳେଷଣାତ୍ମକ ଟିପ୍ପଣୀ ଏଥିରେ ସଂକ୍ଷିପ୍ତରେ କରିଛି । ସୁତରାଂ ସ୍ତମ୍ଭ ଅପେକ୍ଷା ଏଥିରେ ପ୍ରବନ୍ଧର ଉପାଦାନର ମାତ୍ରା ବେଶି । ଇଏ ଏକ ସମ୍ବାଦ ସାହିତ୍ୟ । ପ୍ରଦତ୍ତ ପ୍ରବନ୍ଧମାନଙ୍କରେ କିଛି ସୂଚିତ ଘଟଣା ସାମାନ୍ୟ ପୁରୁଣା ହେଲେ ବି ପ୍ରସଙ୍ଗ ସର୍ବକାଳୀନ ପ୍ରଯୁଜ୍ୟ ।

ପିଲାବେଳୁ ଲେଖିବା ପ୍ରତି ଲୋଭ ଥିଲା । ବାଣୀବିହାରରେ ପଢ଼ିବା ବେଳେ ଇଂରାଜୀ ଖବର କାଗଜରେ କେତେବେଳେ କେମିତି ଲେଖୁଥିଲି । ଜୀବନ ପାଇଁ ଜୀବିକା ଖୋଜିଲା ଭିତରେ ସେ ଅଭ୍ୟାସ କିଛି ଦିନ ପାଇଁ ବିରାମ ନେଇଯାଇଥିଲା, ଯଦିଓ ଏକ ନିର୍ଭିକ ଅଭିବ୍ୟକ୍ତି ଉପସ୍ଥାପନା କରିବାର ମାନସିକତା ଦୃଢ଼ ଥିଲା ।

ସମାଜ, ଧରିତ୍ରୀ, ସମୟ ପରି ଓଡ଼ିଶାର ଅନେକ ଦୈନିକ ଖବର କାଗଜରେ ପ୍ରବନ୍ଧମାନ ଲେଖିଛି । ଦୈନିକ ସମ୍ବାଦପତ୍ର 'ଉତ୍କଳିକା'ରେ ପ୍ରଥମେ ସ୍ତମ୍ଭ ଲେଖିଲି 'ଚର୍ଚ୍ଚାରେ ଚର୍ଚ୍ଚାରେ' । ପରେ ଦୈନିକ 'ସ୍ୱାଭିମାନ'ର 'ସମୟସ୍ରୋତ' ନାଁରେ ସ୍ତମ୍ଭ ଲେଖିଲି । ଦୈନିକ 'ଓଡ଼ିଶା ଭାସ୍କର'ରେ ଦୀର୍ଘ ଆଠ ବର୍ଷ ଧରି ମୋର 'ଚର୍ଚ୍ଚାରେ' ନାମକ ସାପ୍ତାହିକ ସ୍ତମ୍ଭ ଥିଲା । ଏବଂ ଗତ ପାଞ୍ଚ ବର୍ଷ ଧରି ନିୟମିତ ଭାବେ 'ଉତ୍କଳ ନକ୍ଷତ୍ର'ରେ ଲେଖି ଆସୁଛି ।

ଅନେକ ପ୍ରଶ୍ନ କରନ୍ତି,- ଏମିତି ଲେଖିବାରେ ଲାଭ କ'ଣ ମିଳୁଛି ? ଅବଶ୍ୟ ମୋ ପାଖରେ ଏହାର ନିର୍ଦ୍ଦିଷ୍ଟ ଉତ୍ତର ବୋଧେ ନାହିଁ । କିନ୍ତୁ କୌଣସି ସାମାଜିକ ପ୍ରସଙ୍ଗ ଏବଂ ସାଂପ୍ରତିକ ଘଟଣାର କିଛି ବିଲକ୍ଷଣ ଦେଖିଲେ ମୋର ଏ ବିଶ୍ଳେଷଣାତ୍ମକ ମନ କିଛି କହିବାକୁ ଚାହେଁ । ଏବଂ ଏକ ସର୍ବଭାରତୀୟ କର୍ମଚାରୀ ସଂଗଠନର ନେତୃତ୍ୱ ନେଇ ସାରା ଭାରତ ଭ୍ରମଣ କଲାବେଳେ କିଛି ଅନୁଭୂତି ବି ଲେଖକୀୟ ଚିନ୍ତାକୁ ସମୃଦ୍ଧ କରେ । ସେଇଥି ପାଇଁ ସମ୍ଭବତଃ ଲେଖୁଛି । ଲାଭ କ୍ଷତିର ହିସାବ ପାଠକେ କରିବେ ।

ଏ ପୁସ୍ତକର ଆତ୍ମପ୍ରକାଶ ପାଇଁ ବିମଳବାବୁ (ବିମଳ ପ୍ରସାଦ ଦାସ)ଙ୍କ ଯଥେଷ୍ଟ ଅବଦାନ ରହିଛି । ଡ଼ିଟିପି, ସଂଶୋଧନ, କଭର ଡ଼ିଜାଇନ୍ କରିବାରେ ତାଙ୍କର ସାହାଯ୍ୟ ଅତୁଳନୀୟ । ଧନ୍ୟବାଦ ଓ କୃତଜ୍ଞତା ଜଣାଉଛି ।

ପୂର୍ବ ପ୍ରକାଶିତ ଆଉ କିଛି ପ୍ରବନ୍ଧକୁ ନେଇ ଦ୍ୱିତୀୟ ପୁସ୍ତକଟି ପ୍ରକାଶ କରିବାକୁ ଇଚ୍ଛା । ପାଠକ ବନ୍ଧୁ ଏବଂ ଶୁଭେଚ୍ଛୁଙ୍କର ଆଶୀର୍ବାଦ ଆଶା କରେ ।

ଦୀନବନ୍ଧୁ ଚରଣ ଦାସ

# ଭିତର ପୃଷ୍ଠାରେ

# ପ୍ରାଥମିକ ଶିକ୍ଷାର ଅଧୋଗତି

ଭାରତର ଏକ ବୃହତ ଏନ୍.ଜି.ଓ. 'ପ୍ରଥମ' ଏ ଦେଶର ଗ୍ରାମାଞ୍ଚଳରେ ଥିବା ପ୍ରାଥମିକ ଶିକ୍ଷାନୁଷ୍ଠାନ ଉପରେ ତାଙ୍କର ଗତ ଜାନୁଯାରୀ ୨୦୧୩ରେ ଯେଉଁ ବାର୍ଷିକ ଷ୍ଟାଟସ୍ ରିପୋର୍ଟ ଦେଇଛନ୍ତି, ଏହା ଯେତିକି ଦୁଃଖ ଦାୟକ ସେତିକି ଆଶ୍ଚର୍ଯ୍ୟ ଜନକ। ଏ ରିପୋର୍ଟ ୨୦୧୨ ମସିହା ପାଇଁ ଉଦ୍ଦିଷ୍ଟ। ୨୦୦୫ ମସିହାରୁ ଏଇ ସଂସ୍ଥା ଶିକ୍ଷା ଉପରେ ତା'ର ସର୍ଭେକ୍ଷଣ ରିପୋର୍ଟ ଧାରାବାହିକ ଭାବେ ଦେଇ ଆସୁଛି।

'ପ୍ରଥମ'ର ୨୦୧୨ ମସିହା ରିପୋର୍ଟରେ ଉଲ୍ଲେଖ ଅଛି- ଭାରତର ଗ୍ରାମାଞ୍ଚଳରେ ଥିବା ସରକାରୀ ପ୍ରାଥମିକ ବିଦ୍ୟାଳୟରେ ପଞ୍ଚମ ଶ୍ରେଣୀ ପିଲା ଦ୍ୱିତୀୟ ଶ୍ରେଣୀର ପାଠ ଜାଣନ୍ତି ନାହିଁ। ଗତବର୍ଷ ପଞ୍ଚମ ଶ୍ରେଣୀ ପିଲାଙ୍କର ଷ୍ଟାଣ୍ଡାର୍ଡ଼ ଯାହାଥିଲା, ଏବର୍ଷ ତା'ଠାରୁ କମ୍।

ସର୍ଭେକ୍ଷଣରେ ଏନ୍.ଜି.ଓ. ଦୁଇଟି ବିଷୟ ଉପରେ ତଥ୍ୟ ସଂଗ୍ରହ କରିଥିଲା। ପ୍ରଥମଟି ହେଲା, ପଠନ ଜ୍ଞାନ ଏବଂ ଦ୍ୱିତୀୟଟି ହେଲା ଗଣିତରେ ଦକ୍ଷତା। ପନ୍ଦର ହଜାର ପ୍ରାଥମିକ ବିଦ୍ୟାଳୟର ପ୍ରାୟ ୬ ଲକ୍ଷ ପିଲା ଏ ସର୍ଭେରେ ସଂପୃକ୍ତ ଥିଲେ। ସେମାନଙ୍କର ଶିକ୍ଷାର ମାନ ପରୀକ୍ଷା କରାଯାଇଥିଲା। ପଞ୍ଚମ ଶ୍ରେଣୀରେ ପଢୁଥିବା ପ୍ରାୟ ତେପନ ପ୍ରତିଶତ ପିଲା ଦ୍ୱିତୀୟ ଶ୍ରେଣୀର ପଢ଼ାବହି ପଢ଼ି ପାରିଲେନି। ୨୦୧୧ ମସିହାରେ ଏଇ ହାର ବାଆନ(୫୨) ପ୍ରତିଶତ ଥିଲା। ଏବଂ ୨୦୧୦ ମସିହାରେ ଏହା ଥିଲା ୪୬ ପଏଣ୍ଟ ୩ ପ୍ରତିଶତ। ତୃତୀୟ ଶ୍ରେଣୀ ପିଲା ବି ପ୍ରଥମ ଶ୍ରେଣୀ ବହି ପଢ଼ିପାରୁ ନାହାନ୍ତି। ଏ ବର୍ଷ ଏମାନଙ୍କର ସଂଖ୍ୟା ହେଉଛି ଏକଷଠି ପ୍ରତିଶତରୁ ଅଧିକ।

'ପ୍ରଥମ'ର ଷ୍ଟାଟସ୍ ରିପୋର୍ଟ କହେ- ପିଲାଙ୍କ ଗଣିତ ଜ୍ଞାନ ମଧ୍ୟ କମ୍। ପଞ୍ଚମ ଶ୍ରେଣୀ ପିଲାଏ ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାର ଫେଡ଼ାଣ ଜାଣନ୍ତି ନାହିଁ। ଏମାନଙ୍କର ହାର ହେଉଛି ଏବେ ଛୟାଳିଶ ପଏଣ୍ଟ ପାଞ୍ଚ ପ୍ରତିଶତ। ଏଇ ସଂଖ୍ୟା ୨୦୧୧ ମସିହାରେ ୩୯ ପ୍ରତିଶତ ଥିବାବେଳେ ୨୦୧୦ ମସିହାରେ ମାତ୍ର ୨୯ ପ୍ରତିଶତ ଥିଲା। ଆନ୍ଧ୍ର, କେରଳ, କର୍ଣ୍ଣାଟକକୁ ଛାଡ଼ି ଦେଲେ ଅନ୍ୟ ସବୁ ରାଜ୍ୟରେ ପଞ୍ଚସ୍ତରୀ ଭାଗ ପଞ୍ଚମ ଶ୍ରେଣୀ ପିଲା ହରଣ ଜାଣନ୍ତି ନାହିଁ। ସର୍ଭେ ରିପୋର୍ଟରେ ଏକଥା ବି ଅଛି- ସରକାରୀ ପ୍ରାଥମିକ ସ୍କୁଲରେ ସଂପ୍ରତି ପିଲାଙ୍କ ସଂଖ୍ୟା ବଢ଼ିଛି। ଏହା ପ୍ରାୟ ୯୬ ପ୍ରତିଶତରୁ ଅଧିକ ହେଲାଣି। ମଧ୍ୟାହ୍ନ ଭୋଜନ, ମାଗଣା ଶିକ୍ଷା, ମାଗଣା ବହି ଏବଂ ମାଗଣା ପୋଷାକ ଏହାର କାରଣ

ବୋଲି ଷ୍ଟାଟସ୍ ରିପୋର୍ଟ କହେ।

ଦୁଃଖର କଥା ଯେ, ଆନ୍ତର୍ଜାତିକ ବୌଦ୍ଧିକ ଷ୍ଟାଣ୍ଡାର୍ଡରେ ଭାରତର ପିଲାମାନେ ଏବେ ସର୍ବନିମ୍ନରେ ଅଛନ୍ତି ବୋଲି ଅଭିଯୋଗ ହେଲାଣି। ଭାରତର ନୀତି ନିର୍ଦ୍ଧାରକ ଏବଂ ଯୋଜନା ପ୍ରଣେତାଙ୍କ ପାଇଁ ଏହା ସଂପ୍ରତି ବଡ଼ ଚ୍ୟାଲେଞ୍ଜ୍।

୨୦୧୦ ମସିହା ଏପ୍ରିଲ ମାସରେ ଭାରତ ବର୍ଷର ୬ ବର୍ଷରୁ ୧୪ ବର୍ଷ ପିଲାଙ୍କ ପାଇଁ ଶିକ୍ଷାକୁ ଏକ ମୌଳିକ ଅଧିକାରର ମାନ୍ୟତା ଦେଇ ଶିକ୍ଷା ଅଧିକାର ଆଇନ ପ୍ରଣୟନ ହୋଇ କାର୍ଯ୍ୟକାରୀ ହୋଇଥିଲା। ଆଇନରେ ଲେଖାଥିଲା- ତିନିବର୍ଷ ଭିତରେ ଶିକ୍ଷାର ମାନ ଏଠି ବଢ଼ିବ। ପ୍ରାଥମିକ ବିଦ୍ୟାଳୟରେ ଗୁଣାତ୍ମକ ଶିକ୍ଷା ଦିଆଯିବ। ଶିକ୍ଷା ଅଧିକାର ଆଇନରେ ଦିଆଯାଇଥିବା ଏହି ପ୍ରତିଶ୍ରୁତିର ଅବଧି ୨୦୧୩ ମାର୍ଚ୍ଚ ୩୧ ତାରିଖରେ ପୂର୍ଣ୍ଣହେଲା। କିନ୍ତୁ ପ୍ରଥମର ରିପୋର୍ଟ କହୁଛି- ଭାରତରେ ପ୍ରାଥମିକ ଶିକ୍ଷାର ଅଧୋଗତି ହୋଇଛି। ୨୦୧୦ ମସିହାରେ ସରକାରୀ ବିଦ୍ୟାଳୟରେ ଶିକ୍ଷାର ମାନ ଯାହା ଥିଲା ତାହା ଏବେ ନାହିଁ।

ସରକାରଙ୍କ ସଫେଇ ହେଉଛି- ପ୍ରାଥମିକ ଶିକ୍ଷାର ଭିତ୍ତିଭୂମି ଉନ୍ନତ ହୋଇଛି। ସର୍ବଶିକ୍ଷା ଅଭିଯାନ ଯୋଜନା ଚାଲିଛି। ସବୁ ସ୍କୁଲ ଘର ପକ୍କା ହୋଇଛି। ପିଲାଙ୍କ ପାଇଁ ପିଇବା ପାଣି ମିଳୁଛି। ସ୍କୁଲରେ ପାଇଖାନା ଅଛି। ଖେଳିବା ନିମନ୍ତେ ଖେଳ ପଡ଼ିଆ ରହିଛି। ମଧ୍ୟାହ୍ନ ଭୋଜନ ଦିଆଯାଉଛି। ଶିକ୍ଷା ବଜେଟ୍‌ରେ ହଜାର ହଜାର କୋଟି ଟଙ୍କାର ଖର୍ଚ୍ଚ ବ୍ୟବସ୍ଥା ରଖାଯାଇଛି। ଅବଶ୍ୟ ଆବଶ୍ୟକୀୟ ଶିକ୍ଷକ ନିଯୁକ୍ତିର ଅଭାବକୁ ଛାଡ଼ି ଦେଲେ ଏବେ ସରକାରୀ ସ୍ତରରେ ସବୁ ଠିକ୍ ଅଛି ବୋଲି ସରକାର କହନ୍ତି। ତେବେ ପ୍ରଶ୍ନ ହେଉଛି- ଏତେ ସରକାରୀ ସୁବିଧା ସତ୍ତ୍ୱେ ପିଲାଙ୍କ ଶିକ୍ଷାର ମାନ କମୁଛି କାହିଁକି ? ପଞ୍ଚମ ଶ୍ରେଣୀର ପିଲାଏ ଦ୍ୱିତୀୟ ଶ୍ରେଣୀ ପାଠ ଜାଣନ୍ତି ନାହିଁ କାହିଁକି ? ଏବଂ କାହିଁକି ତେବେ ଅଭିଭାବକମାନେ ନିଜ ପିଲାଙ୍କୁ ସରକାରୀ ସ୍କୁଲକୁ ନଛାଡ଼ି ଘରୋଇ ବିଦ୍ୟାଳୟମାନଙ୍କୁ ପଠାଉଛନ୍ତି।

ଏହା ସତ ଯେ, ସହରାଞ୍ଚଳରେ ସମୁଦାୟ ପ୍ରାଥମିକ ସ୍କୁଲର ପ୍ରାୟ ଅଧେ ହେଉଛି ଘରୋଇ ପ୍ରାଥମିକ ସ୍କୁଲ। ଗ୍ରାମାଞ୍ଚଳରେ ଏଇ ଘରୋଇ ସ୍କୁଲର ସଂଖ୍ୟା ପ୍ରାୟ ପଚିଶ ପ୍ରତିଶତରେ ପହଁଞ୍ଚି ଗଲାଣି। ଶିକ୍ଷା ଅଧିକାର ଆଇନରେ ଲେଖାଥିବା ନିରନ୍ତର ତଥା ବ୍ୟାପକ ମୂଲ୍ୟାୟନ ପରୀକ୍ଷା ଇଂରାଜୀରେ କହିଲେ କଣ୍ଟିନିୟୁସ ଆଣ୍ଡ୍ କଂପ୍ରେହେନସିଭ୍ ଏଭାଲ୍ୟୁଏସନ ଟେଷ୍ଟ୍ ଘରୋଇ ସ୍କୁଲ ମାନଙ୍କରେ ଭଲ ଭାବେ ଚାଲିଛି। ସରକାରୀ ବିଦ୍ୟାଳୟ ମାନଙ୍କରେ କିନ୍ତୁ ଏ ପରୀକ୍ଷା ଭଲ ଚାଲୁନାହିଁ- ଯଦିଓ ବା ମୂଲ୍ୟାୟନର ଏ ବ୍ୟବସ୍ଥା ଅଛି। ଏହା ସ୍ପଷ୍ଟ ଯେ, ପିଲାଙ୍କ ତ୍ରୁଟି କିପରି ସଂଶୋଧିତ ହେବ, ସରକାରୀ ଶିକ୍ଷକମାନେ ଜାଣନ୍ତି ନାହିଁ କିମ୍ବା ଏ ସଂପର୍କରେ ଏମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ପ୍ରଶିକ୍ଷଣ ନାହିଁ। ଓଡ଼ିଶାରେ ଶିକ୍ଷକମାନଙ୍କ ମାନ ଜାଣିବା ପାଇଁ ଯେଉଁ ଯୋଗ୍ୟତା ଭିତ୍ତିକ ପରୀକ୍ଷା

କରାଯାଇଥିଲା ଏଥିରେ କୁଆଡ଼େ କୋଡ଼ିଏ ପ୍ରତିଶତ ପିଲା କୃତକାର୍ଯ୍ୟ ହୋଇଥିଲେ ବୋଲି ଖବର ଆସିଥିଲା। ଶିକ୍ଷକ ଏଲିଜିବିଲିଟି ଟେଷ୍ଟରେ ଅନେକ ବି.ଏଡ୍. ପିଲା ବି ଭାଗ ନେଇଥିଲେ।

ପ୍ରଥମର ଏ ସର୍ଭେ ରିପୋର୍ଟ ପ୍ରକାଶ ପାଇବା ପରେ ଭାରତର ମାନବ ସଂବଳ ମନ୍ତ୍ରାଳୟ ଦେଶର ପ୍ରାଥମିକ ଶିକ୍ଷା ନେଇ ଖୁବ୍ ଗମ୍ଭୀର ହୋଇ ପଡ଼ିଥିବା କଥା ଆଲୋଚନା ହେଉଛି। ଶିକ୍ଷା ସହ ସଂପୃକ୍ତ ଅନେକ ତତ୍ତ୍ୱବିତ୍ କିନ୍ତୁ କହନ୍ତି- ଶିକ୍ଷାର ଅଧୋଗତି ପାଇଁ କେବଳ ଶିକ୍ଷକ ଦାୟୀ ନୁହନ୍ତି। ଏଥିପାଇଁ ରାଷ୍ଟ୍ରର ନୀତି ନିର୍ଦ୍ଧାରକ ଏବଂ ଯୋଜନା କର୍ତ୍ତାମାନେ ଦାୟୀ। ଯେଉଁମାନେ ସିଲାବସ୍ ପ୍ରସ୍ତୁତ କରୁଛନ୍ତି ସେମାନେ ମଧ୍ୟ ଜାଣନ୍ତି ନାହିଁ, ଆମ ଗ୍ରାମାଞ୍ଚଳ ପିଲାଙ୍କ ଷ୍ଟାଣ୍ଡାର୍ଡ଼ କେତେ ? ଏମାନଙ୍କର ବୌଦ୍ଧିକ ସୂଚଙ୍କ କେତେ ? ଶିକ୍ଷାବିତ୍‌ମାନେ ନିଜ ପାଣ୍ଡିତ୍ୟକୁ ପିଲାଙ୍କ ଉପରେ ଲଦି ଦେଉଛନ୍ତି। ବିନା ପରୀକ୍ଷାରେ ପାଶ୍ କରିଦେବାର ନୀତି ପିଲାଙ୍କ ପାଠପଢ଼ା ଉତ୍ସାହକୁ ଭାଙ୍ଗି ଦେଉଛି। 'ପାଠ ନପଢ଼ିଲେ କିଛି ଦଣ୍ଡ ନାହିଁ' ନୀତି ପିଲାଙ୍କୁ ସୁହାଉଛି। ଅଭିଭାବକମାନେ ନିଜ ପିଲାଙ୍କ ଭବିଷ୍ୟତ ନେଇ ସେତେ ଆଉ ଆଶାନ୍ୱିତ ନୁହଁନ୍ତି। ପାଠ ପଢ଼ି କ'ଣ କରିବ ବୋଲି ଏମାନେ ପ୍ରଶ୍ନ କରୁଛନ୍ତି। ଏବଂ ସର୍ବୋପରି ଶିକ୍ଷକମାନେ ବେଶି ଶିକ୍ଷାଦାନ କାମ ନକରି ବାହ୍ୟ କାମ କରୁଛନ୍ତି। ଶିକ୍ଷକ/ଶିକ୍ଷୟିତ୍ରୀମାନେ ସଂପ୍ରତି  ଏକ ପ୍ରକାର ସାମାଜିକ କର୍ମୀ। ଏମାନେ ସର୍ଭେ କରିବେ। ଜନସଂଖ୍ୟା ଗଣିବେ। ଏବଂ ଏକାଧିକ ରେଜିଷ୍ଟରରେ ତଥ୍ୟ ପୂରଣ କରି ସ୍କୁଲରେ କିରାଣୀ କାମ କରିବେ। ସିଲାବସ୍ ଅନୁସାରେ ପାଠ ପଢ଼ା ଶେଷ ବୋଲି ଖାତାରେ ଲେଖିଦେଲେ ସବୁ କାମ ଶେଷ।

ସୁତରାଂ ଭାରତରେ ପ୍ରାଥମିକ ଶିକ୍ଷା ଏବେ ବିପଦ୍‌ଜନକ ଅବସ୍ଥାରେ ଅଛି। ଲକ୍ଷ ଲକ୍ଷ ପିଲାଙ୍କୁ ଅଯୋଗ୍ୟ ଏବଂ ମୁର୍ଖ କରାଯାଉଛି। ଏମିତି ଏକ ମାନବ ସଂବଳକୁ ନେଇ ଏକବିଂଶ ଶତାବ୍ଦୀରେ ଭାରତ କିପରି ମହାଶକ୍ତି ହେବାର ସ୍ୱପ୍ନ ଦେଖୁଛି, ତାହା ହିଁ ଆଶ୍ଚର୍ଯ୍ୟ। ଏବଂ ସବୁଠାରୁ ବଡ଼କଥା ହେଲା, କିଛି ନିକମା ଶିକ୍ଷାନୀତି ନିର୍ଦ୍ଧାରକ ଏବଂ ତଥାକଥିତ ଶିକ୍ଷାବିତ୍‌ଙ୍କ ହାତରେ ଆମର ମୂଳ ପ୍ରାଥମିକ ଶିକ୍ଷା କେତେ ନିରାପଦ ଏଥିନେଇ ବିତର୍କର ଆବଶ୍ୟକତା ରହିଛି।



# କ୍ଷୁଦ୍ର ଜମାକାରୀଙ୍କ ଦୁର୍ଦ୍ଦଶା

ଏଇ କିଛିଦିନ ହେଲା ଚିଟ୍ ଫଣ୍ଡକୁ ନେଇ ଅନେକ ଚର୍ଚ୍ଚା। ଟି.ଭି. ଚ୍ୟାନେଲରେ ବସି ବିଦ୍ୱାନ ପଣ୍ଡିତମାନେ ଏହାର ବିଭିନ୍ନ ଦିଗ ନେଇ ତର୍ଜମା କରୁଛନ୍ତି। ଅର୍ଥନୀତିର 'ଗ୍ରେଟର ଫୁଲ' ଥିଓରି କଥା ବି ଉଠୁଛି। କ'ଣ କରିଥିଲେ କ'ଣ ହୋଇଥାନ୍ତା ଇଏ ମଧ ତର୍ଜମାର ଏକ ଅଂଶ। କିନ୍ତୁ ଜୀବନର ସମସ୍ତ ସଞ୍ଚିତ ଅର୍ଥକୁ ହରେଇ ବସି କ୍ଷୁଦ୍ର ଜମାକାରୀଟି ଯେଉଁ ମାନସିକ ଯନ୍ତ୍ରଣା ପାଏ, ସେ କେବଳ ତା'ରି ଦୁଃଖ ହିଁ ବୁଝେ। ନିଜ ଜମା ଟଙ୍କା କେବେ ପାଇବ ତା'ର ଗ୍ୟାରେଣ୍ଟି ନାହିଁ।

ଚିଟ୍ ଫଣ୍ଡ କିଳଙ୍କରୀ କଥା ପ୍ରଥମେ ଉଠିଲା ପଶ୍ଚିମବଙ୍ଗରେ। ସାରଦା ଗ୍ରୁପ ନାମକ ଏକ ଚିଟ୍‌ଫଣ୍ଡ ଜମାକାରୀଙ୍କ ଠାରୁ ହଜାର ହଜାର କୋଟି ଟଙ୍କା ଲୁଟି ନେବାର ଏ ଥିଲା ଖବର। ଏହାର ଖଳନାୟକ କିଏ ଜଣେ ସୁଦୀପ୍ତ ସେନ୍। ସୁଦୀପ୍ତ ନିଜେ ଠକି ନେଇଥିବା ଟଙ୍କାରୁ ବେଶ୍ କିଛି ଅଂଶ ସେଠାର ରାଜନେତା, ମନ୍ତ୍ରୀ, ଏମ୍.ପି., ଏମ୍.ଏଲ୍.ଏ. ଏବଂ ପ୍ରଶାସକମାନଙ୍କୁ ଦେଇଛନ୍ତି ବୋଲି ଅଭିଯୋଗ କରନ୍ତି।

ଏବେ ଓଡ଼ିଶାରେ ମଧ ପ୍ରଦୀପ ସେଠୀ ନାମକ ଜଣେ ଠକ ଜମା ଗ୍ରହଣକାରୀ ନିଜର ଚିଟ୍‌ଫଣ୍ଡ 'ଅର୍ଥତତ୍ତ୍ୱ' କଂପାନୀ ମାଧ୍ୟମରେ କରିଥିବା କାରନାମାର ବିସ୍ତୃତ ସମ୍ବାଦ ଆସିଛି। ପ୍ରଦୀପ ବି କହନ୍ତି- ଓଡ଼ିଶାର ମନ୍ତ୍ରୀ, ରାଜନେତା, ପ୍ରଶାସକ ତାଙ୍କ ଠାରୁ ଲାଞ୍ଚ ନେଇଛନ୍ତି। ତାଙ୍କରି ଟଙ୍କାରେ ମନ୍ତ୍ରୀ, ରାଜନେତାମାନେ ବିଳାସ କାର ଚଢୁଛନ୍ତି ଏବଂ ପଞ୍ଚତାରକା ହୋଟେଲରେ ଅୟସ କରୁଛନ୍ତି।

ସତକଥା ହେଲା, ସୁଦୀପ୍ତ ଓ ପ୍ରଦୀପଙ୍କର ଠକାମି ପ୍ରଥମ ଘଟଣା ଏଠି ନୁହେଁ। ଏହା ପୂର୍ବରୁ ବି ଅନେକ ଠକ ସେମାନଙ୍କର ଠକ ସଂସ୍ଥା ମାଧ୍ୟମରେ ସାଧାରଣ ଲୋକଙ୍କୁ ଠକିଛନ୍ତି। ଦୁଇବର୍ଷରେ ନିଜର ଅର୍ଥ ଦୁଇଗୁଣ ହୋଇଯିବ ଭାବି ଟଙ୍କା ଜମାକରି ଜମାକାରୀ ଶେଷରେ ହତାଶ ହୋଇଛି। ଏବଂ ମାନସିକ ସନ୍ତୁଳନ ହରାଇ ସେ ଆତ୍ମହତ୍ୟା କରିଛି। ଆତ୍ମହତ୍ୟାର ବି ସୁଅ ଆରମ୍ଭ ହୋଇଗଲାଣି ପଶ୍ଚିମବଙ୍ଗ ଓ ଓଡ଼ିଶାରେ।

ଅନେକ ଯୁକ୍ତି କରି କହନ୍ତି- ଏସବୁ ଭୁଲ ହେଉଛି ଜମାକାରୀର, ଇଏ ଲୋଭର ଫଳ। ଯେଉଁଠି ଲୋଭଥାଏ ସେଠି ମଧ ଠକି ଯିବାର ଆଶଙ୍କା ଥାଏ। ଚିଟ୍‌ଫଣ୍ଡ ମାଧ୍ୟମରେ ଠକି ଯିବାର ଏଠି ଅନେକ ଉଦାହରଣ ଥିଲେ ମଧ ଗରିବ ଜମାକାରୀ ଯେ କାହିଁକି

ଚିଟ୍‌ଫଣ୍ଡରେ ଜମାକରେ ଏହାହିଁ ଆଶ୍ଚର୍ଯ୍ୟ। ଇଏ ଏକ ପ୍ରକାର ଆତ୍ମହତ୍ୟାର ପ୍ରବଣତା। ନିଜେ ସଚେତନ ନହେଲେ ଏପରି ଦୁର୍ଘଟଣାରୁ ରକ୍ଷା କରିବା କଷ୍ଟ।

ଏପରି ଯୁକ୍ତି କରିବା ଅବଶ୍ୟ ବହୁତ ସହଜ। କିନ୍ତୁ କ୍ଷୁଦ୍ର ଜମାକାରୀ ଯେ ମୂର୍ଖ ନୁହେଁ, ଏକଥା ସତ। କେଉଁ ସାମାଜିକ ତଥା ଅର୍ଥନୈତିକ ବାଧ୍ୟତା ତାକୁ ଚିଟ୍‌ଫଣ୍ଡରେ ଜମା କରିବାକୁ ବାଧ କରୁଛି, ଏକଥା କିନ୍ତୁ ତର୍ଜମା ହେବା କଥା। ଦୁର୍ଭାଗ୍ୟ ଯେ ଏହା ହେଉନାହିଁ।

ଯାହା ଜଣାଯାଏ, ଚିଟ୍‌ଫଣ୍ଡ ବା 'କିଟି' ଫଣ୍ଡରେ ଯେଉଁମାନେ ଜମା କରନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଗ୍ରାମାଞ୍ଚଳର ଦିନ ମଜୁରିଆ। ସହର ବସ୍ତି ଅଞ୍ଚଳରେ ରହୁଥିବା ଶ୍ରମିକ ଏବଂ ନିମ୍ନମଧ୍ୟବିତ୍ତ ଶ୍ରେଣୀ ବି ଏଥିରେ ସାମିଲ। ଏମାନେ ଦୈନିକ ରୋଜଗାରରୁ କିଛି ଅଂଶ ସଞ୍ଚୟ କରିବାକୁ ଚାହାନ୍ତି। ଏ ସଞ୍ଚୟର ଉଦ୍ଦେଶ୍ୟ ଥାଏ, ନିଜ ପିଲାର ପାଠପଢ଼ା ସୁବିଧା ହେବ। ଝିଅର ବାହାଘର ଏବଂ ରୋଗ ହେଲେ ଚିକିତ୍ସା କରିବାକୁ ସହାୟକ ହେବ। ପ୍ରଶ୍ନ ଆସେ, ଏସବୁ ସେ ଜମା କରିବ କେଉଁଠି ? ଏଥିପାଇଁ ସୁରକ୍ଷିତ ଜମା ସଂସ୍ଥା କାହିଁ ?

ଗ୍ରାମାଞ୍ଚଳରେ ଆବଶ୍ୟକୀୟ ବ୍ୟାଙ୍କ ସୁବିଧା ନାହିଁ। ଯେଉଁ ବ୍ୟାଙ୍କ ବି ଅଛି, ସେଥିରେ ଜମା ରଖିବା କଷ୍ଟ। ପାଶ୍‌ବୁକ୍‌ଟିଏ ଖୋଲିବା ପାଇଁ ଅନେକ କାଗଜପତ୍ରର ଦରକାର ହୁଏ। ପ୍ୟାନ୍ କାର୍ଡ଼ ଏବଂ କେ.ୱାଇ.ସି. ନଥିଲେ ପାଶ୍‌ବୁକ୍ ମିଳୁନି।

ପୋଷ୍ଟ ଅଫିସ ଉପରେ ଲୋକଙ୍କର ଆଉ ସେତେ ଭରସା ନାହିଁ। ଏଥିରେ ମଧ୍ୟ ଠକେଇ ହେଉଛି। ଟଙ୍କା ହେରଫେରର ଅନେକ ଖବର ନିୟମିତ ଏଠି ଆସେ। ପୋଷ୍ଟମାଷ୍ଟର ଠାରୁ ଆରମ୍ଭ କରି ପୋଷ୍ଟ ଅଫିସିର କର୍ମଚାରୀମାନେ ଏଠି ଠକେଇରେ ସଂପୃକ୍ତ ଥାଅନ୍ତି।

ଏଇଥିପାଇଁ କ୍ଷୁଦ୍ର ଜମାକାରୀଟି ଚିଟ୍‌ଫଣ୍ଡ ପାଖକୁ ଯାଏ। ଠକି ଯିବାର ଭୟ ଅପେକ୍ଷା ଜମା ଅର୍ଥ ଅଧିକ ହୋଇଗଲେ ଯେ ନିଜ ପିଲାର ପାଠପଢ଼ା ଏବଂ ଝିଅର ବିବାହ ସହଜରେ ହୋଇଯିବ, ଏ ଲୋଭ ତାକୁ ଚିଟ୍‌ଫଣ୍ଡ ପାଖକୁ ଯିବାକୁ ବାଧ କରାଏ।

ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କଥାକୁ ଚିଟ୍‌ଫଣ୍ଡର ଅଭିବୃଦ୍ଧି କଥା ଆଲୋଚନା କଲାବେଳେ ଆମେ ନଜର ଅନ୍ଦାଜ କରୁଛୁ। ସେ ହେଉଛି ନେତା, ଏବଂ ସମାଜରେ ପ୍ରତିଷ୍ଠିତ ଲୋକମାନଙ୍କର ପୃଷ୍ଠପୋଷକତା। ଏଇ ନେତା ଓ ଭଦ୍ରବ୍ୟକ୍ତି ମାନେ ଚିଟ୍‌ଫଣ୍ଡର ଗୁଣଗାନ କରନ୍ତି। ଜମା କରିବାକୁ ସାଧାରଣ ଲୋକଙ୍କୁ ପ୍ରବର୍ତ୍ତାନ୍ତି। ଏମିତି ବି ହୁଏ, ନେତା, ମନ୍ତ୍ରୀ, ପ୍ରଶାସକମାନେ ଠକ ଜମା ସଂସ୍ଥା ଏବଂ ସଂସ୍ଥାର ମାଲିକମାନଙ୍କୁ ସାଧାରଣରେ ପୁରସ୍କାର ଦିଅନ୍ତି। କାହାକୁ ଶ୍ରେଷ୍ଠ ସମବାୟବିତ୍ ଆୱାର୍ଡ଼ ଦିଆଯାଏ ତ କିଏ ଶ୍ରେଷ୍ଠ ସମାଜସେବୀ

ହୋଇଯାଏ। ପ୍ରଦୀପ ସେଠୀ କେବେ ଏପରି ପୁରସ୍କାର ପାଇଥିବା ଖବର ଆସିଲାଣି। ଏବଂ ପଶ୍ଚିମବଙ୍ଗର ସାରଦା ଚିଟ୍‌ଫଣ୍ଡର ସୁଦୀପ୍ତ ସେନ୍‌ଙ୍କୁ ଗରିବର ସାଥୀ କହି ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ସମ୍ମାନ ଦେଉଥିବା ଫଟୋଚିତ୍ର ଖବରରେ ପ୍ରକାଶ ପାଉଛି।

ଚିଟ୍‌ଫଣ୍ଡକୁ ଏପରି ସମ୍ମାନ ଏବଂ ପୃଷ୍ଠପୋଷକତା ଦେବା କଥା ସାଧାରଣ ଲୋକ ବି ଦେଖେ। ଏପରି ଚିଟ୍‌ଫଣ୍ଡକୁ ବିଶ୍ୱାସ କଲେ କ୍ଷତି କ'ଣ ବୋଲି ସେ ନିଜକୁ ବି ପ୍ରଶ୍ନ କରେ। ଏବଂ ସବୁଠାରୁ ବଡ଼କଥା ହେଲା, ରାଜନେତାର କଥାକୁ ସାଧାରଣ ଲୋକଟିଏ ସବୁ ସମୟରେ ନିଜ ଭରସାକୁ ଆଣିଥାଏ।

ଚିଟ୍‌ଫଣ୍ଡର ଚରିତ୍ର ହେଲା, ସେ ପିଟରକୁ ଲୁଟ୍ କରିବ ଏବଂ ପଲ୍‌କୁ ସାହାଯ୍ୟ କରିବ। ଅନ୍ୟ କଥାରେ କହିଲେ ମାଛ ତେଲରେ ସେ ମାଛ ଭାଜିବ। ଜଣେ ଜମାକାରୀର ସଞ୍ଚୟ ଅର୍ଥକୁ ନେଇ ଅନ୍ୟ ଜଣର ସୁଧ ଦେବ। ଇଏ ଏକ ପ୍ରକାର ହାତ ସଫେଇ କହିଲେ ଅତ୍ୟୁକ୍ତି ହେବ ନାହିଁ। ଇଏ ଏକ ପ୍ରକାର ଚଞ୍ଚକିତା ବି। ଏବଂ ଏହା ଠିକ୍ ଯେ, ଏ ଚଞ୍ଚକତା ନିଶ୍ଚୟ ଦିନେ ଧରାପଡ଼ି ବି ଯିବ। ଏବେ ଯାହା 'ସାରଦା' ଏବଂ 'ଅର୍ଥତତ୍ତ୍ୱ' ଜମା ସଂସ୍ଥାରେ ହେଉଛି ଏବଂ କିଛି ବର୍ଷ ପୂର୍ବେ 'ସଞ୍ଚୟିତା'ରେ ହୋଇଥିଲା।

ସୁତରାଂ ପ୍ରଶ୍ନ ଆସିବଣି, ପିଟରକୁ ଲୁଟ୍‌କରି ପଲ୍‌କୁ ସାହାଯ୍ୟ କରିବାର ଭେଳିକିକୁ ରୋକିବାର ବାଟ କ'ଣ କିଛି ନାହିଁ? ଅବଶ୍ୟ ଉତ୍ତର ଏହାର ସ୍ପଷ୍ଟ। ଉତ୍ତର ହେଉଛି- ୧୯୮୨ ମସିହାର ଚିଟଫଣ୍ଡ ଆଇନକୁ ରାଜ୍ୟ ସରକାରମାନେ କଡ଼ାକଡ଼ି ଲାଗୁ କଲେ ଚିଟ୍‌ଫଣ୍ଡର କିଳଙ୍କରୀ ଦେଖା ଦିଅନ୍ତା ନାହିଁ। ଆଇନରେ ଅଛି, ରାଜ୍ୟମାନେ ଚିଟ୍‌ଫଣ୍ଡ ନିୟନ୍ତ୍ରଣ ପାଇଁ ଏହାର ରେଜିଷ୍ଟ୍ରେସନ ଦେଖିବେ ଏବଂ ରେଗୁଲେଟର ନିଯୁକ୍ତ କରି ଚିଟ୍‌ଫଣ୍ଡକୁ ତଦାରଖ କରିବେ। ଏଇ ଆଇନ ଅନୁସାରେ ଭାରତରେ କେଉଁଠି ଚିଟ୍‌ଫଣ୍ଡ ହେଉନାହିଁ। ଯଦି ବା ଅଛି, ଏହା ବହୁତ କମ୍।

ସୁତରାଂ କ୍ଷୁଦ୍ର ଜମାକାରୀଟିଏ ପାଇଁ ସୁରକ୍ଷିତ ଜମା ସଂସ୍ଥାର ବ୍ୟବସ୍ଥା ହେବା ଦରକାର। ଯେଉଁ ସଂସ୍ଥାରେ ଜମାଦାତାଟିଏ ନିଜର ସଞ୍ଚିତ ଅର୍ଥକୁ ସହଜରେ ଜମା କରିପାରୁଥିବ ଏବଂ ଲାଭ ସହ ଜମା ଅର୍ଥକୁ ଫେରି ପାଇବାର ଗ୍ୟାରେଣ୍ଟି ବି ଥିବ। ନଚେତ୍ ସୁଦୀପ୍ତ ସେନ୍‌ମାନେ ଏଠି ବାରମ୍ବାର ଜନ୍ମ ନେଉଥିବେ।



# ଜନପ୍ରିୟ ଆର୍ଥିକ ରିହାତି

ଜନପ୍ରିୟ ଅର୍ଥିକ ରିହାତିର ଇଂରାଜୀ ନାଁ ହେଉଛି 'ପପୁଲିଜିମ୍'। ଶସ୍ତା ଏବଂ ମାଗଣାରେ ସାଧାରଣ ଲୋକଙ୍କୁ ଅନେକ ଜିନିଷ ଯୋଗାଇ ଦେଇ ଲୋକପ୍ରିୟ ହେବା ଏହାର ଏକମାତ୍ର ଉଦ୍ଦେଶ୍ୟ। ଏଥିରେ କିଛି ଭୋଟ ରାଜନୀତି ବି ଥାଏ। ଅବଶ୍ୟ ଗଣତନ୍ତ୍ରରେ ଭୋଟ ଜିତି ନିର୍ବାଚିତ ହେଲେ ହେଁ କ୍ଷମତା ଆସେ।

ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ୨୦୧୨-୧୩ରେ ଅନେକ ଜନପ୍ରିୟ ଆର୍ଥିକ ରିହାତି ଘୋଷଣା କରିଦେଲେ। ପପୁଲିଜିମ୍‌ର ଏକ ଲମ୍ବା ତାଲିକା ସେ ଦେଇ ଚାଲିଲେ। ଏ ତାଲିକା ହେଲା, ଏଣିକି ଦାରିଦ୍ର୍ୟ ସୀମା ରେଖା ତଳେ ଥିବା ଲୋକମାନଙ୍କୁ ଏକ ଟଙ୍କାରେ କେଜିଏ ଚାଉଳ ମିଳିବ। ଏ ପର୍ଯ୍ୟନ୍ତ ଏଇ ଚାଉଳ ଦୁଇ ଟଙ୍କାରେ ମିଳୁଥିଲା। ଟଙ୍କିକିଆ ଚାଉଳ ଯୋଜନା ଆରମ୍ଭ ବି ହୋଇ ଗଲାଣି।

ପ୍ରତ୍ୟେକ ଗାଁର ଯୁବକ ସଂଘକୁ ଏଣିକି ପାଞ୍ଚ ହଜାର ଟଙ୍କା ଅନୁଦାନ ମିଳିବ। ସ୍ୱୟଂ ସହାୟକ ଗୋଷ୍ଠୀ ବାର୍ଷିକ ଦଶ ହଜାର ଟଙ୍କା ଲେଖାଏଁ ପାଇବେ। ଏବଂ ଏକଥା ବି ଶୁଣାଯାଏ, ପ୍ରତି ବିଦ୍ୟାଳୟର ୯ମ ଶ୍ରେଣୀ ପିଲାଙ୍କୁ ବଣଭୋଜି କରିବାକୁ ଜଣକୁ ଦୁଇଶହ ଟଙ୍କା ଦିଆଯିବ। କାରଣ ଦଶମ ଏବଂ ଅଷ୍ଟମ ଶ୍ରେଣୀ ପିଲା ମାଗଣାରେ ସାଇକେଲ ଏବଂ ପୋଷାକ ପାଉଥିବା ବେଳେ ନବମ ଶ୍ରେଣୀ ପିଲାଏଁ କିଛି ପାଉ ନଥିଲେ। ଏମାନେ ଅସନ୍ତୁଷ୍ଟ ଥିଲେ।

ଉଣେଇଶ ସତୁରି ଦଶକରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଋଣ ମେଳା ଯୋଜନାକୁ ଲକ୍ଷ କରି ସେବେ ଅନେକ ଅର୍ଥଶାସ୍ତ୍ରୀ ପ୍ରଶ୍ନ କରିଥିଲେ - "ଇଏ କାହା ପଇସା ବଣ୍ଟା ଯାଉଛି ? ଟିକସ ଦାତାର ଅର୍ଥର ଅପବ୍ୟବହାର ନହେଉ। ମାଗଣାରେ କିଛି ଦେଇ ଦେଲେ ଦାରିଦ୍ର୍ୟ ହଟେ ନାହିଁ। ଆର୍ଥିକ ଅଭିବୃଦ୍ଧି ହୁଏନି। ବରଂ ପଙ୍ଗୁତା ବଢ଼େ। ଦାନରେ ଦାରିଦ୍ର୍ୟ କମୁଥିଲେ ଭିକାରୀମାନେ କେଉଁ କାଳୁ ଧନୀ ହୋଇ ସାରନ୍ତେଣି"।

ସତୁରି ଦଶକରେ ଏ ଅଭିବ୍ୟକ୍ତିର ଆଜି କିଛି ଅର୍ଥ ଅଛି କି ନା, ଏ ଲେଖକ ଜାଣେ ନାହିଁ। କିନ୍ତୁ ଏତିକି ଜାଣେ, ଭୋଟ ପାଇଁ ଜନପ୍ରିୟ ସ୍ଲୋଗାନ ଏବଂ ରିହାତି ଘୋଷଣାର ମାତ୍ରା ବଢ଼ି ବଢ଼ି ଚାଲିଛି।

ଆର୍ଥିକ ରିହାତି ଘୋଷଣା ଯେ କେବଳ ଓଡ଼ିଶାରେ ଚାଲିଛି, ତାହା ଠିକ୍ ନୁହେଁ। ଭାରତର ପ୍ରତ୍ୟେକ ପ୍ରଦେଶରେ ଏପରି ଘୋଷଣାମାନ ହେଉଛି। ନିର୍ବାଚନ ଆସିଲେ

ଶସ୍ତା ପପୁଲିଜିମ୍‌ର ସ୍ଲୋଗାନ ଶୁଭେ। କୃଷି ଋଣ ଛାଡ଼, ଋଣ ମେଳା, ବିଜୁଳି ଦେୟ ଛାଡ଼, ଏବଂ ସବ୍‌ସିଡ଼ି ଏପରି ଅନେକ ଜନପ୍ରିୟ ସୁବିଧା ପୂର୍ବରୁ ବି ଏ ଦେଶରେ ଘୋଷିତ ହୋଇ ସାରିଛି। ଏମିତି ବି କୁହାଯାଏ, ୨୦୦୯ ମସିହା ସାଧାରଣ ନିର୍ବାଚନ ପୂର୍ବରୁ ଡ଼କ୍ଟର ମନମୋହନ ସିଂହଙ୍କ ୟୁପିଏ ସରକାର ପ୍ରାୟ ପଞ୍ଚସ୍ତରୀ ହଜାର କୋଟି ଟଙ୍କାର କୃଷି ଋଣ ଛାଡ଼ କରିନଥିଲେ, ଦ୍ୱିତୀୟଥର ପାଇଁ କଂଗ୍ରେସ ପରିଚାଳିତ ୟୁପିଏ ସରକାର ନିର୍ବାଚନ ଜିତି ପାରିନଥାନ୍ତା।

କିନ୍ତୁ ମାଗଣାରେ ଅନେକ କିଛି ଯୋଗାଇ ଦେଲେ ଯେ ନିର୍ବାଚନ ଜିତିଯିବା ସହଜ, ଏହା ବି ସବୁ ସମୟରେ ଏକ ସିଦ୍ଧାନ୍ତିକ ସତ୍ୟ ନୁହେଁ। ଗତ ୨୦୧୧ ମସିହା ତାମିଲନାଡୁ ବିଧାନସଭା ନିର୍ବାଚନରେ ଡ଼ିଏମ୍‌କେର କରୁଣାନିଧିଙ୍କର ସମସ୍ତ ଜନପ୍ରିୟ ପ୍ରତିଶ୍ରୁତି ବିଫଳ ହେଲା। ଆନ୍ନାଡ଼ିଏମ୍‌କେର ଜୟଲଳିତା ନିର୍ବାଚନ ଜିତିଲେ। ଆନ୍ଧ୍ରରେ ଟଙ୍କାକିଆ ଚାଉଳ ଯୋଜନା ରହିଛି। କିନ୍ତୁ ୨୦୧୪ରେ ଯେ ସେଠି କଂଗ୍ରେସ ପୁଣି ନିର୍ବାଚନ ଜିତି ଶାସନ କରିବ, ଏହାର ଗ୍ୟାରେଣ୍ଟି ଦେଇ ହେଉ ନାହିଁ।

ସତକଥା ହେଲା, ପବ୍ଲିକ୍ ଏଠି ସବୁ ଜାଣେ। ରିହାତିର ପଛରେ ଲୁଚି ରହିଥିବା ଉଦ୍ଦେଶ୍ୟକୁ ବୁଝେ। କେବଳ ଆର୍ଥିକ ରିହାତି ଯୋଗାଣରେ ନିର୍ବାଚନ ଜିତି ହୁଏ ନାହିଁ ବୋଲି ରାଜନେତାମାନେ ବି ଜାଣନ୍ତି। କିନ୍ତୁ ବିଡ଼ମ୍ବନା ଯେ, ରିହାତି ଘୋଷଣା କରି ରାଜନୈତିକ ଦଳ ଫାଇଦାର ରିସ୍କ ନିଏ।

ଆର୍ଥିକ ରିହାତିର ଏଇ ମାଧ୍ୟମ ପ୍ରଥମେ ଦେଖା ଦେଇଥିଲା ଆମେରିକାରେ ଅଠର ଶହ ନବେ ଦଶକରେ। ସେଠି ନୂଆକରି ଜନ୍ମ ନେଇଥିବା 'ପପୁଲିଷ୍ଟ ପାର୍ଟି' ସେତେବେଳେ ଆହ୍ୱାନ ଦେଇଥିଲା - ତାଙ୍କ ଦଳ କ୍ଷମତାକୁ ଆସିଲେ ଜମି ଜାତୀୟକରଣ ହେବ; ଭୂମିହୀନଙ୍କୁ ଜମି ମିଳିବ; ରେଳଗାଡ଼ିର ଯାତ୍ରାକୁ ମାଗଣା କରାଯିବ। କାରଣ, 'ପପୁଲିଷ୍ଟ ପାର୍ଟି'ର ଯେଉଁମାନେ ସଭ୍ୟ ଏବଂ ସମର୍ଥକ ଥିଲେ ସେମାନେ ସମସ୍ତେ କ୍ଷୁଦ୍ର ଚାଷୀ ଏବଂ ଭୂମିହୀନ ଥିଲେ। ଏଇ ଘୋଷଣାର ସେତେବେଳେ ନାଁ ଦିଆଯାଇଥିଲା 'ପିପୁଲିଜିମ୍'। ସେଇ ଦିନଠୁଁ 'ପିପୁଲିଜିମ୍'ର ଏଇ ଧାରା ଆଉ ସୀମାବଦ୍ଧ ହୋଇ ରହିନାହିଁ। ପୃଥିବୀର ସବୁ ଦେଶରେ ଏହା ହେଉଛି। ଭାରତ ତେଣୁ ବାଦ୍ ଯାଇନାହିଁ।

ଥରେ ଗୋଟିଏ ରାଜନୈତିକ ଦଳ ଆର୍ଥିକ ରିହାତିଟିଏ ଘୋଷଣା କରିଦେଲେ, ପରେ ଏଥିନେଇ ରାଜନୈତିକ ପ୍ରତିଯୋଗୀତା ଆରମ୍ଭ ହୋଇଯାଏ। ଛାଡ଼ର ତାଲିକା କିଏ କେତେ ଲମ୍ବା କରି ପାରିବ ସେଥିପାଇଁ ତଣ୍ଟିକଟା ପ୍ରୟାସ ହୁଏ। ଭାରତରେ ଏ ପ୍ରକ୍ରିୟା ଅନେକ ବର୍ଷ ଧରି ଚାଲୁ ରହିଛି। ପ୍ରଶ୍ନ ଆସେ, ଦାରିଦ୍ର୍ୟ କମିଛି କି ?

ଓଡ଼ିଶାର ଆର୍ଥିକ ସ୍ଥିତି ଉପରେ ଓଡ଼ିଶାର ରାଜ୍ୟପାଳ ଏବେ ଦେଇଥିବା ଭାଷଣରେ ଏକ ବିରୁଦ୍ଧାଭାଷ ଥିଲା। ଓଡ଼ିଶାର ଆର୍ଥିକ ଅବସ୍ଥା ଭଲ ବୋଲି ରାଜ୍ୟପାଳ କହିଲେ। ମୁଣ୍ଡପିଛା ଆୟ ଚଉଦ ହଜାର ଟଙ୍କାରୁ ଛବିଶ ହଜାର ହୋଇଛି ବୋଲି ଏକଥା ଭାଷଣରେ

ଥିଲା। ବିରୁଦ୍ଧାଭାଷ ହେଉଛି- ମୁଣ୍ଡ ପିଛା ଆୟ ବୃଦ୍ଧି ପାଇଲେ କ୍ରୟ କରିବାର କ୍ଷମତା ବଢ଼ିଥାଏ। ଦୁଇଟଙ୍କା ଚାଉଳକୁ ଟଙ୍କାରେ ଦେବାକୁ ଯୋଜନା ହେଲା ବେଳେ, ଏ କ୍ଷମତା ବଢ଼ିଛି ବୋଲି କାହିଁକି ମନେ ହୁଏ ନାହିଁ। ତଥ୍ୟ ହୁଏତ ଭୁଲ୍ ଥାଇପାରେ କିମ୍ବା ହୋଇପାରେ ଧନୀ ଏଠି ଧନୀ ହୋଇଛି, ଗରିବ ଗରିବ ହୋଇଛି। ଏବଂ କିଛି ଲୋକଙ୍କ ପାଖରେ ଧନ ଜମା ହୋଇ ମୁଣ୍ଡ ପିଛା ଆୟର ଗରିବ ଗଣନାକୁ ବଢ଼େଇ ଦେଇଛି। କାଳେ ହୁଏତ ଅନ୍ୟ କେହି ରାଜନୈତିକ ଦଳ ମାଗଣାରେ ଚାଉଳ ଦେବା କଥା ଘୋଷଣା କରିଦେବ, ସେଥିପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏ ପ୍ରତିଶ୍ରୁତି ବି ଦେଇଦେଲେଣି- ଯଦି ଦରକାର ହୁଏ, ସେ ମାଗଣାରେ ଚାଉଳ ବି ଦେଇପାରନ୍ତି। କାରଣ ଖାଦ୍ୟ ସୁରକ୍ଷା ତାଙ୍କର ବଡ଼ ଚିନ୍ତା।

ପୃଥିବୀର ସାଂପ୍ରତିକ ଆର୍ଥିକ ମାନ୍ଦାବସ୍ଥା ପାଇଁ ଏଇ ଶସ୍ତା ଜନପ୍ରିୟ ରିହାତି ବା ପପୁଲିଜିମ୍‌କୁ ଏବେ ଦାୟୀ କରାଯାଉଛି। ଏକଥା କୁହାଯାଉଛି- ପୃଥିବୀର ଯେଉଁ ଦେଶରେ ଏଇ ଆର୍ଥିକ ରିହାତି ଏବଂ ସବ୍‌ସିଡ଼ିର ମାତ୍ରା ଅଧିକ ସେ ଦେଶରେ ଅର୍ଥନୀତି ଏବେ ପ୍ରାୟ ବେଶି ମାନ୍ଦା ପଡ଼ିଗଲାଣି। ବଜାରବାଦ ତଥା ଖୋଲା ଅର୍ଥନୀତି ସହ ଏହା ତାଳ ଦେଇ ଚାଲି ପାରୁନି। ରୋଗର ମୂଳ କାରଣକୁ ଚିକିତ୍ସା ନକରି ଲକ୍ଷଣକୁ ଚିକିତ୍ସା କଲେ ରୋଗୀର ରୋଗ ଭଲ ହୁଏ ନାହିଁ, କେବଳ ଲକ୍ଷଣଟି ଭଲ ହୋଇଥାଏ। ଇଏ ଏବେ ଭାରତୀୟ ଅର୍ଥନୀତିରେ ଦେଖାଦେଇଛି। ବ୍ୟକ୍ତିର କ୍ରୟ ଶକ୍ତି ନବଢ଼ାଇ ଅନେକ କିଛି ମାଗଣା ଏବଂ ରିହାତିରେ ଯୋଗାଇ ଦେଲେ କେବଳ ନିର୍ଭରଶୀଳତା ହିଁ ବଢ଼ୁଛି। ନିଯୁକ୍ତି କମୁଛି।

ଏ ଲେଖକ କିନ୍ତୁ ସବୁ ସବ୍‌ସିଡ଼ି, ରିହାତି ଏବଂ ସାମାଜିକ ଉତ୍‌ଥାନ ପାଇଁ ପପୁଲିଜିମ୍‌କୁ କିଛି ଭିକ୍ଷାଦାନ ବା ଅବାଞ୍ଛିତ ଅନୁଗ୍ରହ ବୋଲି ଭାବେ ନାହିଁ। ଭାବେ ଏହା ଏକ ସାମାଜିକ ଆବଶ୍ୟକତା। ଖାଦ୍ୟ ଶସ୍ୟରେ ସବସିଡ଼ି ନଥିଲେ ଏଠି ଭୋକିଲା ସମାଜଟିଏ ଥାଆନ୍ତା। ସାରରେ ସବ୍‌ସିଡ଼ି ନଥିଲେ ସବୁଜ ବିପ୍ଳବ ସମ୍ଭବ ହୋଇନଥାନ୍ତା। ଏବଂ କିରୋସିନିରେ ରିହାତି ନଥିଲେ ଏଠି ଆଉ ଜଙ୍ଗଲ ନଥାନ୍ତା କିମ୍ବା ବିଜୁଳିବତୀ ନଥିବା ହଜାର ହଜାର ଗାଁର ଗରିବ ଘରେ ଆଲୁଅ ନଥାନ୍ତା। କିନ୍ତୁ ରିହାତିର ଘୋଷଣା ସୀମିତ ଏବଂ ସ୍ୱଚ୍ଛ ହେବା ଦରକାର। ପ୍ରକୃତ ହିତାଧିକାରୀ ଏହା ପାଇବା ଉଚିତ୍। ପ୍ରତିବର୍ଷ ବିପିଏଲ୍‌ଙ୍କ ସଂଖ୍ୟା ବଢ଼ୁଛି। ଏଠି ଯେ ଏକ ଉନ୍ନତ ଆର୍ଥିକ ଅବସ୍ଥାଟିଏ ରହିଛି, ଏହାର ସୂଚନା ଏହା ଦିଏ ନାହିଁ। ବରଂ ଦାଦନ ଶ୍ରମିକଙ୍କ ସଂଖ୍ୟା ବୃଦ୍ଧି ଏଠି ଥିବା ଏକ ଭଙ୍ଗା ଅର୍ଥନୀତିର ଚିତ୍ର ଦିଏ। ଏବଂ ଏପରି ବି ପ୍ରଶ୍ନ ଆସେ, ମନୋରଂଜନ ପାଇଁ ଯୁବକ ସଂଘ ତଥା ଏସ୍.ଏସ୍.ଜି.ମାନଙ୍କୁ ଆର୍ଥିକ ଅନୁଦାନ ଦେବା ଏବଂ ପିକ୍‌ନିକ୍ ପାଇଁ ପିଲାଙ୍କୁ ଟଙ୍କା ସାହାଯ୍ୟ କରିବା ଏହା କେଉଁ ଜନକଲ୍ୟାଣ ଚିନ୍ତା ?

ଆର୍ଥିକ ଦୂରଦୃଷ୍ଟି ତେଣୁ ରହୁ।



# ଦୁର୍ନୀତି ଅସହ୍ୟ

ଗତ କିଛି ବର୍ଷ ଧରି ପ୍ରତି କେନ୍ଦ୍ର ତଥା ରାଜ୍ୟ ସରକାର ଗୋଟିଏ କଥା କହନ୍ତି - ଦୁର୍ନୀତିକୁ ଆଉ ସହି ହେବନି। ଏଣିକି ଏହା ପ୍ରତି ଜିରୋ ଟଲେରାନ୍ସ୍ ହିଁ ହେବ। ଏଇ ଯେମିତି ସଂସଦରେ ପ୍ରଶ୍ନ ପାଇଁ ଲାଞ୍ଚ ନେବା ଅଭିଯୋଗରେ କିଛି ବର୍ଷ ତଳେ ଏଗାର ଜଣ ଏମ୍.ପି.ଙ୍କୁ ସଂସଦରୁ ବାହାର କରି ଦିଆଗଲା। ଶୂନ୍ ସହନଶୀଳତା ବା ଜିରୋ ଟଲେରାନ୍ସ୍‌ର ଏହା ଏକ ଚମତ୍କାର ମଡେଲ୍ ବୋଲି ଦୁର୍ନୀତି ଏଠି ହ୍ରାସ ପାଇଛି କହୁଥିବା ପ୍ରବକ୍ତାମାନେ ଦାବୀ କରନ୍ତି।

ଦୁର୍ନୀତି ନେଇ ପୃଥିବୀ ସାରା ସର୍ଭେ କରୁଥିବା 'ଟ୍ରାନ୍ସଫାରେନ୍ସି ଇଣ୍ଟରନେସ୍ନାଲ' ର ଅଭିଯୋଗ ଥିଲା- ଭାରତରେ ଭ୍ରଷ୍ଟାଚାର ପ୍ରତି ଯଥୋଚିତ ଶାସ୍ତି ହୁଏନାହିଁ। ଲାଞ୍ଚ ନେବା ବେଳେ ପଦାଧିକାରୀଟି ସିଧାସଳଖ ଧରାପଡିଲେ ବି ସାମାନ୍ୟ ମାତ୍ର ଦଣ୍ଡ ଦେଇ ତାଙ୍କୁ ପୁଣି ତାଙ୍କର ପୂର୍ବ ପଦବୀରେ ଅବସ୍ଥାପିତ କରାଯାଏ।ସାଧାରଣ ଜନତା ମଧ୍ୟ ଏଠି ଦଣ୍ଡ ବିଧାନର ଏ ପ୍ରକ୍ରିୟାକୁ ପସନ୍ଦ କରନ୍ତି ନାହିଁ। ଏମାନେ ଏକଥା ଚାହାଁନ୍ତି- ନିଜ ପଦବୀର ଅପବ୍ୟବହାର କରି ଦାୟିତ୍ୱବାନ ପଦାଧିକାରୀ ନିୟମିତ ଭାବେ ଏବଂ ନିର୍ଭୟରେ ଲାଂଚ ନେଇ ନିଜ ପଦବୀର ଯେପରି ଅମର୍ଯ୍ୟାଦା ନ କରୁ ଏବଂ ସାଧାରଣ ଜନତାର ପରିହାସର ପାତ୍ରଟିଏ ନ ହେଉ।

ଦୁର୍ନୀତିର ସାଧାରଣ ଅର୍ଥ ହେଲା, ଏକ ସୁସ୍ଥ ସାମାଜିକ ପରିଚାଳନା ନିମନ୍ତେ ସ୍ଥିରିକୃତ ହୋଇଥିବା ସମସ୍ତ ଷ୍ଟାଣ୍ଡାର୍ଡକୁ ଅବଜ୍ଞା କରି ଘଟି ଯାଉଥିବା ଅନୁଚିତ ଘଟଣା। ଏବେ କିନ୍ତୁ ଅର୍ଥ ଲାଞ୍ଚକୁ ହିଁ ଦୁର୍ନୀତି କୁହାଯାଉଛି...।

"ଲିଭିଙ୍ଗ୍ ଉଇଥ୍ ହନର୍" ପୁସ୍ତକରେ ମାନବ ସମ୍ବଳ ବିଶେଷଜ୍ଞ "ଶିବ ଖେରା" ନୂଆ ତଥ୍ୟଟିଏ ଦିଅନ୍ତି। କହନ୍ତି- ଭାରତରେ ମାତ୍ର ଏକ ପ୍ରତିଶତ ପଦାଧିକାରୀ ଲାଞ୍ଚ ନିଅନ୍ତି। ଆଉ ଅନେଶ୍ୱେତ ପ୍ରତିଶତଙ୍କର ଲାଞ୍ଚ କାରବାର ସହ ମୋଟେ ସମ୍ପୃକ୍ତି ନଥାଏ। ତଥାପି ଆଶ୍ଚର୍ଯ୍ୟ ଯେ, ଏଇ ଏକ ପ୍ରତିଶତଙ୍କର ଦୁର୍ନୀତି ତାଡ଼ନାରେ ଭାରତରେ ଉନ୍ନୟନ ବନ୍ଦୀ ହୋଇପଡିଛି। ରାଜନୀତି, ଅର୍ଥନୀତି, ସାହିତ୍ୟ, ସଂସ୍କୃତି ସବୁ ଅଣନିଃଶ୍ୱାସୀ ହୋଇଛି।

ହଁ, ପାଠକ ବନ୍ଧୁ- ଏହା ସତ, ଦୁର୍ନୀତି ଏକ ସାମାଜିକ ସମସ୍ୟା ହେଲେ ବି ଏହାର ସୃଷ୍ଟି ପାଇଁ ବ୍ୟକ୍ତିର ଅସନ୍ତୁଳିତ ମାନସିକ ଅବସ୍ଥା ମଧ୍ୟ ଆଧାର ହୋଇଥାଏ।

ମନସ୍ତତ୍ୱବିତ୍‌ଙ୍କ ବିଶ୍ଳେଷଣରେ ଥାଏ, ଏଇ ମାନସିକ ଦୁର୍ବଳତା ହିଁ ବେଳେବେଳେ ରୋଗରେ ପରିଣତ ହୋଇଥାଏ। ଡାକ୍ତରୀ ଭାଷାରେ ଏହାକୁ ଏକ ଲକ୍ଷଣଯୁକ୍ତ "ସିଣ୍ଡ୍ରୋମ୍" କୁହାଯାଏ। ଏଇ ସିଣ୍ଡ୍ରୋମ୍‌ର ବର୍ଣ୍ଣନା ଠିକ୍ ଏମିତି - ପ୍ରଥମେ ଲାଞ୍ଚ ନେବା ବେଳେ ବ୍ୟକ୍ତିର ଦେହ ଥରେ। ଆଖି ଲାଲ୍ ହୋଇଯାଏ। ରକ୍ତଚାପ ବଢିଯାଏ। ଦେହରୁ ଝାଳ ବୁହେ। ଛାତି ଧଡ଼ ଧଡ଼ ହୁଏ। ବାରମ୍ବାର ଲାଞ୍ଚ ନେଲେ ଏ ଲକ୍ଷଣ ଆଉ ଦେଖାଯାଏନି। ସେତେବେଳେ ଏହା ଅଭ୍ୟାସଟିଏ ହୋଇଯାଏ ଏବଂ ସମୟ କ୍ରମେ ଏହି ଅଭ୍ୟାସ ଏତେ ଗଭୀର ହୋଇଯାଏ ଯେ, ଦିନେ ଲାଞ୍ଚ ନ ନେଲେ ପ୍ରଥମ ଲାଞ୍ଚ ନେବା ବେଳର ସେ ଲକ୍ଷଣ ପୁଣି ଫେରିଆସେ- ଦେହ ଥରେ। ଚିଡ଼ି ଚିଡ଼ା ଲାଗେ। ପାପୁଲି କୁଣ୍ଡେଇ ହୁଏ। ଏପରି ମଧ୍ୟ ଏବେ ସମ୍ବାଦଟିଏ ଆସିଥିଲା, ଜଣେ ବରିଷ୍ଠ ଅଫିସର୍ ତାଙ୍କର ନିଜ ଡ୍ରାଇଭର୍ ଠାରୁ ତାର ପ୍ରୋଭିଡେଂଟ୍ ଫଣ୍ଡ ଟଙ୍କା ମଞ୍ଜୁର ପାଇଁ ମାତ୍ର ପନ୍ଦର ଟଙ୍କା ନେବାବେଳେ ଲାଲ୍ ହସ୍ତରେ ଧରାହେଲେ। ଏହି ଲାଂଚ ପ୍ରକୃତରେ ସେ ପଦାଧିକାରୀଙ୍କ ଆବଶ୍ୟକତା ବା ଅଭାବ ପାଇଁ ନଥିଲା। ଏହା ହିଁ ଏକ ଅଭ୍ୟାସ ତଥା ସିଣ୍ଡ୍ରୋମ୍‌ର ପ୍ରତିଫଳନ ଥିଲା।

ସଂକ୍ଷେପରେ କହିଲେ, ଭାରତ ବର୍ଷର ସାମ୍ପ୍ରତିକ ଦୁର୍ନୀତି ଅସହ୍ୟ। ଏହା ଅସନ୍ତୁଳିତ ମାନସିକତା ଜନିତ ହେଉ କିମ୍ବା ଆବଶ୍ୟକତାରୁ ସୃଷ୍ଟି ହେଉ, ଦୁର୍ନୀତି ପ୍ରତି ଯେଉଁ କଠୋର ନିଷ୍ଠୁରତା ଏ ସମାଜ ଏଠି ଦେଖାଇବା କଥା ତାହା ଏ ପର୍ଯ୍ୟନ୍ତ ହୋଇନାହିଁ। ପ୍ରଗତି ତେଣୁ ଅଟକିଛି। ଭାରତ ଯେ ଅଚିରେ ବିକଶିତ ରାଷ୍ଟ୍ରଟିଏ ହୋଇଯିବ, ଏ ସ୍ୱପ୍ନ ତେଣୁ ଭାଙ୍ଗୁଛି ଏବଂ ହିତାଧିକାରୀଟିଏ ପାଇଁ ଟଙ୍କାଟିଏ ଉଦ୍ଦିଷ୍ଟ ହୋଇଥିଲେ ବି ସେ ମାତ୍ର ପନ୍ଦର ପଇସାର ସୁଫଳ ପାଉଛି। ଏଇଟା ହିଁ ବିଡମ୍ବନା।

ସାଧାରଣରେ ପୁଣି ମଧ୍ୟ ପ୍ରଶ୍ନଆସେ, ଏଠି ସି.ବି.ଆଇ., ସି.ଏ.ଜି., ଭିଜିଲାନ୍ସ ଆୟୋଗ, ନ୍ୟାୟାଳୟ, ଲୋକପାଳ, ଲୋକାୟୁକ୍ତ, ସୂଚନା ଅଧିକାର କମିଶନ ପରି କିଛି ଦୃଢ ଦୁର୍ନୀତି ନିରୋଧକ ସଂସ୍ଥା ଥିଲେ ବି ଦୁର୍ନୀତିକୁ ସମ୍ପୂର୍ଣ୍ଣ ରୋକା ଯାଇପାରୁନାହିଁ କାହିଁକି ? ଉତ୍ତର ହେଲା, ଏ ସବୁ ସଂସ୍ଥା ଯେତିକି କ୍ରିୟାଶୀଳ ହେବା କଥା ସମ୍ଭବତଃ ହୋଇପାରି ନାହାଁନ୍ତି। ଆଶା କିନ୍ତୁ ଅଛି, କଠୋର ପ୍ରତିରୋଧ ଶକ୍ତିରେ ଭ୍ରଷ୍ଟାଚାରୀର ସାମ୍ରାଜ୍ୟ ଦିନେ ଭୁଷୁଡିବ।

ଏଥିପାଇଁ ତେଣୁ ସଚେତନତା ଦରକାର। ସ୍ପଷ୍ଟ କହିଲେ, ଜନ ସଚେତନତା। ଗୋଟିଏ ଦୁର୍ନୀତି ମୁକ୍ତ ଉନ୍ନତ ସମାଜଟିଏର ସ୍ୱପ୍ନ ଦେଖିବା ଭୂଲ୍ କଥା ନୁହେଁ।



# ଅଶ୍ଳୀଳ ସଙ୍ଗୀତ

ପ୍ରଥମେ ଜଗତର ନାଥ ଜଗନ୍ନାଥଙ୍କୁ ନେଇ ଅଶ୍ଳୀଳ ସଙ୍ଗୀତ ବୋଲା ଆରମ୍ଭ ହେଲା। ପରେ ପରେ ଏହି ପରିସର ଭିତରକୁ ଆମର ଅନ୍ୟ ଦିଅଁ ଦେବତାମାନେ ଚାଲି ଆସିଲେ। ଏବେ ବିଚରା 'ନବମ ଶ୍ରେଣୀ ଝିଅଟି' ବି ଏଥିରୁ ବାଦ୍ ପଡ଼ିନି।

ସଙ୍ଗୀତରେ ଅଶ୍ଳୀଳତା କଥା ଉଠିଲା ବେଳେ କିଛି ବ୍ୟକ୍ତି ଯୁକ୍ତି କରି କହନ୍ତି - ଅଶ୍ଳୀଳତା ଏକ ଆପେକ୍ଷିକ ବିଚାର। ସଙ୍ଗୀତ, ଛବି ତଥା ଚିତ୍ରଟିଏ ଜଣକୁ ଅଶ୍ଳୀଳ ଲାଗୁଥିଲେ ବି ଅନ୍ୟ ଜଣକୁ ଏହା ମନୋରଞ୍ଜନର ସ୍ୱାଦ ଦେଇପାରେ। ଅଶ୍ଳୀଳତା ଆଳରେ ତେଣୁ ସୃଜନୀକୁ ବାସନ୍ଦ କରିଦେବା ଠିକ୍ ନୁହେଁ।

ସତକଥା କିନ୍ତୁ ହେଲା, ଅଭିବ୍ୟକ୍ତିର ସ୍ୱାଧୀନତା ପୁରାପୁରି ନିରଙ୍କୁଶ ନୁହେଁ। ଏଥିରେ କିଛି ପ୍ରାମାଣିକ ନିୟନ୍ତ୍ରଣ ବି ଥାଏ। କାରଣ ହେଉଛି, ଅନିୟନ୍ତ୍ରିତ ସ୍ୱାଧୀନତାରୁ ଅପସଂସ୍କୃତି ଜନ୍ମ ନିଏ ଏବଂ ଶେଷରେ ଏହି ଅପସଂସ୍କୃତି ହିଁ ସଭ୍ୟତାଟିକୁ ଭାଙ୍ଗିଦିଏ। ପୃଥିବୀର ଅନେକ ସଭ୍ୟତା ହିଁ ଏପରି ଭାଙ୍ଗିଛି।

ସଙ୍ଗୀତ ଅଶ୍ଳୀଳ ହେଲେ ସଂସ୍କୃତିର କିପରି ଅପଭ୍ରଂଶ ହୁଏ ଏବଂ ନୈତିକ ମୂଲ୍ୟବୋଧରେ ଅବକ୍ଷୟ ଆସେ ତାର କିଛି କାରଣ ଦିଆଯାଏ। ପ୍ରଥମ କାରଣ ହେଉଛି "ଫ୍ରଏଡୀୟ ତରଙ୍ଗ"। ବିଖ୍ୟାତ ମନସ୍ତତ୍ତ୍ୱବିତ୍ "ସିଗ୍‌ମଣ୍ଡ ଫ୍ରଏଡ୍"ଙ୍କ ନାଁ ଅନୁସାରେ ଏହି ତରଙ୍ଗ ନାମିତ। ଏହାର ପ୍ରକ୍ରିୟା ଠିକ୍ ଏମିତି - ଅଶ୍ଳୀଳତା ଥିବା କୌଣସି ସଙ୍ଗୀତ କିମ୍ବା ଛବି ପ୍ରଥମେ ଜଣକୁ ତୁରନ୍ତ ଆହ୍ଲାଦିତ କରିପାରେ। ଏଥିରେ କିଛି ସନ୍ଦେଶ ଅଛି ବୋଲି ପ୍ରତୀୟମାନ ହୋଇପାରେ। ବାସ୍ତବରେ କିନ୍ତୁ ଏଥିରେ ସ୍ଖଳନର ଏକ ତରଙ୍ଗ ରହିଥାଏ। ସଂଯତ ଏବଂ ସାବଧାନ ନହେଲେ ଏହି ତରଙ୍ଗର ପ୍ରଭାବ ଏତେ ଗଭୀର ହୋଇଯାଏ ଯେ କୌଣସି ଏକ ସାଧାରଣ ବ୍ୟକ୍ତିର କାର୍ଯ୍ୟ, ରାଜନୀତି, ନୈତିକତା ଏବଂ ଯୌନସମ୍ପର୍କିତ ବ୍ୟବହାରକୁ ଏହା ପ୍ରଭାବିତ କରେ। ଏଥିରେ ବେଶି ପ୍ରଭାବିତ ହୁଅନ୍ତି ଛୋଟ ପିଲାମାନେ। ଦେହ ଆଉ ମନ ଛଦ୍ମ ଅସଭ୍ୟତାରେ ତାଙ୍କର ଆକ୍ରାନ୍ତ ହୁଏ ଏବଂ ଏଇଠୁ ହିଁ ନୈତିକ ଅବକ୍ଷୟ ହୁଏ।

ଦ୍ୱିତୀୟଟି ହେଉଛି ଅଶ୍ଳୀଳତାରୁ ସୃଷ୍ଟି ହେଉଥିବା ହିଂସା କଥା। ଜଣେ କିଏ ଅପରାଧୀ ହୋଇ ଜନ୍ମ ହୁଏ ନାହିଁ। ପରିବେଶ ହିଁ ଅପରାଧୀ ସୃଷ୍ଟି କରେ ଏବଂ ଅପରାଧୀଟି ଅପସଂସ୍କୃତିର ବାହକ ହୋଇଯାଏ।

ହଁ ପାଠକ ବନ୍ଧୁ ! ଅଶ୍ଳୀଳତା ସମ୍ପର୍କରେ ଏପରି ବିଶ୍ଳେଷଣାତ୍ମକ କଥାଟିଏ କହିବାର ମାନେ ହେଲା, ଦ୍ୱିର୍ଥବୋଧକ ଶବ୍ଦ ଏବଂ ଭାଷାରେ ଭରପୂର ଆଜିର ସଙ୍ଗୀତ ଆମ ଅଜାଣତରେ ଅପସଂସ୍କୃତିଟିଏ ସୃଷ୍ଟି କରି ସାରିଲାଣି। ସେ ଲଘୁ ସଙ୍ଗୀତ ହେଉ କିମ୍ବା ଭଜନ। ନା ଏଥିରେ ସନ୍ଦେଶ ଅଛି ନା' ଭକ୍ତି। 'ବାଧିଲା ଜାଣି କ୍ଷମା କର ନହିଲା ରମା, ରମଣ ଦଣ୍ଡ ଦିଏ ଟାଳି'ରେ ଯେଉଁ ସମର୍ପଣ ଭାବ ଥିଲା, 'ରାଧା ବେଗ୍ ଗାଧାରେ' ସେ ସମର୍ପଣ ଭାବ ନାହିଁ।

ଜଗନ୍ନାଥ ସଂସ୍କୃତି ବି ଏଇ ଅଶ୍ଳୀଳ ସଙ୍ଗୀତରେ ଛନ୍ଦି ହୋଇ ଅଣନିଃଶ୍ୱାସୀ ହୋଇଗଲାଣି। "ହେ ପ୍ରଭୁ ଦେଖା ଦେ, ପୁଲେ ଟଙ୍କା ଦେ" କେବଳ ଉପଭୋକ୍ତାବାଦର କଥା ହିଁ କହେ। ଏହା କହିବା ବାହୁଲ୍ୟ ଯେ, ଜଗନ୍ନାଥ ସଂସ୍କୃତି ସମନ୍ୱୟର ଏକ ସଂସ୍କୃତି। ଏହାର ଆକର୍ଷଣ ଏତେ ଚମତ୍କାର ଥିଲା ଯେ, ଦିନେ ଏଠାକୁ ଆଦି ଶଙ୍କରାଚାର୍ଯ୍ୟ, ଯୀଶୁଖ୍ରୀଷ୍ଟ, ଜୟଦେବ, ଚୈତନ୍ୟ, ନାନକ, କବିର, ସାଲବେଗ ପରି ଧର୍ମିକ ପୁରୁଷ ମାନେ ଧାଇଁ ଆସିଥିଲେ। ଏବଂ ଏକ ନୀତିପୂର୍ଣ୍ଣ ସମାଜଟିଏ ପାଇଁ ଜଗନ୍ନାଥଙ୍କୁ ପ୍ରାର୍ଥନା କରିଥିଲେ - "ଜଗନ୍ନାଥ ହୋ କିଛି ମାଗୁ ନାହିଁ ତୋତେ।"

ସୁତରାଂ ଅଶ୍ଳୀଳତା ବିରୁଦ୍ଧରେ ଏବେ ଯେଉଁ ସମନ୍ୱିତ ସ୍ୱର ଉଠୁଛି ତାହା ପ୍ରଶଂସନୀୟ। ଅଶ୍ଳୀଳ ସଙ୍ଗୀତ ଏବଂ ପ୍ରବଚନର ନିଷେଧ ପାଇଁ ସ୍ୱତନ୍ତ୍ର ଆଇନ୍ ହେବା ତେଣୁ ଦରକାର। କିନ୍ତୁ ବିଡ଼ମ୍ବନା ଯେ ଏପରି ଆଇନ୍ ପାଇଁ ପ୍ରତିଶୃତି ମିଳିଥିଲେ ବି ଏ ପର୍ଯ୍ୟନ୍ତ ଏହା ଏକ ଅପହଂଚ ଇଲାକାରେ ହିଁ ଅଛି।

ଏ ଆଲୋଚନା ଏଇଠି ଶେଷ କରିବାକୁ ଇଚ୍ଛା। ପ୍ରଥମ କଥାଟି ହେଲା - ଅଶ୍ଳୀଳ ସଙ୍ଗୀତ ଟିଏ ଗୀତିକାର ସୃଷ୍ଟିକରେ, ଗାୟକ ଏବଂ ପ୍ରଯୋଜକ ଏହାକୁ ବିତରଣ କରେ। ଶ୍ରୋତା ଏହାକୁ ବଞ୍ଚେଇ ରଖେ। ପ୍ରତିବାଦର ସ୍ୱର ତେଣୁ ସବୁ କୋଣରୁ ଆସିବା ଦରକାର। ଅପସଂସ୍କୃତିରୁ ହିଂସା ଏପରି ଅନେକ ସାମାଜିକ ବିଚ୍ୟୁତି ଯେ ଅଶ୍ଳିଳତାରୁ ଆରମ୍ଭ ହୁଏ, ଏମାନେ ବୁଝିବା ଉଚିତ୍।

ସୁତରାଂ ହେ ଗୀତିକାର, ଗାୟକ ମାନେ- ଅଶ୍ଳୀଳ ସଙ୍ଗୀତରେ ଆମ ଦେବାଦେବୀଙ୍କୁ ଆଉ ଅପବିତ୍ର କରନି। ଯୌନବିକୃତିର ପ୍ରଚାର କରି ଆମ ଯୁବପିଢ଼ୀକୁ ଆଉ ନୈତିକ ଅବକ୍ଷୟର ଗୋହରିକୁ ଠେଲି ଦିଅନି। ଏ ସମାଜକୁ ଏକାଠି ରଖିବାର ଦାୟିତ୍ୱ ଆପଣମାନଙ୍କର। ଶ୍ରୀକୃଷ୍ଣ ତ ତାଙ୍କର ମୋହନ ବଂଶୀର ସ୍ୱରରେ ଦିନେ ଏ ସମାଜ ଏବଂ ସମ୍ପର୍କକୁ ବାନ୍ଧି ରଖିଥିଲେ।

ଆପଣ ପାରିବେ ନିଶ୍ଚୟ। ଭଲ ଭାଷାରେ ହିଁ କେବଳ ଭଲ କଥା କହିହୁଏ।



# ବିସ୍ଥାପିତର ଦୁଃଖ

ପୋସ୍କ ଏବଂ ବେଦାନ୍ତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଯୋଗୁଁ ବିସ୍ଥାପିତ ହେବାକୁ ଯାଉଥିବା ଲୋକଙ୍କ ଏକ ବିରୁଦ୍ଧ ପଟୁଆର ଦେଖି ଜଣେ ବ୍ୟକ୍ତି ମନ୍ତବ୍ୟ ଦେଲେ- "ଏଠି କିଛି ବିକାଶ କାମ ଆଉ କରି ହେବନି। ସବୁ ଭଲ କାମକୁ ବିରୋଧ କରିବା ଏକ ଅଭ୍ୟାସ ହୋଇ ଗଲାଣି। ବିକାଶ ଯୋଗୁଁ ପ୍ରାଚୁର୍ଯ୍ୟ ନ ଆସିଲେ ଗୋଟିଏ ଜନମଙ୍ଗଳ ରାଷ୍ଟ୍ର ଏଠାରେ ବାଣ୍ଟିବ ଆଉ କ'ଣ ? କ'ଣ ଦାରିଦ୍ର୍ୟ ବଂଟାଯିବ ?"

ବନ୍ଧୁଙ୍କୁ ଉତ୍ତର ଦେଲି - 'ତୁମେ ବିସ୍ଥାପିତର ଦୁଃଖ କ'ଣ ବୁଝିନାହଁ। ସାତ ପୁରୁଷର ଭିଟାମାଟି ଛାଡ଼ି; ବନ୍ଧୁବାନ୍ଧବଙ୍କ ସମ୍ପର୍କ ଭୁଲି ଏବଂ ନିଜ ସଂସ୍କୃତି, ପରମ୍ପରା ଓ କୁଟୁମ୍ବଙ୍କୁ ପାଶୋରି ଦେଇ ଅନ୍ୟତ୍ର ଘର ବାନ୍ଧିବାର ଯନ୍ତ୍ରଣା, ପରୋକ୍ଷ ହେଉ ବା ପ୍ରତ୍ୟକ୍ଷ, ତମେ କେବେ ଅନୁଭବ କରିନ। ଯିଏ ପିଡ଼ୀତ, ସେ ହିଁ ଏକଥା ବୁଝି ପାରିବ। ପ୍ରକୃତରେ ଆପଣାର ଥିବା ସବୁ ଜିନିଷ ବିସ୍ଥାପିତ ମଣିଷଟି ପାଇଁ ହଠାତ୍ କିପରି ପର ହୋଇଯାଏ।'

"ଯେଉଁ ନଦୀରେ ସେ ଦିନେ ପହଁରୁଥିଲା, ସେ ନଦୀ ଆଉ ତା'ର ହୋଇ ରହେନି। ଯେଉଁ ଜଙ୍ଗଲରୁ ସେ ଫଳ ଆଉ କାଠ ସଂଗ୍ରହ କରୁଥିଲା ସେ ଜଙ୍ଗଲ ଆଉ ତା'ର ହୁଏନି। ପ୍ରଗତିର ପ୍ରବକ୍ତା ମାନେ ତାକୁ ବୁଝେଇ ଦିଅନ୍ତି, ଜଙ୍ଗଲ, ନଦୀ, ପାହାଡ଼ ବଦଳରେ ତାକୁ ଆଧୁନିକ କଲୋନୀ ମିଳିବ। ସୁନ୍ଦର ପାର୍କ ମିଳିବ ଏବଂ ପିଲାଙ୍କ ପାଇଁ ତା'ର ଏହି ପାର୍କରେ ଦୋଳି ଲାଗିଥିବ।"

ଏକ ରିପୋର୍ଟ ଅନୁସାରେ, ସ୍ୱାଧୀନତା ପରଠାରୁ ଏଇ ଅବଧି ଭିତରେ ବିଭିନ୍ନ ପ୍ରକଳ୍ପ ଯୋଗୁଁ ବିସ୍ଥାପିତ ହୋଇଥିବା ଲୋକଙ୍କ ସଂଖ୍ୟା ମୋଟ ପାଞ୍ଚକୋଟି..। ଏଥିରୁ ପ୍ରାୟ ୪କୋଟି ଲୋକ ବୃହତ୍ ନଦୀବନ୍ଧ ଯୋଜନା ପାଇଁ ବାସଚ୍ୟୁତ ହୋଇଛନ୍ତି। ଭାରତରେ ବଡ଼ ବଡ଼ ଡ୍ୟାମ୍ ସଂଖ୍ୟା ଏବେ ପ୍ରାୟ ତିନି ହଜାର ଛଅଶହ। ଏଥିରୁ ପ୍ରାୟ ତିନି ହଜାର ତିନି ଶହ ଆମ ସ୍ୱାଧୀନତା ପରେ ହିଁ ନିର୍ମାଣ ହୋଇଛି ଏବଂ ଏହାଦ୍ୱାରା ବିସ୍ଥାପିତ ହୋଇଥିବା ଲୋକଙ୍କ ଭିତରେ ୬୦ ପ୍ରତିଶତରୁ ଅଧିକ ହେଉଛନ୍ତି ଆଦିବାସୀ ଓ ଗ୍ରାମାଞ୍ଚଳର ଲୋକ।

କୋଟି କୋଟି ଏହି ବାସଚ୍ୟୁତଙ୍କର ସମ୍ପ୍ରତି ଅବସ୍ଥା କ'ଣ ବର୍ତ୍ତମାନ ସେମାନେ କେଉଁଠି ଏବଂ ସେମାନେ କିପରି ରୋଜଗାର କରି ବଞ୍ଚନ୍ତି, ବାସ୍ତବରେ ଏକଥା କାହାକୁ

ଜଣାନାହିଁ। ଯଦିଓ ଷ୍ଟକ୍ ଏକ୍ସଚେଞ୍ଜ୍‌ର ଖବର ପ୍ରତି ସେକେଣ୍ଡରେ ଆମ ପାଖରେ ପହଞ୍ଚେ ଏବଂ ସାରଜାହାରେ ପ୍ରତି ଶୁକ୍ରବାର ଦିନ କ୍ରିକେଟ୍ ଖେଳରେ ଭାରତ ପାକିସ୍ତାନ ଠାରୁ କେତେଥର ହାରିଛି ତା'ର ହିସାବ ଆମେ ରଖିଛୁ। କିନ୍ତୁ ଯେତେବେଳେ ଏଇ କିଛିଦିନ ତଳେ ଖବରଟି ବାହାରିଲା ଯେ, ନାଗାର୍ଜୁନ ସାଗର ନଦୀବନ୍ଧ ଯୋଜନାକୁ ବାସଚ୍ୟୁତ ଲୋକ କିଛି ବିଦେଶୀ ଏଜେନ୍ସିକୁ ତାଙ୍କ ପିଲା ବିକ୍ରି କରୁଛନ୍ତି, ସେତେବେଳେ ଏହି ଖବର ପ୍ରତି ଆମର ଏ ସଭ୍ୟ ସମାଜର ସେମିତି କିଛି ଖାସ୍ ପ୍ରତିକ୍ରିୟା ନଥିଲା।

ଏପରି ବି ଘଟେ, ଥରେ ବିସ୍ଥାପିତ ହୋଇଥିବା ବ୍ୟକ୍ତିଟି ବାରମ୍ବାର ବିସ୍ଥାପିତ ହୁଏ। ଡ୍ୟାମ୍ ନିର୍ମାଣ ଯୋଗୁଁ ଘର ଛାଡ଼ିଥିବା ଲୋକ ପୁଣି ଥରେ ସାମରିକ ଘାଟି ପ୍ରତିଷ୍ଠା ଆଳରେ ବାସହରା ହେବାକୁ ପଡ଼େ। ଏଇ ଇତଃସ୍ତତଃ ପ୍ରକ୍ରିୟା ଭିତରେ ସେ ତାର ସଂସ୍କୃତି, ପରମ୍ପରାକୁ ଭୁଲିଯାଏ।

ବିସ୍ଥାପିତର ଦୁଃଖ ଖାଲି ଏତିକିରେ ବି ସୀମିତ ନୁହେଁ। ନୂଆ ଯାଗାରେ ଅବସ୍ଥାପିତ ହେଲେ ସେ ଯାଗାର ଭାଷା ସେ ଶିଖେ। ନୂଆ ଚଳଣି ସହ ଅଭ୍ୟସ୍ତ ହୁଏ। ଟଙ୍କା ଦେଣ ନେଣରେ ମୂଲ୍ୟ ସେ ବୁଝେ। ନଦୀ, ଜଙ୍ଗଲ, ଜଳରୁ ନିଜ ପାଇଁ ଖାଦ୍ୟ ସଂଗ୍ରହ ବଦଳରେ ନୂଆ ପରିସ୍ଥିତିରେ ସେ ମୂଲ ଖଟେ। ମାଲିକ ଠାରୁ ସେ କିପରି ପାରିଶ୍ରମିକ ପାଇବ ଏକଥା ସେ ଜାଣେ ଏବଂ କାମ ପାଇଁ ରାସ୍ତା କଡ଼ରେ ସେ ଧାଡ଼ିବାନ୍ଧି ଛିଡ଼ା ହୁଏ ଠିକ୍ ଯେମିତି ପଣ୍ୟ ଦ୍ରବ୍ୟ ସବୁ ବିକ୍ରିପାଇଁ ଦୋକାନରେ ସଜ୍ଜା ହୋଇ ଥୁଆ ହୋଇଥାଏ।

ଭାରତରେ ଗୋଟିଏ ପ୍ରକଳ୍ପ ଶେଷ ହେବାକୁ ଅନେକ ବର୍ଷ ଲାଗେ। ଗୋଟିଏ ବଡ଼ ନଦୀବନ୍ଧ ଯୋଜନା ପାଇଁ ଅନ୍ୟୁନ କୋଡ଼ିଏ ବର୍ଷ ହିଁ ଲାଗିଥାଏ। ଅଥଚ ବିସ୍ଥାପିତ ବୋଲି ନୋଟିସ୍ ପାଇଥିବା ଲୋକଟି ନିଜ ବାସଗୃହ କିନ୍ତୁ ଛାଡ଼େନି। ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଅପେକ୍ଷା କରିଥାଏ। ବୁଡ଼ି ଅଞ୍ଚଳ ଏବଂ ପ୍ରକଳ୍ପ ପ୍ରଭାବିତ କହି ଏଠି ରାସ୍ତା ଏବଂ ସ୍କୁଲ୍ ଘର ମରାମତି ହୁଏ ନାହିଁ। ବିଦ୍ୟାଳୟରେ ନୂଆ ଶିକ୍ଷକ ନିଯୁକ୍ତି ପାଆନ୍ତି ନାହିଁ। ଡ଼ାକ୍ତରଖାନା ଆଉ ସରକାରୀ ନଜରରେ ନଥାଏ। ସ୍ପଷ୍ଟ କହିଲେ, ବିସ୍ଥାପିତ ହୋଇସାରିଥିବା ଲୋକଙ୍କ ଅପେକ୍ଷା ବିସ୍ଥାପିତ ହେବାକୁ ଅପେକ୍ଷାରେ ଥିବା ଲୋକଙ୍କ ଦୁର୍ଦ୍ଦଶା ପ୍ରକୃତରେ ବେଶିଥାଏ ଏବଂ ଅନେକ କ୍ଷେତ୍ରରେ ଏପରି ବି ହୁଏ, ବିସ୍ଥାପିତ ହେବାକୁ ଥିବା ଲୋକଙ୍କ ଘରେ ବାହାର ଲୋକେ ନିଜ ଝିଅ ପୁଅଙ୍କୁ ବିବାହ ଦେବାକୁ ପସନ୍ଦ ମଧ୍ୟ କରନ୍ତି ନାହିଁ।

ବିସ୍ଥାପିତଙ୍କ ବିଷାଦ ତେଣୁ ଅନେକ। ଯାଗା ବଦଳରେ ଯାଗା ନାହିଁ। ପଥୁରିଆ ଯାଗାରେ ହୋଇଥିବା କଲୋନୀରେ ବଞ୍ଚିବାର ସୁବିଧା ନାହିଁ। ଜମିର ପଟ୍ଟାନଥିବା ହେତୁ ଠିକ୍ କ୍ଷତି ପୂରଣ ନାହିଁ। ନର୍ମଦା ନଦୀ ବନ୍ଧ ପରି ଯୋଜନାରେ ବିସ୍ଥାପିତ ହୋଇ ବାହାରେ ଏକ ନୂଆଣିଆ ଟିଣ ଛପର ଘରେ ଖରାଦିନ ଦି' ପହରେ ଜର ତାତିରେ ଖଇ ଫୁଟୁଥିବା ନିଜର ଦୁଇ ମାସର ପିଲାକୁ ଧରି ସ୍ତ୍ରୀ ଲୋକଟି କିପରି ରହିଛି ତା'ର ଫଟୋ

ଚିତ୍ର ଏଇ କିଛିମାସ ତଳେ ଦୈନିକ ଖବର କାଗଜ ମାନଙ୍କରେ ପ୍ରକାଶିତ ହୋଇଥିଲା।

ଇଏ ବିସ୍ଥାପନ ସମସ୍ୟାର ଲମ୍ବା କାହାଣୀ। ବିସ୍ଥାପିତର ଦୁଃଖ ସମ୍ପୂର୍ଣ୍ଣ ଲାଘବ ପାଇଁ କୌଣସି ରାଷ୍ଟ୍ରଶକ୍ତି ପ୍ରକୃତରେ ସକ୍ଷମ ହେଉନାହିଁ ଏବଂ ଏହା ମଧ୍ୟ ସତ, ବାସଚ୍ୟୁତ ଲୋକଟି ତା'ର ସ୍ୱାର୍ଥ ଏବଂ ସାମାଜିକ ସୁରକ୍ଷା ନିମନ୍ତେ ଆନ୍ଦୋଳନ ହିଁ କରିଛି। କରିବ। ଅନ୍ୟପକ୍ଷେ, ଆନ୍ଦୋଳନର ଦମନ ପାଇଁ ରାଷ୍ଟ୍ର ବଳ ପ୍ରୟୋଗ କରିବ ଏବଂ ଏଇ ଦୁଇ ପ୍ରକ୍ରିୟାର ସଂଘାତରେ କଳିଙ୍ଗ ନଗର, ନନ୍ଦୀଗ୍ରାମ ପରି ଅନେକ ଘଟଣା ତେଣୁ ଘଟୁଛି। ଘଟିବା ବି ସ୍ୱାଭାବିକ। ଜଗତିକରଣ ଯୁଗରେ ଶିଳ୍ପାୟନ ସୃଷ୍ଟ ବିକାଶ ବ୍ୟତୀତ ଏଠି ଆଉ ଅନ୍ୟପନ୍ଥା ନାହିଁ ବୋଲି ଏପରି ଧାରଣାଟିଏ ସୃଷ୍ଟି ହୋଇଯାଇଛି।

ଶେଷ କଥା ହେଲା - ଥଇଥାନ ଏବଂ ପୁନର୍ବାସ ନୀତି ଯେତେ ଲୋଭନୀୟ ହେଲେ ବି ବିସ୍ଥାପନର ସବୁ ଦୁଃଖ ଏଥିରେ ଶେଷ ହୁଏ ନାହିଁ। ଯୋଜନା ଏବଂ ପ୍ରକଳ୍ପ ତେଣୁ ଏପରି ହେବା ଦରକାର ଯେଉଁଠି ବିସ୍ଥାପିତଙ୍କ ସଂଖ୍ୟା ଶୂନ ଥିବ। ମଧ୍ୟମ ତଥା ଛୋଟ ପ୍ରକଳ୍ପ ଏହାର ତେଣୁ ଉତ୍ତର ହୋଇପାରେ।

ଲକ୍ଷ ଲକ୍ଷ ଲୋକଙ୍କୁ ବାସଚ୍ୟୁତ କରି ଶିଳ୍ପାୟନ ତଥା ଶିକ୍ଷାୟତନ ପ୍ରଗତିର ଡ଼ିଣ୍ଡିମ ପିଟିବାରେ କିଛି ମାନେ ନାହିଁ।



# ରାଜନୈତିକ ଭେଲ୍‌କି

ଏ ଲେଖକର ଜଣେ ଅଧ୍ୟାପକ ବନ୍ଧୁ ଏବେ ମନ୍ତବ୍ୟଟିଏ ଦେଇ କହିଲେ - ଭାରତରେ ସମ୍ପ୍ରତି ରାଜନେତା ମାନେ ସାଧାରଣରେ ଯେପରି ପ୍ରଦର୍ଶନ କରୁଛନ୍ତି ବାସ୍ତବରେ ଏହା ଶୁଦ୍ଧ ରାଜନୀତି ନୁହେଁ। ଏହା କେମିତି ଏକ ପ୍ରହସନ ଏବଂ ଭେଲ୍‌କି ପରି ଲାଗୁଛି। ସ୍ପଷ୍ଟ କହିଲେ ଏହା ଏକ ରାଜନୈତିକ ଭେଲ୍‌କି। ଇଂରାଜୀରେ ଯାହାକୁ ପଲିଟିକାଲ ଗିମିକ୍ କହନ୍ତି।

ଏଇ ଯେମିତି ଏବର ରାହୁଲ ଗାନ୍ଧୀଙ୍କ କଥା। ରାହୁଲ ବାବା ଏଇ କିଛିଦିନ ତଳେ ଓଡ଼ିଶା ଆସିଥିଲେ। ଗାଁ ଗାଁରେ ସେ ବୁଲିଲେ। ରୋଡ୍ ସୋ' କଲେ। ରାତି ଅଧରେ ଦିନେ ଓଡ଼ିଶା ପ୍ରଶାସନକୁ ନ ଜଣାଇ କୋରାପୁଟର ଏକ ଗାଁକୁ ଚାଲିଗଲେ। ସେଠାରେ ସେ ଗାଁ ସଭାରେ ବସିଲେ। ଲୋକଙ୍କ ଆଲୋଚନା ଶୁଣିଲେ। ସାଙ୍ଗ ହୋଇ ସେଠାରେ ସେ ରାତ୍ରି ଭୋଜନ କଲେ ଏବଂ ଗାଁ ଗୁହାଳରେ ଜଣକ ଘରେ ବିଶ୍ରାମ ନେଲେ। ଏହା ଭେଲ୍‌କି ନୁହେଁ ତ ଆଉ କ'ଣ? ଅଧ୍ୟାପକ ବନ୍ଧୁ ପ୍ରଶ୍ନ କଲେ।

ପ୍ରଶ୍ନ ଶୁଣି ଉତ୍ତର ଦେଲି - ରାଜନୀତିର ସ୍ୱରୂପ ସଂପ୍ରତି ବଦଳିଛି। ଭୋଟ ସଂଗ୍ରହ କରିବାର ମାଧ୍ୟମରେ ପରିବର୍ତ୍ତନ ଆସିଛି। ଏ ପରିବର୍ତ୍ତନ ପୃଥିବୀ ସାରା ଦେଖା ଦେଇଛି। ଭାରତ ଏଥିରୁ ତେଣୁ ବାଦ୍ ଯାଇନି। 'ଏଥେନ୍‌ସ'ର ସେ ପୁରୁଣା ଶାସ୍ତ୍ରୀୟ କ୍ଲାସିକାଲ ଗଣତନ୍ତ୍ର, ଏଠି ଏବେ ଖୋଜିଲେ ମିଳିବ କୁଆଡୁ?

ଉତ୍ତର କିନ୍ତୁ ବନ୍ଧୁଙ୍କୁ ସନ୍ତୁଷ୍ଟ କଲାନାହିଁ। ସେ ପୁଣି କହି ଚାଲିଲେ - ଭାରତରେ ରାଜନେତାମାନେ ବହୁତ ଚାଲାକ୍। ସେମାନେ ଜାଣନ୍ତି, ଅଧିକାଂଶ ସାଧାରଣ ଭାରତୀୟ ଜନତା ରାଜନୈତିକ ଭେଲ୍‌କି ଏବଂ ବାସ୍ତବତା କ'ଣ ବୁଝିବାକୁ ଅକ୍ଷମ। ଏହାର କାରଣ ହେଉଛି, ଦେଶରେ ଅଶିକ୍ଷିତଙ୍କ ସଂଖ୍ୟା ଏଠି ବେଶି ଏବଂ ରାଜନୈତିକ ସଚେତନତା ଏଠି ବହୁତ କମ୍। ଭାରତୀୟ ଗଣ ମାଧ୍ୟମ ମଧ୍ୟ ରଙ୍ଗ ବୋଳା ରାଜନୀତିକୁ ଆହୁରି ଚକ୍ ଚକ୍ କରି ଲୋକଙ୍କୁ ଖୁବ୍ ସୁନ୍ଦର ଭାବେ ପରସି ଦେଉଛନ୍ତି।

କିଛିବର୍ଷ ତଳେ ପ୍ରିୟଙ୍କା ଗାନ୍ଧୀ ବି ରାହୁଲଙ୍କ ପରି ଚମତ୍କାର ଭଲ୍‌କିଟିଏ କରିଦେଇଥିଲେ। ସେ ଥିଲା- ପ୍ରିୟଙ୍କା ନିର୍ବାଚନ ପ୍ରଚାରରେ ଆମେଥି ଯାଇଥିଲେ। ଆମେଥି ବଜାରରେ ସେ କିଛି ସମୟ କାଟିଲେ। ତାଙ୍କ ବାପା ରାଜୀବ ଗାନ୍ଧୀ ସେଠାକୁ

ଗଲେ ଆମେଥିର ଯେଉଁ ଜଳଖିଆ ଦୋକାନରେ ବସି ଜିଲାବି ଖାଆନ୍ତି ସେଇ ଦୋକାନରୁ ସେ ଜିଲାବି କିଣିଲେ। ବଜାରରେ ବୁଲି ନିଜ ପାଇଁ ମୁଣ୍ଡ କଣ୍ଟା ଏବଂ ଛୋଟ ପୁଅ ପାଇଁ ସୁସୁରି ଆଣିଲେ। ପ୍ରିୟଙ୍କାଙ୍କ ପ୍ରଶଂସକ ମାନେ କହି ବୁଲିଲେ - ଗାନ୍ଧୀ ନେହେରୁ ପରିବାରର ପ୍ରାଚୁର୍ଯ୍ୟ ଭିତରେ ପ୍ରିୟଙ୍କା ବଢ଼ିଥିଲେ ବି ସେ ଜଣେ ସାଧାରଣ ଭାରତୀୟ ମହିଳା ପରି ବ୍ୟବହାର କରନ୍ତି। ଗାଁ ହାଟରୁ ନିଜ ପାଇଁ ମୁଣ୍ଡ କଣ୍ଟା ଏବଂ ପୁଅ ପାଇଁ ସୁସୁରି କିଣି ପାରନ୍ତି।

ଅବଶ୍ୟ କେବଳ ଗାନ୍ଧୀ ନେହେରୁ ପରିବାରର ନେତାମାନେ ରାଜନୈତିକ ଗିମିକ୍‌ରେ ସଂପୃକ୍ତ ନୁହଁନ୍ତି। ଭାରତର ଅଧିକାଂଶ ରାଜନେତାମାନେ ଏପରି ପ୍ରଦର୍ଶନ କରିବାରେ ବି ଅଭ୍ୟସ୍ତ। ରା.ଜେ.ଡ଼ି.ର ମୁଖ୍ୟ ଲାଲୁ ଯାଦବ ବେଶ ଭଲ ଭେଳିକି ଦେଖାଇ ପାରନ୍ତି ବୋଲି ବିଶ୍ଳେଷକମାନେ ଟିପ୍‌ପଣୀ ଦିଅନ୍ତି। ସିବିଆଇ କୋର୍ଟରେ ଉପସ୍ଥିତ ହେବାକୁ ଗଲାବେଳେ ସେ କୁଆଡ଼େ ରିକ୍‌ସାରେ ଯାଇଥିଲେ ଏବଂ ରିକ୍‌ସା ଚାରିପଟେ ତାଙ୍କର ସମର୍ଥକ ମାନେ 'ଲାଲୁ ଯାଦବ କୀ ଜୟ'ର ସ୍ଲୋଗାନ ଦେଉଥିଲେ। ବି.ଜେ.ପି.ର ବରିଷ୍ଠ ନେତା ଲାଲ୍‌କୃଷ୍ଣ ଆଡ଼ଭାନୀ ମଧ୍ୟ ରଥଯାତ୍ରା ନାଁରେ ଏମିତି ରାଜନୈତିକ ପ୍ରଦର୍ଶନ କରନ୍ତି। ଏମିତି ଅନେକ ଉଦାହରଣ ତାଙ୍କ ପାଖରେ ଗଚ୍ଛିତ ଅଛି ବୋଲି ଅଧ୍ୟାପକ ବନ୍ଧୁ ସ୍ପଷ୍ଟ କହିଦେଲେ ଏବଂ କହିଲେ, ଏସବୁ ପ୍ରଦର୍ଶନକୁ କେବଳ ଅଶିକ୍ଷା ଯୋଗୁଁ ହିଁ ସତ ଭାବେ ଆମେ ଗ୍ରହଣ କରୁଛୁ।

ବନ୍ଧୁଙ୍କୁ ଉତ୍ତର ଦେଇ କହିଲି- ଏହା କେବଳ ଭାରତୀୟ ଘଟଣା ନୁହେଁ। ପୃଥିବୀର ପ୍ରାୟ ସବୁ ଦେଶରେ ପ୍ରତିଷ୍ଠିତ ରାଜନେତା ଏପରି ପ୍ରଦର୍ଶନ କରନ୍ତି। ଯୁକ୍ତରାଷ୍ଟ୍ର ଆମେରିକାରେ ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ୍ ଥିବାବେଳେ ଅନେକ ସମୟରେ ଆମେରିକାର କ୍ଲବ୍‌କୁ ରାତିରେ ଯାଇ ସେଠି ସେକ୍‌ସଫୋନ ବଜାନ୍ତି। ରୁଷ୍‌ର ରାଷ୍ଟ୍ରପତି ପୁଟିନ୍ ଜୁଡ଼ୋ ପ୍ରଶିକ୍ଷଣ କେନ୍ଦ୍ରକୁ ଯାଇ ପିଲାଙ୍କ ସହ କୁସ୍ତି ଲଢ଼ନ୍ତି। ଇଂଲଣ୍ଡର ରାଜନେତା ମାନେ ବି ନିର୍ବାଚନ ସମୟରେ ଗରିବ ପିଲାଙ୍କୁ ପାଖକୁ ଆଣି ଆଲିଙ୍ଗନ କରନ୍ତି...। ପ୍ରଶ୍ନ କଲି- ପୃଥିବୀର ସବୁଠି ତ ଅଶିକ୍ଷିତ ବେଶି ନାହାଁନ୍ତି। ରାଜନୈତିକ ସଚେତନତା ବି କମ୍ ନୁହେଁ। ଏସବୁ ଦେଶରେ ଭାରତ ପରି ଏପରି ରାଜନୈତିକ ପ୍ରଦର୍ଶନ ଚାଲୁଛି କିପରି ?

ଏହା ସତ ଯେ, ରାଜନେତା ମାନେ ଗାଁକୁ ଯାଇ ଗାଁରେ କିଛିଦିନ ରହିବା କିଛି ଖରାପ କଥା ନୁହେଁ। ସ୍ୱାଧୀନତା ସଂଗ୍ରାମ ଚାଲିଥିବା ବେଳେ ମହାତ୍ମା ଗାନ୍ଧୀ "ଗାନ୍ଧୀ ସେବାସଂଘ" ମାଧ୍ୟମରେ ନିପଟ ମଫସଲ ମାନଙ୍କୁ ଯାଇ ସେଠି ସେ ରହୁଥିଲେ। ୧୯୩୮ ମସିହା ମାର୍ଚ୍ଚ ମାସ ୨୫ ତାରିଖରୁ ୩୧ ତାରିଖ ପର୍ଯ୍ୟନ୍ତ ବାପୁଜୀ ଡ଼େଲାଙ୍ଗର ବେରବୋଇରେ ସର୍ଦ୍ଦାର ପଟେଲ ଏବଂ ମୌଲାନା ଆବୁଲ କଲାମ୍ ଆଜାଦଙ୍କ ପରି ଅନେକ ଭାରତୀୟ କଂଗ୍ରେସ ନେତାଙ୍କ ସହ ସାତ ଦିନଥିଲେ। ସକାଳୁ ଉଠି ନିଜେ କସ୍ତୁରବାଙ୍କ ସହିତ ବେରବୋଇର ଗାଁ ପୋଖରୀ ତୁଠରେ ବସି ନିଜ ଲୁଗା କାଚୁଥିଲେ।

କିନ୍ତୁ, ସେତେବେଳେ ଭାରତରେ କେହି ଜଣେ ମଧ୍ୟ ଏହାକୁ ବାପୁଙ୍କର ଏକ ଭେଳିକି ବୋଲି କହିନଥିଲେ। ସେ କାଳର ସେ ଘଟଣା ଆଜିର ଉଦାହରଣ ଯୋଗ୍ୟ ଇତିହାସ।

ହଁ, ପ୍ରକୃତରେ ଏବେ କିନ୍ତୁ ଆମେ ଆମର ରାଜନେତାଙ୍କ ଏପରି ପ୍ରଦର୍ଶନକୁ ମୋଟେ ବିଶ୍ୱାସ କରିପାରୁନାହୁଁ। ଏହାର ମଧ୍ୟ ଗୋଟିଏ କାରଣ ଅଛି। କାରଣ ହେଉଛି- ରାଜନେତା ମାନେ କ୍ଷମତାର ଶୀର୍ଷକୁ ଚାଲିଗଲେ ଆଉ ଲୋକଙ୍କ ପାଖକୁ ଆସୁ ନାହାଁନ୍ତି। ନିଜେ ନିଜର ଜୀବନ ଶୈଳୀର ପରିବର୍ତ୍ତନ କରି ଦେଉଛନ୍ତି। ଚାକ୍ୟଚକ୍ୟ ଘରେ ରହୁଛନ୍ତି ଏବଂ ଲୋକଙ୍କ ପାଖକୁ ଗଲେ ବି ସୁରକ୍ଷାର ଆଳ ଖୋଜି ଲୋକଙ୍କୁ ଛୁଉଁ ନାହାଁନ୍ତି। ଏହା କେବଳ ଏକ ମାନସିକତାର ପ୍ରଶ୍ନ ହୋଇପାରେ। ପରିସ୍ଥିତିଗତ ବାଧ୍ୟତା ପାଇଁ ଲୋକଙ୍କ ପାଖକୁ ନଯିବା ଏହାର ଏକ ଗୌଣ କାରଣ ମାତ୍ର।

ସୁତରାଂ ରାହୁଳ ଗାନ୍ଧୀଙ୍କ ଗାଁକୁ ଯିବା ଏକ ଅସ୍ୱଭାବିକ ଘଟଣା ନୁହେଁ। ନେତା ଆଉ ପ୍ରଶାସକ ମାନେ ତେଣୁ ଗାଁକୁ ଯିବା ଉଚିତ। କାରଣ ଭାରତ ଗାଁରେ ଅଛି।

ଆମ୍ବ କୋଇଲି କ'ଣ ନ ଜାଣି ଏବଂ ଧାନ ଫୁଲ କେମିତି ନ ଦେଖି ଦାରିଦ୍ର୍ୟ ଏବଂ କୃଷି ନୀତି ଉପରେ ବିତର୍କ କରିବାର କିଛି ମାନେ ନାହିଁ।

ସବୁ ରାଜନୈତିକ ପ୍ରଦର୍ଶନ ଯେ ଭେଳିକି ନୁହେଁ, ଏହା ସତ।



# ନେତା ଓ ସୁରକ୍ଷା

ଗତ ସଂଖ୍ୟାରେ ଏଇ ସ୍ତମ୍ଭରେ ପ୍ରକାଶିତ "ରାଜନୈତିକ ଭେଳିକି" ପ୍ରବନ୍ଧ ପଢ଼ି କିଛି ପାଠକ ବନ୍ଧୁ ମନ୍ତବ୍ୟ ଦେଲେ - ନିରାପତ୍ତା ବଳୟ ଭାଙ୍ଗି ଦେଇ ଲୋକଙ୍କ ସହ ଅନ୍ତରଂଗ ମିଶିବାର ଏକ ମିଛ ପ୍ରଦର୍ଶନ କରିବା ରାଷ୍ଟ୍ରର ନିରାପତ୍ତା ପାଇଁ ବି ମୋଟେ ଶୁଭଙ୍କର ନୁହେଁ। ଗାଁ ହାଟରୁ ପୁଅ ପାଇଁ ସୁସୁରି କିଣିଦେଲେ କାହାର କିଛି କ୍ଷତି ହୁଏନି। କିନ୍ତୁ ଜେଡ୍ ନିରାପତ୍ତା କଭର ଭିତରେ ଥିବା ବ୍ୟକ୍ତି ଯେତେବେଳେ ରାତି ଅଧରେ ବିନା ସୁରକ୍ଷା ବଳରେ ବାହାରକୁ ଚାଲିଯାଏ ସେତେବେଳେ ଅସୁବିଧା ହୁଏ। ଅସୁବିଧା ହୋଇଛି।

ହଁ ଏହା ସତ, ନିରାପତ୍ତା ବଳୟ ଭାଙ୍ଗି ଦେବାରେ କେବଳ ଅସୁବିଧା ନଥାଏ, ଏଥିରେ ଥିବା ବିପଦ ବହୁତ ଗମ୍ଭୀର ବି। କିଛି ଭି.ଆଇ.ପି ନେତାଙ୍କୁ ସୁରକ୍ଷା ଯୋଗାଇ ଦେବା ରାଷ୍ଟ୍ରର କର୍ତ୍ତବ୍ୟ। ଏପରି ସୁରକ୍ଷା ପାଇଁ ଦଳଗତ ନିର୍ବିଶେଷରେ ଦାବି ମଧ୍ୟ ହୁଏ। ଯେତେବେଳେ ନିରାପତ୍ତା ଜନୀତ ଅବହେଳା ଯୋଗୁଁ ନେତାଙ୍କର କିଛି କ୍ଷତି ହୋଇଥାଏ, ରାଜ୍ୟ ସରକାର ସେବେ ନିନ୍ଦିତ ହୁଅନ୍ତି। କଥା ଖାଲି ଏତିକିରେ ଅଟକି ରହେନି। ନିରାପତ୍ତା ଦାୟିତ୍ୱରେ ଥିବା ପଦାଧିକାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହୁଏ। କେତେକଙ୍କର ମୁଣ୍ଡକଟେ। ଅନେକ ସମୟରେ ଗୋଷ୍ଠୀ ଗୋଷ୍ଠୀ ଭିତରେ ଦଙ୍ଗା ସଂଗଠିତ ହୋଇଥାଏ। ଠିକ୍ ସେମିତି ୧୯୮୪ ମସିହା ଅକ୍ଟୋବର ମାସରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କୁ ତାଙ୍କ ଅଙ୍ଗରକ୍ଷୀମାନେ ହତ୍ୟା କଲାପରେ ଭାରତ ସାରା ଶିଖ୍ ବିରୋଧି ଦଙ୍ଗା ହୋଇଥିଲା। ସୁତରାଂ ସୁରକ୍ଷା ବଳୟର ବାହାରକୁ ଯାଇ ଲୋକଙ୍କ ସହ ମିଶିବା ଯେ, ନେତାଙ୍କର ଏକ ସାହାସ, ଏହା କୁହାଯିବନି। ବରଂ ଏହା ବେଶି ବିପଦପୂର୍ଣ୍ଣ।

ଗତ ତିରିଶ ଚାଳିଶି ବର୍ଷ ଭିତରେ ଭାରତରେ ଅନେକ କିଛି ପରିବର୍ତ୍ତନ ହୋଇସାରିଛି। ରାଜନୈତିକ ତଥା ସାମାଜିକ ସ୍ଥିତି ବଦଳିଛି। ଭି.ଆଇ.ପି.ଙ୍କର ସୁରକ୍ଷାକୁ ନେଇ ସୃଷ୍ଟି ହେଉଥିବା ବିପଦର ସ୍ୱରୂପ ତଥା ମାଧ୍ୟମରେ ଭିନ୍ନତା ଆସିଛି...।

ଆତଙ୍କବାଦୀ ଏବଂ ମୌଳବାଦୀଙ୍କ କାର୍ଯ୍ୟକଳାପ ଏଠି ବଢ଼ିଛି। ବିଦ୍ରୋହୀମାନେ ଭୟଙ୍କର ଭାବେ ସକ୍ରିୟ ହୋଇ ଉଠିଛନ୍ତି। ଭାରତରେ ଅସ୍ଥିରତା ଆଣିବା ପାଇଁ ଅନେକ ବିଦେଶୀ ଗୁଇନ୍ଦା ସଂସ୍ଥା ତାଙ୍କ କାର୍ଯ୍ୟକ୍ରମ ଗୁପ୍ତରେ ଚାଲୁ ରଖିଛନ୍ତି ଏବଂ ସବୁଠାରୁ ବଡ଼ କଥା ହେଲା ଅନେକ ସାଧାରଣ ଲୋକ ବି ଅନେକ ମାରଣାସ୍ତ୍ର ନିଜ ପାଖରେ ରଖିଛନ୍ତି।

ଆତଙ୍କବାଦୀମାନେ ଭାବନ୍ତି - ହିଂସା ହେଉଛି ସବୁ ସମସ୍ୟାର ସମାଧାନର ଏକମାତ୍ର ବାଟ ଏବଂ କିଛି ରାଷ୍ଟ୍ରୀୟ ନେତାଙ୍କୁ ହତ୍ୟା କରିଦେଲେ ଯେ, ସେମାନେ ଏକ ଯୁଦ୍ଧ ଜିତିଛନ୍ତି, ଏହା ଦାବି ବି କରନ୍ତି।

୧୯୪୭ ମସିହାରୁ ଆଜି ପର୍ଯ୍ୟନ୍ତ ଅନେକ ଧାର୍ମିକ ମୌଳବାଦୀ ତଥା ଆତଙ୍କବାଦୀଙ୍କ ଆକ୍ରମଣରେ ଅନେକ ରାଷ୍ଟ୍ରୀୟ ନେତାଙ୍କର ଅକାଳ ମୃତ୍ୟୁ ହୋଇ ସାରିଲାଣି। ଏହି ହତ୍ୟା ତାଲିକାର ପ୍ରଥମ ଅଛନ୍ତି ମୋହନ ଦାସ କରମ ଚାନ୍ଦ ଗାନ୍ଧୀ। ଆମର ପ୍ରିୟ ବାପୁଜି...।

ଗାନ୍ଧିଜୀଙ୍କର ହତ୍ୟା ନେଇ ସୁରକ୍ଷାର ଅବହେଳା କଥା ବି ଅଭିଯୋଗକୁ ଆସେ। ୧୯୪୮ ମସିହା ଜାନୁଆରୀ ୨୦ ତାରିଖରେ ଗାନ୍ଧିଙ୍କୁ ହତ୍ୟା କରିବାକୁ ମଦନ ଲାଲ୍ ବୋମା ଫିଙ୍ଗିଥିଲା। ସେମିତି କିଛି କ୍ଷୟକ୍ଷତି ଘଟି ନଥିଲେ ବି ମଦନ ଲାଲ ଗିରଫ ହୋଇଥିଲା ଏବଂ ବାପୁଜୀଙ୍କ ନିରାପତ୍ତା ରକ୍ଷା ନେଇ ଦୃଢ଼ ସୁରକ୍ଷାବଳର ବ୍ୟବସ୍ଥା କରିବାକୁ ସରକାରୀ ସ୍ତରରେ ନିଷ୍ପତ୍ତି ହୋଇଥିଲା। ଗାନ୍ଧି କିନ୍ତୁ ଏହାକୁ ବିରୋଧ କରିଥିଲେ ଏବଂ ଧମକ ଦେଇଥିଲେ ଯଦି ଏପରି ବ୍ୟବସ୍ଥା କିଛି ହୁଏ ସେ ଅନଶନ କରିବେ। ଫଳ ଏତିକି ହୋଇଥିଲା, ୧୯୪୮ ମସିହା ଜାନୁଆରୀ ୩୦ ତାରିଖରେ ନାଥୁରାମ ଗଡ଼ସେ ଗାନ୍ଧିଙ୍କ ପ୍ରାର୍ଥନା ସଭାରେ ହାତରେ ବନ୍ଧୁକଟିଏ ନେଇ ପ୍ରବେଶ କରି ଗାନ୍ଧିଙ୍କୁ ହତ୍ୟା କରିଥିଲା...।

୧୯୮୪ ମସିହାରେ ଇନ୍ଦିରା ଗାନ୍ଧିଙ୍କୁ ତାଙ୍କ ନିରାପତ୍ତା ରକ୍ଷୀମାନେ ହତ୍ୟା କରିଥିଲେ ଏବଂ ୧୯୯୧ ମସିହାରେ ଏକ ନିର୍ବାଚନ ସଭାରେ ଏଲ୍.ଟି.ଟି.ଇ. ଆତଙ୍କବାଦୀ ଦ୍ୱାରା ରାଜୀବ ଗାନ୍ଧି ମୃତ୍ୟୁ ବରଣ କଲେ। କୁହାଯାଏ, ଯଦି ଇନ୍ଦିରାଜୀ ତାଙ୍କ ଶିଖ୍ ଅଙ୍ଗରକ୍ଷୀଙ୍କୁ ବଦଳେଇ ଦେବାକୁ ରାଜି ହୋଇଥାନ୍ତେ ଏବଂ ରାଜୀବ ଗାନ୍ଧି ନିଜ ସୁରକ୍ଷା ବଳୟକୁ ଅତିକ୍ରମ କରି ଜଣେ ଅଜଣା ସମର୍ଥକଙ୍କ ଠାରୁ ଫୁଲତୋଡା ଗ୍ରହଣ କରି ନ ଥାନ୍ତେ ଆଜି ବି ସେ ଦୁଇନେତା ଆମ ଗହଣରେ ଥାଆନ୍ତେ...।

କେବଳ ଭାରତ ନୁହେଁ, ବିଦେଶରେ ମଧ୍ୟ ନିରାପତ୍ତାର ଛିଦ୍ର ଖୋଜି ଆତଙ୍କବାଦୀ ଆତତାୟୀ ମାନେ ଅନେକ ରାଷ୍ଟ୍ର ନେତାଙ୍କୁ ହତ୍ୟା କରିଛନ୍ତି। ପାକିସ୍ତାନର ବେନାଜୀର ଭୁଟୋ, ବଙ୍ଗଳା ଦେଶର ମୁଜିବୁର୍ ରହମନ୍, ଯୁକ୍ତରାଷ୍ଟ୍ର ଆମେରିକାର ଜନ୍ ଏଫ୍. କେନେଡ଼ି ଏବଂ ରବର୍ଟ କେନେଡ଼ି ଏପରି ହତ୍ୟାର ଶୀକାର ହୋଇଛନ୍ତି। ଏମିତି ବି ଖବର ଆସେ, ଆମେରିକାର ରାଷ୍ଟ୍ରପତି ନିରାପତ୍ତା ବଳୟ ଅତିକ୍ରମ କଲେ ତାଙ୍କୁ ନିରାପତ୍ତା ରକ୍ଷୀଙ୍କ ଠାରୁ ମୃଦୁ ତାଗିଦ୍ କରାଯାଏ।

ଭାରତରେ ଭି.ଆଇ.ପି. ନେତାମାନେ କିନ୍ତୁ ପାଲଟା ଯୁକ୍ତିଟିଏ କରନ୍ତି। କହନ୍ତି - ସାଧାରଣ ଲୋକଙ୍କ ସହ ମିଶିବା ସେମାନଙ୍କର ଏହା ଏକ ରାଜନୈତିକ ଧର୍ମ।

ଗଣତନ୍ତ୍ର ଗଣ ସମର୍ଥନରେ ହିଁ ଚାଲେ। ଲୋକଙ୍କ ପାଖକୁ ନଗଲେ ମୂଳ ବାସ୍ତବତା କ'ଣ ଜାଣି ହୁଏନି। ସେଇଥିପାଇଁ ସ୍ୱାଧୀନତା ସଂଗ୍ରାମ ବେଳେ ଅନେକ ଜାତୀୟ ନେତା ଗାଁକୁ ଯାଇ ସେଠାରେ ଦିନ ଦିନ ଧରି ରହୁଥିଲେ। ବ୍ରିଟିଶ ସରକାର ସେମାନଙ୍କୁ ନିରାପତ୍ତା ଯୋଗାଇ ଦେବାକୁ ଚାହିଁଥିଲେ ବି ନେତାମାନେ ସେ ସୁରକ୍ଷା ଗ୍ରହଣ କରି ନ ଥିଲେ। ଅବଶ୍ୟ ନେତାଙ୍କ ଯୁକ୍ତି ଅପ୍ରସାଂଗିକ କିମ୍ବା ଅଯୁକ୍ତିକ ନୁହେଁ। କାରଣ ଲୋକଙ୍କ ସହ ନ ମିଶିଲେ ଭୋଟ ମିଳେନି ଏବଂ ଗଣତାନ୍ତ୍ରିକ ରାଜନୀତିରେ କେବଳ ଭୋଟ ଜିତିଲେ ହିଁ କ୍ଷମତା ଦଖଲ କରିହୁଏ।

କିନ୍ତୁ ଏ କଥା ବି ଠିକ୍, ଏକ ସାର୍ବଭୌମ ରାଷ୍ଟ୍ରର କର୍ତ୍ତବ୍ୟ ହେଲା, ସାଧାରଣ ଲୋକଙ୍କୁ ସୁରକ୍ଷା ଦେବା, ଆଇନ ଶୃଙ୍ଖଳା ବଜାୟ ରଖିବା ଏବଂ ଲୋକଙ୍କ ସହ ମିଶିବାରେ ନେତାଙ୍କର ସ୍ୱାଧୀନତା ଏବଂ ତାଙ୍କର ନିରାପତ୍ତା ବ୍ୟବସ୍ଥା ଭିତରେ ସନ୍ତୁଳନ ରଖିବା। ରାଷ୍ଟ୍ର ପରିଚାଳନାରେ ଥିବା ରାଷ୍ଟ୍ରନେତାମାନେ ଏ ଦେଶର ସମ୍ପତ୍ତି। ନିରାପତ୍ତା ଅଭାବରେ ଏମାନଙ୍କର ଯେପରି କିଛି କ୍ଷତି ନ ହେଉ ପ୍ରତି ରାଷ୍ଟ୍ରଶକ୍ତି ଏଥିପାଇଁ ବିଶେଷ ଚିନ୍ତିତ ବି ଥାଏ। ସମସ୍ତ ନିରାପତ୍ତା ସତ୍ତ୍ୱେ ଯଦି ରାଷ୍ଟ୍ରନେତାଙ୍କର କିଛି କ୍ଷତି ହୋଇଯାଏ, ପରବର୍ତ୍ତୀ କାଳରେ ଏହା ସଂଶୋଧିତ ହୋଇଥାଏ। କିନ୍ତୁ ଆବଶ୍ୟକୀୟ ସୁରକ୍ଷା ବ୍ୟବସ୍ଥା ନ ଥାଇ ଯଦି କିଛି ଅଘଟଣ ଘଟେ ଏଥିପାଇଁ ଦାୟୀ କିଏ, ଏ ନେଇ ଅନେକ ବିତର୍କ ଆସେ।

ସୁତରାଂ ଭି.ଆଇ.ପି. ରାଜନେତାମାନେ ନିରାପତ୍ତା ରକ୍ଷୀଟିଏର ଦାୟିତ୍ୱ ଏବଂ କର୍ତ୍ତବ୍ୟ ପ୍ରତି ସଂବେଦନଶୀଳ ହେବା ଉଚିତ। ତା'ର ଅସହାୟତା ପ୍ରତି ଦୃଷ୍ଟି ଦେବା ଦରକାର। କାରଣ ଯେଉଁ ରାଜନେତାଙ୍କୁ ନିରାପତ୍ତା ରକ୍ଷୀଟିଏ ସୁରକ୍ଷା ଦିଏ ସେହି ନେତା ସେଇ ନିରାପତ୍ତା ରକ୍ଷୀର ରାଜନୈତିକ ପ୍ରଭୁ ଏବଂ ନିଯୁକ୍ତି ଦାତା ବି ହୋଇଥାଏ। ବ୍ୟବହାରରେ ଅସଂଯତ ଆସିଲେ ଚାକିରୀ ଯିବାର ଭୟ ବି ଥାଏ।

ହଁ, ଏ ଆଲୋଚନାର ଏ ଶେଷ କଥା - ନେତାଙ୍କ ସୁରକ୍ଷା ବ୍ୟବସ୍ଥା କୌଣସି ଦଳୀୟ ପ୍ରସଂଗ ନୁହେଁ। ଏହା ଏକ ରାଷ୍ଟ୍ରୀୟ ପ୍ରସଙ୍ଗ। ନିରାପତ୍ତା ଅଭାବରୁ ନେତାମାନଙ୍କର ଯଦି କିଛି ଅଘଟଣ ଘଟେ, ସମଗ୍ର ରାଷ୍ଟ୍ରକୁ ଏଥିପାଇଁ ମୂଲ୍ୟ ଦେବାକୁ ପଡ଼େ। ରାଷ୍ଟ୍ର ବିରୋଧି ଶକ୍ତିମାନେ ବାହାବା ପାଇଯାଆନ୍ତି।

ସୁରକ୍ଷା ବଳୟ ଭାଙ୍ଗୁଥିବା ଆମ ପ୍ରିୟ ନେତାମାନେ ତେଣୁ ଏକଥା ବୁଝିବା ଦରକାର।



# ବିଦେଶୀ ବିଶ୍ୱବିଦ୍ୟାଳୟ

କେନ୍ଦ୍ର ସରକାରଙ୍କର ନିଷ୍ପତ୍ତି ହେଲା, ଜାତୀୟ ପ୍ରାଧାନ୍ୟ ଥିବା ଆଉ ଅଧିକ କିଛି ବିଶ୍ୱ ବିଦ୍ୟାଳୟ ଏଠି ସ୍ଥାପିତ ହେବ। ଅବଶ୍ୟ ବିଶ୍ୱବିଦ୍ୟାଳୟ ବେଶି ହେଲେ କିଛି ଅସୁବିଧା ନାହିଁ କିମ୍ବା କୌଣସି ସନ୍ଦେହ ଆସେନି। ଅଥଚ ଉଚ୍ଚଶିକ୍ଷା ବିଶେଷକରି ବିଶ୍ୱବିଦ୍ୟାଳୟଟି ଯେତେବେଳେ ପୁରାପୁରି ବିଦେଶୀ ହୋଇଯାଏ, ସେତେବେଳେ ଏହା ଗ୍ରହଣୀୟ ହୁଏନି। ସାଧାରଣ ଲୋକଙ୍କର ଏଥିରେ କମ୍ ବିଶ୍ୱାସ ଥାଏ।

ଶିକ୍ଷା ଏକ ସମ୍ବେଦନଶୀଳ ପ୍ରସଙ୍ଗ। ଏହା ଆହୁରି ବେଶି ସ୍ପର୍ଶକାତର ହୋଇଯାଏ ଯେବେ ଉଚ୍ଚଶିକ୍ଷା ବିଦେଶୀ ମାଲିକଙ୍କ ବ୍ୟକ୍ତିଗତ ମାଲିକାନାକୁ ଚାଲିଆସେ। କାରଣ ହେଉଛି ଭାରତ ବର୍ଷର ସାମାଜିକ ନ୍ୟାୟ ତଥା ସଂରକ୍ଷଣ ନୀତିକୁ ବିଦେଶୀ ବ୍ୟବସାୟୀ ଗ୍ରହଣ କରନ୍ତି ନାହିଁ।

ଏଇ ଯେମିତି ବେଦାନ୍ତ ବିଶ୍ୱବିଦ୍ୟାଳୟ କଥା। ଏତେ ବଡ଼ ବିଦେଶୀ ବିଶ୍ୱବିଦ୍ୟାଳୟକୁ ଲୋକେ ସହଜରେ ଗ୍ରହଣ କରିପାରୁ ନାହାଁନ୍ତି। ଗ୍ରହଣ ନ କରିବାର କିଛି କାରଣ ବି ଅଛି। ବେଦାନ୍ତ ଏଠି ଜମି ନେବ, ପାଣି ନେବ, ବିଜୁଳି ନେବ ଏବଂ ତିଷ୍ଠି ରହିବା ପାଇଁ ଏହା ସ୍ଥାନୀୟ ଲୋକ ଦୈହିକ ତଥା ଆବେଗିକ ସମର୍ଥନ ନେବ; କିନ୍ତୁ ଜଣେ ହେଲେ ସାଧାରଣ ଗରିବ ଓଡ଼ିଆ ପିଲାଟିଏ ଯେ ଏଥିରେ ପଢ଼ିପାରିବ, ଏହାର କିଛି ଗ୍ୟାରେଣ୍ଟି ନାହିଁ।

ଏ ଖାଲି ବେଦାନ୍ତ କଥା ନୁହେଁ। ଏଇ କିଛି ବର୍ଷ ଭିତରେ ଭାରତରେ ଅନେକ ବିଦେଶୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ସାରିଲାଣି। ଆହୁରି ଅନେକ ପ୍ରତିଷ୍ଠା ପାଇଁ ଲାଇନ୍‌ରେ ଅଛନ୍ତି। ଭାରତୀୟ ପିଲାଙ୍କ ପାଇଁ ପ୍ରକୃତରେ ଏବେ ସେମାନଙ୍କ ପାଠ ପଢ଼ିବା ପସନ୍ଦରେ ଦ୍ୱନ୍ଦ ଆସିଛି।

ଏ ଦେଶରେ ଦେଶୀ ଉଚ୍ଚ ଶିକ୍ଷାୟତନର ଅଭାବ ନାହିଁ। ୨୦୦୫-୦୬ର ଏକ ରିପୋର୍ଟ ଅନୁସାରେ ଏଠାରେ ୨୫୦ଟି ବିଶ୍ୱବିଦ୍ୟାଳୟ, ୧୦ ହଜାର ୬ଶହ କଲେଜ, ୭ଶହ ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟ, ୫୫୦ ଇଞ୍ଜିନିୟରିଂ କଲେଜ, ୬୫୫ ଡାକ୍ତରୀ କଲେଜ, ୬ଶହ ମ୍ୟାନେଜମେଣ୍ଟ ଶିକ୍ଷା ଅନୁଷ୍ଠାନ ଅଛି। ପିଲାଙ୍କୁ ପଢ଼ାଇବା ନିମନ୍ତେ ଏଠି ୩ଲକ୍ଷ ୨୫ ହଜାର ଅଧ୍ୟାପକ ତଥା ଅଧ୍ୟାପିକା ଅଛନ୍ତି।

ଏ ରିପୋର୍ଟରେ ଏକଥା ବି ଅଛି, ଭାରତରେ ଥିବା ବୈଷୟିକ ଶିକ୍ଷାନୁଷ୍ଠାନ ମାନଙ୍କରୁ ବୈଷୟିକ ଶିକ୍ଷାପ୍ରାପ୍ତ ପ୍ରାୟ ୨୫ଲକ୍ଷ ସ୍ନାତକ ପ୍ରତିବର୍ଷ ଉତ୍ତୀର୍ଣ୍ଣ ହୁଅନ୍ତି। କିନ୍ତୁ ବିଡ଼ମ୍ବନା ଯେ, ଭାରତରେ କଂପାନୀ ମାନଙ୍କରେ ମଧ୍ୟ କର୍ମଚାରୀଙ୍କର ଅଭାବ ଥାଏ।

ଖାସ୍ ସେଇଥିପାଇଁ ତେଣୁ ସ୍ୱଭାବିକ ପ୍ରଶ୍ନ ଆସେ, ଏଠି ଏତେ ସଂଖ୍ୟାରେ ବିଶ୍ୱବିଦ୍ୟାଳୟ ତଥା ମହାବିଦ୍ୟାଳୟ ଥିଲେ ବି ଏବଂ ଏତେ ସଂଖ୍ୟାରେ ସ୍ନାତକ ଉତ୍ତୀର୍ଣ୍ଣ ହେଉଥିଲେ ମଧ୍ୟ, ଆମେ ବିଦେଶୀ ବ୍ୟବସାୟୀଙ୍କୁ ଶିକ୍ଷାୟତନ ପ୍ରତିଷ୍ଠା ପାଇଁ ଡ଼ାକୁଛୁ କାହିଁକି ? ଚାକିରୀ ପାଇଁ ପିଲା ସୃଷ୍ଟି କରିବାରେ ଆମ ଶିକ୍ଷା ବ୍ୟବସ୍ଥାରେ ଅଭାବ କ'ଣ ?

ହୋଇପାରେ, ଭାରତରେ ଉଚ୍ଚଶିକ୍ଷାର ମାନ କମିଛି। ପୁରୁଣା ସିଲାବସ୍‌ରେ ପାଠପଢ଼ା ଏଠି ଚାଲିଛି। ନିଯୁକ୍ତିଯୋଗ୍ୟ ସିଲାବସ୍ ପ୍ରସ୍ତୁତି ପାଇଁ ଚେଷ୍ଟା ବି ନାହିଁ। ଏବଂ ଏହା ମଧ୍ୟ ହୋଇପାରେ, ପ୍ରାଥମିକ ଶିକ୍ଷା ଏଠାରେ ବ୍ୟାପକ ହେବା ହେତୁ ଉଚ୍ଚଶିକ୍ଷାରେ ଅଧିକ ଅର୍ଥ ବିନିଯୋଗ ପାଇଁ ଭାରତୀୟ ରାଜକୋଷରେ ଆବଶ୍ୟକୀୟ ଅର୍ଥ ନାହିଁ।

ଉଚ୍ଚଶିକ୍ଷାରେ ବିଦେଶୀ ପୁଞ୍ଜି ଲଗାଣର ବିଭିନ୍ନ ଦିଗ ଅନୁଧ୍ୟାନ କରି ସୁପାରିଶ କରିବାକୁ ଏଇ କିଛି ବର୍ଷ ତଳେ ଏକ କମିଟି ବସିଥିଲା। ଏ କମିଟି ଥିଲା, "ବିରଳା - ଆମ୍ବାନୀ" କମିଟି। ଏ କମିଟି ସୁପାରିଶ କଲେ, ଭାରତରେ ଶିକ୍ଷା କ୍ଷେତ୍ରରେ ଏକ ପ୍ରତିଯୋଗିତା ସୃଷ୍ଟି ପାଇଁ ବିଦେଶୀ ବିଶ୍ୱବିଦ୍ୟାଳୟ ପ୍ରତଷ୍ଠା ହେବା ଦରକାର। ଉଚ୍ଚଶିକ୍ଷା ନିମନ୍ତେ ଏକ ପ୍ରତିଯୋଗୀର ଆବଶ୍ୟକତା ଅଛି। ୨୫ଲକ୍ଷ ବୈଷୟିକ ଶିକ୍ଷାପ୍ରାପ୍ତ ସ୍ନାତକ ବାହାରୁଥିଲେ ବି ଏହାର ମାତ୍ର ୨୫ ପ୍ରତିଶତ ପିଲା ନିଯୁକ୍ତି ଯୋଗ୍ୟ ହେଉଛନ୍ତି, ଏହା ହିଁ ଆମ ଉଚ୍ଚଶିକ୍ଷାର ମାନ କଥା କହେ....।

କିନ୍ତୁ ଏକଥା ସତ ଯେ, ବିଦେଶୀ ମାଲିକମାନେ ଭାରତରେ ଜ୍ଞାନ ବିତରଣ କରିବାକୁ ଆସି ନାହାଁନ୍ତି। ସେମାନେ ବ୍ୟବସାୟ କରିବାକୁ ଆସିଛନ୍ତି। ଶିକ୍ଷାଦାନର ବାହାନା କରି ଲାଭ ଉଠାଇବା ତାଙ୍କର ଏକ ମାତ୍ର ଉଦ୍ଦେଶ୍ୟ। ଭାରତରେ ଜମିକୁ କିଣି ନେଇ ନୂଆ ଜମିଦାର ହେବା ତାଙ୍କର ଏକ ଇଛା...। ଏବଂଶିକ୍ଷା ମାର୍କେଟକୁ ଦଖଲ କରି ଭାରତୀୟ ମଧ୍ୟବିତ୍ତ ଶ୍ରେଣୀକୁ ଶୋଷଣ କରିବା ତାଙ୍କ ଶିକ୍ଷା ମିସନର ଅନ୍ୟ ଏକ ଅଂଶ।

ବିଦେଶୀ ବିଶ୍ୱବିଦ୍ୟାଳୟର ଏଠି ସ୍ଥାପନ ନେଇ ଯେତେବେଳେ ବିରଳା - ଆମ୍ବାନୀ କମିଟି ସୁପାରିଶ ଆସିଥିଲା, ଏହି ସୁପାରିଶ ବିରୁଦ୍ଧରେ ଏଠାରେ ସ୍ୱର ଉଠିଥିଲା। ବିତର୍କରେ ଭାଗ ନେଇ ବିଦେଶୀ ବିଶ୍ୱବିଦ୍ୟାଳୟର ସମର୍ଥକ ମାନେ କିନ୍ତୁ ଯୁକ୍ତି କରିଥିଲେ - ବିଦେଶୀ ବିଶ୍ୱବିଦ୍ୟାଳୟ ଅର୍ଥ ହେଲା ଯେଉଁଠି ସୁନ୍ଦର କ୍ୟାମ୍ପସ ଥିବ; ଭୂମିକଂପ ନିରୋଧକ କୋଠାଥିବ; ପ୍ରତିଭା ସମ୍ପନ୍ନ ଅଧ୍ୟାପକ ଥିବେ, ନୋବେଲ ପୁରସ୍କାର ପ୍ରାପ୍ତ

ବିଦ୍ୱାନ ମାନେ ଅତିଥି ଅଧ୍ୟାପକ ହୋଇ ଆସୁଥିବେ। ଏସବୁ ପ୍ରତିଶ୍ରୁତି ଯେ ସତ ନୁହେଁ, ଏହା ଏବେ ପ୍ରମାଣିତ ହୋଇସାରିଲାଣି। ଅନେକ ବିଦେଶୀ ବିଶ୍ୱବିଦ୍ୟାଳୟର ସ୍ଥାୟୀ ଫାକଲଟି ନାହାଁନ୍ତି। ସ୍ୱୀକୃତି ନାହିଁ ଏବଂ ଏହା ମଧ୍ୟ ସତ ଯେ, ଏହି ସବୁ ବିଶ୍ୱବିଦ୍ୟାଳୟରୁ ପାଶ୍ କରିଥିବା ପିଲାଙ୍କୁ ଭାରତୀୟ ପବ୍ଲିକ୍ ସର୍ଭିସ କମିଶନରେ ଅନେକ କ୍ଷେତ୍ରରେ ପରୀକ୍ଷା ଦେବାକୁ ମନା।

ଜଗତିକରଣକୁ ଗ୍ରହଣ କରିଛୁ ମାନେ ନୁହେଁ ଯେ, ଜଗତିକରଣର ସବୁ ପାପକୁ ଆମେ ଗ୍ରହଣ କରିବୁ ଏବଂ ସବୁଠାରୁ ବଡ଼ କଥା ହେଲା, ଜଗତିକରଣ ଯେତେବେଳେ ଶିକ୍ଷା କ୍ଷେତ୍ରରେ ପ୍ରବେଶ କରିଯାଏ, ଦୃଢ଼ ସମାଜଟିଏ ଭାଙ୍ଗିଯିବାର ସମ୍ଭାବନା ସୃଷ୍ଟି ହୋଇଥାଏ।

ସୁତରାଂ ଭାରତୀୟ ଉଚ୍ଚ ଶିକ୍ଷାକୁ ରୁଗ୍ଣ କରିଦେଇ ଏଥିରେ ବ୍ୟବସାୟ ପାଇଁ ବିଦେଶୀକୁ ଆମନ୍ତ୍ରଣ କରିବା, ଏ ଦେଶ ପାଇଁ ଶୁଭଙ୍କର ନୁହେଁ। ବିଦେଶୀ ମାନେ ଯେ, ଏଠାକୁ ଜ୍ଞାନ ବାଣ୍ଟିବାକୁ ଆସିଛନ୍ତି, ଏପରି ଧାରଣା ଯଦି ଥାଏ, ଏହା ଏକ ସ୍ଥାନାନ୍ତରିତ ଧାରଣା।

ଭାରତରେ ଭିତିଭୂମିର ଅଭାବ ନାହିଁ। ପ୍ରତିଭା ପୂର୍ଣ୍ଣ ଅଧ୍ୟାପକ ତଥା ଅଧ୍ୟାପିକା କମ୍ ନାହାନ୍ତି। ଯାହା ଅଭାବ ଅଛି, ତାହା ହେଉଛି ପରିଚାଳନା ଗତ ଅଭାବ। ସରକାର ବଦଳିଲେ ସିଲାବସ୍ ବଦଳିବାର ଏକ ରାଜନୈତିକ ତାମସା। ଏ ସବୁର ସଂଶୋଧନ ହେବା ଦରକାର।

ଆମକୁ ପାଠ ପଢ଼ାଇବାକୁ ଶେଷରେ ବିଦେଶୀ ମାନେ ଆସିବେ ? ଆଶ୍ଚର୍ଯ୍ୟ !



# ଭାରତୀୟମାନେ ଭଲ ଖାଉଛନ୍ତି

ଭାରତୀୟଙ୍କ ସମ୍ପର୍କରେ ଏପରି ଏକ ମନ୍ତବ୍ୟ କିଛିବର୍ଷ ତଳେ ଆମେରିକାର ରାଷ୍ଟ୍ରପତି ଜର୍ଜ ବୁଶ ଦେଇଥିଲେ। ସେ କହିଲେ- ଭାରତୀୟ ମଧ୍ୟବର୍ଗର ଲୋକେ ସମ୍ପ୍ରତି ଭଲ ଖାଉଛନ୍ତି; ବେଶି ଖାଉଛନ୍ତି ଏବଂ ଏହି ଶ୍ରେଣୀର ଆର୍ଥିକ ସମୃଦ୍ଧି ଘଟିବା ହେତୁ ଏଠାରେ ପୃଷ୍ଟିକର ଖାଦ୍ୟ ପ୍ରତି ଚାହିଦା ବଢ଼ିଛି।

ଭାରତରେ ମଧ୍ୟବିତ୍ତ ଶ୍ରେଣୀର ଲୋକସଂଖ୍ୟା ହେଉଛି ପ୍ରାୟ ୩୫କୋଟି। ଯୁକ୍ତରାଷ୍ଟ୍ର ଆମେରିକାର ସମୁଦାୟ ଲୋକସଂଖ୍ୟା ଠାରୁ ଅଧିକ। ହଠାତ୍ ଖାଇବା ଅଭ୍ୟାସରେ ଭାରତରେ ପରିବର୍ତ୍ତନ ଆସିବା ଯୋଗୁଁ ପୃଥିବୀରେ ଖାଦ୍ୟ ସଙ୍କଟ ଘଟିଛି ବୋଲି ଜର୍ଜ ସାହେବ ଏକ ଅବାଞ୍ଛିତ ସଫେଇ ଦିଅନ୍ତି।

ଏହା ସତ ଯେ, ସମଗ୍ର ପୃଥିବୀରେ ଏବେ ଏକ ଅହେତୁକ ଖାଦ୍ୟ ସଙ୍କଟ। ଅନେକ ରାଷ୍ଟ୍ରରେ ଖାଦ୍ୟାଭାବ ଯୋଗୁଁ ସାମାଜିକ ଅସ୍ଥିରତା ଦେଖାଦେଲାଣି। ଏ ସବୁ ଦେଶରେ ଦଂଗା ମଧ୍ୟ ଆରମ୍ଭ ହୋଇଗଲାଣି। ପ୍ରାଚୁର୍ଯ୍ୟରେ ଭରପୁର କିଛି ସମୃଦ୍ଧ ଉନ୍ନତ ରାଷ୍ଟ୍ର ମଧ୍ୟ ଏଥିରୁ ବାଦ ଯାଇନାହିଁ। କିନ୍ତୁ ପୃଥିବୀର ଖାଦ୍ୟ ସଙ୍କଟ ପାଇଁ ଯେ ଭାରତୀୟଙ୍କର ଭଲ ଖାଦ୍ୟ ଗ୍ରହଣ ଦାୟୀ, ଏହା ଏକ ଚରମ ତାଚ୍ଛଲ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ।

ବୁଶଙ୍କ ମନ୍ତବ୍ୟ ନେଇ ବର୍ତ୍ତମାନ ଭାରତସାରା ଚର୍ଚ୍ଚା। ରାଜନୈତିକ ଦଳର କର୍ମୀମାନେ ରାଜରାସ୍ତାକୁ ଓହ୍ଲାଇ ଆସି ଏହାର ପ୍ରତିବାଦ କଲେଣି। ଭାରତରେ ଖାଦ୍ୟ ସାମଗ୍ରୀର ଦରବୃଦ୍ଧି ଆକାଶ ଛୁଆଁ ହୋଇଛି, ଏହା ସତ, ହେଲେ ଏଠାରେ ଭଲ ଖାଇବାର ଅଧିକାରକୁ ବିଦେଶୀମାନେ ବିରୋଧ କରି ପ୍ରାଚ୍ୟ ପାଶ୍ଚାତ୍ୟ ବିଭାଜନକୁ ପୁଣି ଥରେ ନଗ୍ନ ଭାବେ ଉନ୍ମୋଚନ କରିଦେଇଛନ୍ତି ଏବଂ ଭାରତ ପ୍ରତି ଏମାନଙ୍କର ମାନସିକତାରେ ଯେ କିଛି ପରିବର୍ତ୍ତନ ଆସିନି, ଏହା ସ୍ପଷ୍ଟ।

ଭାରତରେ ଖାଦ୍ୟ ସାମଗ୍ରୀର ଦରବୃଦ୍ଧିର କାରଣ ନେଇ ଏଠି ଦୁଇଟି ବିଶ୍ଳେଷକ ଗୋଷ୍ଠୀ ଅଛନ୍ତି। ଗୋଟିଏ ଗୋଷ୍ଠୀର ମତ ହେଲା, ଭାରତରେ ମୁଣ୍ଡ ପିଛା ଆୟ ଏବଂ ଉତ୍ପାଦନ ଭିତରେ ସମତା ରହୁନି। ଲୋକସଂଖ୍ୟା ବୃଦ୍ଧି ସହ ଉତ୍ପାଦନର ମଧ୍ୟ ତାଳମେଳ ନାହିଁ। ଖାଦ୍ୟ ଉତ୍ପାଦନ ଏଠି ବାର୍ଷିକ ଦୁଇଶହ ନିୟୁତ ଟନରୁ ଦୁଇଶହ କୋଡ଼ିଏ ନିୟୁତ ଭିତରେ ସୀମିତ ରହୁଛି। ଏହା ଯେପରି ଏକ ପ୍ରକାର ସ୍ଥାଣୁ ହୋଇଯାଇଛି। ଉତ୍ପାଦନରେ

ସ୍ଥାଣୁତା ଥିଲେ ବି ମୁଣ୍ଡ ପିଛା ଆୟର କିନ୍ତୁ ବୃଦ୍ଧି ହୋଇଛି। ୧୯୯୦ - ୯୧ ମସିହାରେ ଜଣେ ଭାରତୀୟଙ୍କର ମୁଣ୍ଡପିଛା ଆୟ ୧୧୫୭୫ ଟଙ୍କା ଥିଲା। ୨୦୦୬ -୦୭ ମସିହାରେ ଏହି ଆୟ ୨୨୫୫୩ ଟଙ୍କାରେ ପହଞ୍ଚିଛି। ଲୋକଙ୍କ କ୍ରୟ ଶକ୍ତି ବଢ଼ିଥିଲେ ମଧ୍ୟ ଖାଦ୍ୟ ଉତ୍ପାଦନ ସେହି ହାରରେ ବଢ଼ିନାହିଁ। ଏକଥା ବି ଠିକ୍ ଯେ, ଗତ ଆଠ ବର୍ଷ ଭିତରେ ଭାରତର ଲୋକସଂଖ୍ୟା ୧୦୦ କୋଟିରୁ ୧୧୩ କୋଟିରେ ପହଞ୍ଚି ସାରିଲାଣି। ଏହି ଅଭିବୃଦ୍ଧି ହେଉଛି ପ୍ରାୟ ୧୩ ପ୍ରତିଶତ। ଖାଦ୍ୟ ଉତ୍ପାଦନର ବୃଦ୍ଧି ଏହି ତେର ପ୍ରତିଶତ ହୋଇଥିଲେ ଭାରତରେ ଖାଦ୍ୟ ଉତ୍ପାଦନର ସାମଗ୍ରୀର ଦରବୃଦ୍ଧି ହୋଇ ନ ଥାନ୍ତା ବୋଲି, ଏହି ବିଶ୍ଳେଷକ ଗୋଷ୍ଠୀ ମତ ଦିଅନ୍ତି। ୨୦୦୬ରୁ ୨୦୧୩ ମସିହା ଭିତରେ ମଧ୍ୟ ଏଇ ମୁଣ୍ଡପିଛା ଆୟ ପ୍ରାୟ ୩ ଗୁଣ ଅଧିକ ହୋଇଗଲାଣି। ଜାତୀୟ ଆର୍ଥିକ ଅଭିବୃଦ୍ଧି ଏବଂ ବିଭିନ୍ନ ବେତନ ଆୟୋଗ ସୁପାରିଶର ଏଥିନେଇ ଅବଦାନ ରହିଛି।

ଅନ୍ୟ ଗୋଷ୍ଠୀର କଥା କିନ୍ତୁ ଭିନ୍ନ। ସେମାନେ କହନ୍ତି, ଭାରତ ବାହାର ଦେଶରୁ ଖାଦ୍ୟ ଆମଦାନୀ ପ୍ରାୟ କରେ ନାହିଁ। ଯାହା ହୁଏ ତାହା ବେଶ୍ ନଗଣ୍ୟ। ରପ୍ତାନୀ ଉପରେ ବି ଏଠି କଟକଣା ଅଛି। ଗରିବ ଲୋକଙ୍କ ଖାଦ୍ୟ ଆହରଣ ଶୈଳୀରେ ଏଠି ବି ସେମିତି କିଛି ପରିବର୍ତ୍ତନ ଆସିନି। ଭାରତ ନିଜ ଉତ୍ପାଦିତ ଖାଦ୍ୟକୁ ନିଜ ଲୋକଙ୍କ ପାଇଁ ସାଇତି ରଖୁଛି। ଏଠାରେ ଖାଦ୍ୟ ଶସ୍ୟର ଉତ୍ପାଦନ ବି ରେକର୍ଡ ପରିମାଣର। ଅସଲ କଥା କିନ୍ତୁ ହେଲା, ଆମେରିକା ସମେତ ପୃଥିବୀର ଅନେକ ଉନ୍ନତ ରାଷ୍ଟ୍ର ନିଜ ଚାଷ ଜମିରେ ଆଉ ଖାଦ୍ୟ ଶସ୍ୟ ଉତ୍ପାଦନ ନ କରି ଏଠାରେ ଜୈବିକ ତୈଳ ବା "ବାଓ ଫୁଏଲ" ଉତ୍ପାଦନ କରନ୍ତି। ଏଇଟା ହିଁ ବାସ୍ତବରେ ବିଶ୍ୱ ଖାଦ୍ୟ ସଙ୍କଟର କାରଣ।

ଖାଦ୍ୟ ଦରବୃଦ୍ଧି ଏବଂ ଏହାର ସଙ୍କଟ ନେଇ ଏ ଲେଖକଙ୍କର ମତ କିନ୍ତୁ ନିଆରା। ହଁ, ହୋଇପାରେ, ଭାରତରେ ଖାଦ୍ୟ ଉତ୍ପାଦନରେ ସ୍ଥାଣୁତା ଆସିଛି; ଏହା ବି ହୋଇପାରେ, ପ୍ରାଚୁର୍ଯ୍ୟ ହେତୁ ପୁଷ୍ଟିକର ଖାଦ୍ୟ ପ୍ରତି ଚାହିଦା ବଢ଼ିଛି। କିନ୍ତୁ ଏହା ସତ ଯେ, ଭାରତୀୟମାନେ ଅନ୍ୟ ଉନ୍ନତ ରାଷ୍ଟ୍ରର ଲୋକଙ୍କ ପରି ଖାଦ୍ୟ ଦ୍ରବ୍ୟ ନଷ୍ଟ କରନ୍ତି ନାହିଁ।

ଉନ୍ନତ ରାଷ୍ଟ୍ରମାନଙ୍କରେ କିପରି ଖାଦ୍ୟ ସାମଗ୍ରୀ ନଷ୍ଟ ହୁଏ, ଯୁକ୍ତରାଷ୍ଟ୍ର ଆମେରିକାର 'ଆରିଦନା' ବିଶ୍ୱବିଦ୍ୟାଳୟରେ ଏଥିନେଇ ପ୍ରାୟ ୧୦ବର୍ଷ ଧରି ଏକ ଗବେଷଣା ପରେ ଅଧ୍ୟୟନ ରିପୋର୍ଟ ଟିଏ ପ୍ରକାଶ ପାଇଛି। ରିପୋର୍ଟରେ ଅଛି - ପୃଥିବୀର ଉନ୍ନତ ରାଷ୍ଟ୍ରର ଲୋକମାନେ ଯେତିକି ଖାଦ୍ୟ ନଷ୍ଟ କରନ୍ତି ତା ଠାରୁ ବେଶି ନଷ୍ଟ କରନ୍ତି ଆମେରିକୀୟମାନେ। ଆମେରିକା ଏକ ଖାଦ୍ୟ ଫିଙ୍ଗୁଥିବା ସମାଜ। ଅନ୍ୟ କଥାରେ କହିଲେ ଏହା ଏକ ଥ୍ରୋ ଆୱେ ସୋସାଇଟି। ଚାଳିଶି ପ୍ରତିଶତ ଶସ୍ୟ ଏମାନେ ଅମଳ କରନ୍ତି ନାହିଁ। ପ୍ରତି ଘରେ ଖାଇବା ପାଇଁ କିଣା ଯାଉଥିବା ଖାଦ୍ୟ ପ୍ୟାକେଟ୍‌ର ପ୍ରାୟ ୧୫ ପ୍ରତିଶତ ପ୍ୟକେଟ୍ ଏହା ନଷ୍ଟ ହୋଇଯିବା ସମୟ ସୀମା ପାର ହେବା ପୂର୍ବରୁ ଖୋଲା

ଯାଏନି। ଦୁଗ୍ଧ, ଦୁଗ୍ଧ ଗୁଣ୍ଡ, ମାଂସ ଏବଂ ଫଳ ପ୍ରାୟ ୩୦ ପ୍ରତିଶତ ପ୍ରତ୍ୟେକ ଘରେ ପ୍ରତିଦିନ ନଷ୍ଟ ହୁଏ। ଏମାନେ ଅଧେ ଖାଆନ୍ତି ଏବଂ ଅଧେ ଫିଙ୍ଗନ୍ତି। ୨୦ ବର୍ଷ ତଳେ ଆମେରିକୀୟମାନେ ଯେତିକି ନଷ୍ଟ କରି ଫିଙ୍ଗୁଥିଲେ ଏବେ ଏହା ପ୍ରାୟ ତିନି ଗୁଣ ଅଧିକ ହୋଇଛି। ଏମିତି ଏକ ରିପୋର୍ଟ ଏବେ ଆମେରିକାରେ ପ୍ରକାଶ ପାଇଛି।

ଭାରତରେ କିନ୍ତୁ ୟୁଜ ଆଣ୍ଡ ଥ୍ରୋ ଅର୍ଥନୀତି ନାହିଁ। ଏ ସମାଜ ମଧ୍ୟ ଖାଦ୍ୟ ସାମଗ୍ରୀ ଫିଙ୍ଗି ଦେବା ସପକ୍ଷରେ ନ ଥାଏ। ବଳିବା ଖାଦ୍ୟକୁ ସେ ପଶୁଙ୍କ ପାଇଁ ସାଇତି ରଖେ। ଭାରତରେ ଉପଭୋକ୍ତା ସଂସ୍କୃତି ଅନନ୍ୟ। ସାମାଜିକ ଗଠନର ଭିନ୍ନତା ସତ୍ତ୍ୱେ ବି ଖାଦ୍ୟ ନଷ୍ଟ ପ୍ରତି ଏଠି ସମର୍ଥନ ନ ଥାଏ।

ବୁଶ ସାହେବଙ୍କର ମନ୍ତବ୍ୟର ପୃଷ୍ଠଭୂମି କିନ୍ତୁ ଭିନ୍ନ ହୋଇପାରେ। ହୋଇପାରେ, ଭାରତ ଆଉ ଆମେରିକାରୁ ଯୁଦ୍ଧ ଜାହାଜ କିଣୁନି ଏବଂ ଏହା ବି ହୋଇପାରେ ଇରାନର ରାଷ୍ଟ୍ରପତିଙ୍କ ସହ ଆମ ପ୍ରଧାନମନ୍ତ୍ରୀ ମନମୋହନ ସିଂଙ୍କ ମିଳାମିଶା ଆମେରିକୀୟଙ୍କୁ ଭଲ ଲାଗୁନି। ବିଶ୍ୱ ଖାଦ୍ୟ ସଙ୍କଟ ପାଇଁ ଭାରତୀୟମାନେ ଦାୟୀ, ଏହା ତେଣୁ ଏକ ବାହାନା।

ହଁ, ଏ ଆଲୋଚନା ଏଇଠି ଶେଷ କରିବାକୁ ଇଛା। ଭଲ ଖାଇବା ପାଇଁ ଭାରତୀୟଙ୍କର ବି ଅଧିକାର ଅଛି। ଏ ଅଧିକାର କିନ୍ତୁ ଇଛାରେ ସୀମିତ ରହିବା ଉଚିତ ନୁହେଁ। ଲୋକସଂଖ୍ୟା ଏବଂ ଆୟବୃଦ୍ଧି ସହ ଖାଦ୍ୟ ଉତ୍ପାଦନର ମଧ୍ୟ ବୃଦ୍ଧି ହେବା ଦରକାର। ଇଏ ଏକ ଆହ୍ୱାନ। ଏ ଆହ୍ୱାନକୁ ଏବେ ସମ୍ମୁଖୀନ ହେବା ଉଚିତ୍।



# ତେଲ ରାଜନୀତି

ରନ୍ଧନ ଗ୍ୟାସ ଆଉ ପେଟ୍ରୋଲ ଏବଂ ଡିଜେଲର ଦରବୃଦ୍ଧି ପରେ ଏହା ବିରୁଦ୍ଧରେ ଏବେ ଦେଶବ୍ୟାପୀ ପ୍ରତିବାଦ ଆରମ୍ଭ ହୋଇଯାଉଛି। ପ୍ରତିବାଦର ଏ ଲମ୍ବା ଲାଇନ ଲାଗୁଛି ପଲ୍ଲୀରୁ ଦିଲ୍ଲୀ ପର୍ଯ୍ୟନ୍ତ। ଭାରତର ପ୍ରାୟ ସବୁ ବିରୋଧି ରାଜନୈତିକ ଦଳ ଏ ବିରୁଦ୍ଧରେ ନେତୃତ୍ୱ ନେଉଛନ୍ତି। ଏନ୍.ଡ଼ି.ଏ.ର ସମସ୍ତ ସହଯୋଗୀ ଏବଂ ବାମପନ୍ଥୀମାନେ ଏଥିରେ ସାମିଲ। ଏ ପ୍ରତିବାଦର ସ୍ୱର ଦେଖିଲେ ମନେ ହୁଏ ପେଟ୍ରୋଲିୟମ ପଦାର୍ଥର ଦରବୃଦ୍ଧି ଭାରତରେ ଯେପରି ପ୍ରଥମ ହେଉଛି। ପ୍ରକାଶଥାଉ କି, ବାଜପେୟୀ ନେତୃତ୍ୱାଧୀନ ଏନ୍.ଡ଼ି.ଏ. ସରକାରର ରାଜୁତି ଅମଳରେ ପେଟ୍ରୋଲ ଏବଂ ଡିଜେଲର ଦରବୃଦ୍ଧି ଏକୋଇଶ ଥର ହୋଇଥିଲା ଏବଂ ବର୍ତ୍ତମାନର ୟୁପିଏ ସରକାର ତେଲ ଦାମ୍ ବଢ଼େଇ ଥିଲେ ବି କିଛି ଥର ଏହାର ଦାମ୍ କମେଇଛନ୍ତି।

ଭାରତର ରାଜନୈତିକ ଦଳର ନେତାମାନେ ଏଠାରେ ଆମ୍ ଆଦମୀଙ୍କୁ ତେଲ ସମ୍ପର୍କରେ ମୂଳ ବାସ୍ତବତା କ'ଣ ସଠିକ ଭାବେ କହୁ ନାହାଁନ୍ତି କିମ୍ବା କହିବାକୁ ଚାହୁଁ ନାହାଁନ୍ତି। ଭାରତୀୟ ଗଣତନ୍ତ୍ରର ଏଇଟା ହିଁ ଏକ ବୃହତ୍ ବିରୋଧାଭାଷ। ଭୋଟ ପାଇଁ ଯେକୌଣସି ସ୍ତରକୁ ଚାଲି ଆସି ଲୋକଙ୍କୁ ଭୁଆଁ ବୁଲାଇବା ପ୍ରାୟ ପ୍ରତି ରାଜନୈତିକ ଦଳର ଅଭ୍ୟାସ ହୋଇଗଲାଣି।

ଏଇ କିଛି ଦିନ ତଳେ ବିରୋଧି ଦଳର ଜଣେ ବରିଷ୍ଠ ନେତା ସଫେଇ ଦେଲେ, ଭାରତ ସରକାର ଯଦି ପେଟ୍ରୋଲ ଉପରେ ନେଇଥିବା ସବୁ ଟିକସ ଉଠାଇ ଦିଅନ୍ତି ପେଟ୍ରୋଲର ଦାମ୍ ଲିଟର ପିଛା ୨୫ଟଙ୍କା ହୋଇଯାଆନ୍ତା। ଅବଶ୍ୟ ପ୍ରସ୍ତାବଟି ଶୁଣିବାକୁ ବେଶ ସୁନ୍ଦର ଲାଗେ। କିନ୍ତୁ ପ୍ରଶ୍ନ ଆସେ, ଦିଲ୍ଲୀର ସରକାରଟିଏ ଏହା କରିଦେଉ ନାହାଁନ୍ତି କାହିଁକି? ଦରଦାମ୍ ବୃଦ୍ଧି କରି ଲୋକଙ୍କୁ କଷ୍ଟ ଦେବା ଏବଂ ନିଜ ଦଳର ରାଜନୈତିକ ଭବିଷ୍ୟତ ନଷ୍ଟ କରିବା ଏହା କେଉଁ ରାଜନୈତିକ କୌଶଳ?

ଏଇଠି ଏବେ ବାସ୍ତବତାକୁ ଆସିବା। ଉଭୟ କେନ୍ଦ୍ର ତଥା ରାଜ୍ୟ ସରକାରମାନେ ପେଟ୍ରୋଲିୟମ ପଦାର୍ଥ ଉପରେ ଟିକସ ବସାନ୍ତି। କେନ୍ଦ୍ର ସରକାର ବସାନ୍ତି ଆମଦାନୀ ଶୁଳ୍କ ଏବଂ ରାଜ୍ୟ ସରକାରଙ୍କ ତରଫରୁ ବସାଯାଏ ବିକ୍ରୀକର। ଗତବର୍ଷର ଏକ ରିପୋର୍ଟ ଅନୁସାରେ ଏଇ ଟିକସରୁ ପ୍ରାୟ ୧ଲକ୍ଷ ଏକଷଠି ହଜାର କୋଟି ଟଙ୍କା ଆଦାୟ ହୋଇଥିଲା। ଏଥିରୁ କେନ୍ଦ୍ର ସରକାର ରଖିଲେ ପ୍ରାୟ ୫୪ ହଜାର କୋଟି ଟଙ୍କା ଏବଂ

ରାଜ୍ୟ ସରକାରଙ୍କ ଭାଗରେ ପଡ଼ିଥିଲା ପ୍ରାୟ ଏକଲକ୍ଷ ସାତ ହଜାର କୋଟି। କେନ୍ଦ୍ର ସରକାର ଆଦାୟ କରୁଥିବା ଅର୍ଥକୁ ସାମାଜିକ କ୍ଷେତ୍ରରେ ଲଗାନ୍ତି। ଗ୍ରାମୀଣ ନିଯୁକ୍ତି ଯୋଜନା ସମେତ ପ୍ରାୟ ସମସ୍ତ ଜନହିତକର କାର୍ଯ୍ୟକ୍ରମ ଏଇ ଟଙ୍କାରେ କାର୍ଯ୍ୟକାରୀ ହୁଏ ଏବଂ ରାଜ୍ୟ ସରକାରମାନେ ତେଲ ଉପରେ ପାଇଥିବା ବିକ୍ରୀକର ଅର୍ଥକୁ କର୍ମଚାରୀଙ୍କ ଦରମା ଠାରୁ ଆରମ୍ଭ କରି ଶିକ୍ଷା ପର୍ଯ୍ୟନ୍ତ ସବୁଥିରେ ବିନିଯୋଗ କରନ୍ତି। ଟିକସ ଛାଡ଼ କରିଦେଲେ ଏ ସବୁ ସାମାଜିକ ଯୋଜନା ଚାଲିବ କିପରି; ଏହା ମଧ୍ୟ ଏକ ବଡ଼ ପ୍ରଶ୍ନ। କେନ୍ଦ୍ର ସରକାର ତେଲ ଉପରେ ଥିବା କର ଛାଡ଼ କରିଦେଲେ ରାଜ୍ୟ ସରକାରମାନେ ବିକ୍ରୀକର ଛାଡ଼ି ଦେବାକୁ ଦାବି ମଧ୍ୟ ଆସିପାରେ। ଭାରତରେ ଅନେକ ରାଜ୍ୟ ଅଛନ୍ତି ଯେଉଁମାନେ ପେଟ୍ରୋଲିୟମ ପଦାର୍ଥ ଉପରେ ୩୦ ପ୍ରତିଶତରୁ ଅଧିକ ଟିକସ ନିଅନ୍ତି। ଓଡ଼ିଶାରେ ଏହି କର ୧୮ ପ୍ରତିଶତ....। ଅବଶ୍ୟ କେନ୍ଦ୍ର ସରକାର ଯେ ମୋଟେ ଟିକସ ଛାଡ଼ କରିନାହାଁନ୍ତି ଏଇ ଅଭିଯୋଗ ଠିକ ନୁହେଁ। କେନ୍ଦ୍ର ସରକାର କିଛି ଟିକସ ଛାଡ଼ି ସାରିଲେଣି ଏବଂ ରାଜ୍ୟ ସରକାରମାନେ ବି ବିକ୍ରୀକର ହ୍ରାସ କରି ପେଟ୍ରୋଲିୟମ ଦରବୃଦ୍ଧି ଜନୀତ ବୋଝକୁ ଟିକିଏ କମେଇ ଦେଲେଣି। ଏ ଛାଡ଼ କିନ୍ତୁ ଏକ ବାଧ୍ୟତାମୂଳକ ସୀମା ଭିତରେ ଏବେ ଅଛି, ଯେଉଁ ସୀମାରେ ରହି ଦେଶ ପରିଚାଳନା କରିହେବ।

ଭାରତରେ ବ୍ୟବହୃତ ହେଉଥିବା ସମସ୍ତ ତେଲର ପ୍ରାୟ ୭୮ ଭାଗ ବିଦେଶରୁ ଆମଦାନୀ ହୁଏ ଏବଂ ଅବଶିଷ୍ଟ ମାତ୍ର ୨୨ ପ୍ରତିଶତ ଦେଶ ଭିତରୁ ଉତ୍ପାଦିତ ହୁଏ। ତେଲ ଉପରେ ହେଉଥିବା ନିର୍ଭରଶୀଳତାର ମାତ୍ରା ପ୍ରତିବର୍ଷ ବଢୁଛି। କାରଣ ହେଉଛି, ଆର୍ଥିକ ଅଭିବୃଦ୍ଧି ହେତୁ ଭାରତୀୟ ମାନଙ୍କର ଜୀବନ ଶୈଳୀରେ ପରିବର୍ତ୍ତନ ଆସିଲାଣି। ରାଜ୍ୟର ରାଜସ୍ୱ, ତେଲ କମ୍ପାନୀ ମାନଙ୍କରେ ଲାଭ ଏବଂ ଅଶୋଧିତ ତେଲର ଆନ୍ତର୍ଜାତିକ ବଜାରର ଦାମ୍‌କୁ ବିଚାରକୁ ନେଇ ପେଟ୍ରୋଲଜାତ ପଦାର୍ଥରେ ପ୍ରଶାସନିକ ଦର ଏଠି ଠିକ୍ ହୁଏ ଏବଂ ଲୋକଙ୍କ ଚାହିଦା ଅନୁଯାୟୀ ଏସବୁ ପଦାର୍ଥକୁ ବଜାରକୁ ଯୋଗାଇ ଦିଆଯାଏ। ଯେଉଁ ଦରରେ ବିଦେଶରୁ ତେଲ କିଣାଯିବ ସେଇ ଦରରେ ଏଠାରେ ଏହା ବିକା ହେବ ଏପରି ଏକ ନିଷ୍ପତ୍ତି ଏନ୍.ଡ଼ି.ଏ. ସରକାର ବେଳେ ହୋଇସାରିଛି। ସଂପୂର୍ଣ୍ଣଭାବେ କିନ୍ତୁ ନିଷ୍ପତ୍ତି ଏଠି କାର୍ଯ୍ୟକାରୀ ହୋଇନାହିଁ। ପେଟ୍ରୋଲିୟମ ପଦାର୍ଥ ଉପରେ ଏବେ ମଧ୍ୟ କେନ୍ଦ୍ର ସରକାରଙ୍କର କିଛି ପ୍ରଶାସନିକ ନିୟନ୍ତ୍ରଣ ରହିଛି। କିରୋସିନି ଏବଂ ଗ୍ୟାସରେ ସେଥିପାଇଁ କିଛି ସବସିଡି ମିଳୁଛି।

ଆନ୍ତର୍ଜାତିକ ବଜାରରେ ଅଶୋଧିତ ତେଲର ଦାମ୍ ପ୍ରାୟ ପ୍ରତିଦିନ ବଢୁଛି। ଗତ ଆଠବର୍ଷ ତଳେ ବ୍ୟାରେଲ ପିଛା ଏଇ ତେଲର ଦାମ୍ ଥିଲା ମାତ୍ର ୧୦ ଡଲାର। ବର୍ତ୍ତମାନ ଏହା ୧୩୯ ଡଲାରରେ ପହଞ୍ଚି ସାରିଲାଣି। ଆହୁରି ଏହା ବଢ଼ିବାର ଆଶଙ୍କା ମଧ୍ୟ ଆସୁଛି।

ବ୍ୟାରେଲ ହେଉଛି କାଠରେ ତିଆରି ସିଲିଣ୍ଡର ଆକୃତିର ଏକ ଫମ୍ପା ପାତ୍ର।

ଏଥିରେ ୩୬ ଗ୍ୟାଲନ୍ ତେଲ ଧରେ ଅର୍ଥାତ ୧୬୨ ଲିଟର । ପୂର୍ବେ ଏଇ ବ୍ୟାରେଲରେ ମଦ ଆଉ ବିୟର ମପା ଯାଉଥିଲା । ସୁତରାଂ ଅଶୋଧିତ ତେଲର ଏଇ ବ୍ୟାରେଲର ଦାମ୍ ୧୯୯୯ ଏବଂ ୨୦୦୦ ମସିହାରେ ଆନ୍ତର୍ଜାତିକ ବଜାରରେ ଯାହାଥିଲା ତାହା ବର୍ତ୍ତମାନ ପ୍ରାୟ ୧୪ଗୁଣ ବଢ଼ିସାରିଲାଣି ।

ଅଶୋଧିତ ତେଲର ଦର ଭାରି ସ୍ପର୍ଶକାତର । ଏହା ଏତେ ସ୍ପର୍ଶକାତର ଯେ ପେଟ୍ରୋଲିୟମ ଉତ୍ପାଦନ କରୁଥିବା ଦେଶ ମାନଙ୍କରେ କିଛି ସାମାନ୍ୟତମ ଅଘଟଣ ଘଟିଲେ ତେଲ ଦର ଉପରେ ଏହାର ପ୍ରଭାବ ପଡ଼େ । ତେଲର ଦର ବଢ଼ିଯାଏ କିମ୍ବା କମିଯାଏ । ଏଇ ଯେମିତି ସାଉଦ ଆରବର ସମ୍ରାଟଙ୍କର ମୃତ୍ୟୁ ହେବା ଦିନ ବ୍ୟାରେଲ ପିଛା ତେଲର ଦାମ୍ ଦୁଇ ଡଲାର ବଢ଼ି ଯାଇଥିଲା ।

ତେଲ ଉତ୍ପାଦନ କରିବାରେ କିଛି ଦେଶର ମନୋପଲି ଅଛି । ଏମାନେ ବି ଏକ ସଙ୍ଗଠନ କରିଦେଇଛନ୍ତି । ଏଇ ସଙ୍ଗଠନର ନାଁ ହେଉଛି 'ଅର୍ଗାନାଇଜେସନ୍ ଅଫ ପେଟ୍ରୋଲିୟମ ଏକ୍ସପୋର୍ଟିଙ୍ଗ କଣ୍ଟ୍ରିଜ୍' । ସଂକ୍ଷିପ୍ତ ନାଁ ହେଉଛି 'ଓପେକ' । କେଉଁ ଦେଶ କେତେ ତେଲ ଉତ୍ତୋଳନ କରିବ ଏଇ ଓପେକ ସଂଗଠନ ଏକ କୋଟା ଠିକ୍ କରିଦିଏ । ବେଳେବେଳେ କିନ୍ତୁ ଠକାମି କରି କିଛି ଓପେକ ଦେଶ କୋଟାରୁ କମ୍ ବା ଅଧିକ ତେଲ ଉତ୍ପାଦନ କରି ଦିଅନ୍ତି । ସେତେବେଳେ ଆନ୍ତର୍ଜାତିକ ବଜାରରେ ତେଲ ଦାମ ବଢ଼େ କିମ୍ବା କମେ ।

ସବୁଠାରୁ ବଡ଼ କଥା ହେଲା, ପୃଥିବୀର ତେଲ ପଡ଼ିଆରେ ଦଶବର୍ଷ ତଳେ ଯେତିକି ତେଲ କୁଅ ଥିଲା ଏବେ ବି ସେତିକି ଅଛି । ଏହାର ଆଧୁନିକକରଣ ବର୍ତ୍ତମାନର ଚାହିଦା ଅନୁଯାୟୀ ଯେଉଁ ହାରରେ ହେବା କଥା ତାହା ହେଉନି କିମ୍ବା ଆହୁରି ଅଧିକ ତେଲ କୂପ ଖୋଳା ଯାଉନି । ଅଧିକ ତେଲ କୁଅ ଖୋଳିବା ଏବଂ ଏହାର ଆଧୁନିକ କରଣ ପାଇଁ ଅଧିକ ଅର୍ଥ ଦରକାର ଏବଂ ଏଇ ଅର୍ଥର ଅଭାବ ଅଛି ବୋଲି ଓପେକ ଦେଶମାନେ ସଫେଇ ଦେଉଛନ୍ତି ।

ପୃଥିବୀର ଏ ତେଲ ଭଣ୍ଡାର ଅକ୍ଷୟ ନୁହେଁ । ଏହା ସତ ଯେ, କୌଣସି ସମୟରେ ପୃଥିବୀ ତଳର ତେଲ ଶେଷ ହୋଇଯାଇ ପାରେ । ଜଣେ ବିଶେଷଜ୍ଞଙ୍କର ଏ ସମ୍ପର୍କରେ ରିପୋର୍ଟ ହେଲା ଏଇ ହାରରେ ଯଦି ତେଲ ଖର୍ଚ୍ଚ ହୁଏ ପୃଥିବୀରେ ଗଚ୍ଛିତ ତେଲ ଶେଷ ହେବାକୁ ଆଉ ମାତ୍ର ୬୦ ବର୍ଷ ଲାଗିବ । ଭାରତରେ ଗଚ୍ଛିତ ଥିବା ସମସ୍ତ ତେଲ ଆଗାମୀ ୨୦ ବର୍ଷ ଭିତରେ ଶେଷ ହୋଇଯିବ । ଗୋଟିଏ ବିନ୍ଦୁ ଖଣିଜ ତେଲକୁ କୌଣସି ବିଜ୍ଞାନାଗାରରେ ତିଆରି କରିବା ସମ୍ଭବ ନୁହେଁ ଏବଂ ଏହା ବି ସତ, ଭାରତ ଏବଂ ଚୀନ ସମେତ ପୃଥିବୀର ସମସ୍ତ ଉନ୍ନତ ରାଷ୍ଟ୍ରରେ ଗାଡ଼ି ମଟର ଉତ୍ପାଦନ ବଢ଼ିଛି । ଚାହିଦା ଏବଂ ଯୋଗାଣ ଭିତରେ ବର୍ତ୍ତମାନର ଖଣିଜ ତେଲ ସମତା ରଖି ପାରୁନି । ତେଲ ଦର ତେଣୁ ବଢୁଛି । ଶସ୍ତାରେ ଆଉ ପେଟ୍ରୋଲ ମିଳିବନି । ଏମିତି ଏକ ସମ୍ଭାବନା

କଟୁ ହେଲେ ବି, ଅସଙ୍ଗତ ନୁହେଁ।

ଏ ଆଲୋଚନା ଏଇଠି ତେଣୁ ଶେଷ କରିବାକୁ ଇଛା। ଏ ସମାପ୍ତି ଏକ ସକରାତ୍ମକ ଭାବେ ଏ ଲେଖକ କରିବାକୁ ଚାହେଁ। ତେଲ ଆତଙ୍କରୁ ରକ୍ଷା ପାଇଁ କିଛି ଉପାୟ ବି ଅଛି। ପ୍ରଥମ ଉପାୟ ହେଲା, ତେଲର ବିକଳ୍ପ ସନ୍ଧାନ ହେଉ। ପ୍ରାକୃତିକ ଗ୍ୟାସ, ଜୈବିକ ଜାଳେଣି, ବିଦ୍ୟୁତ ଶକ୍ତି ଏବଂ ପରମାଣୁ ବ୍ୟାଟେରୀରେ କିପରି ଗାଡ଼ି ମଟର ଚାଲିପାରିବ ସେଥିପାଇଁ ଇଞ୍ଜିନ୍ ତିଆରି ହେଉ ଏବଂ ଦ୍ୱିତୀୟ ଉପାୟଟି ହେଲା ତେଲ ଖର୍ଚ୍ଚ କରିବାର ମାନସିକତାରେ ପରିବର୍ତ୍ତନ ଆସୁ। ଏଥିରେ ମିତବ୍ୟୟିତାର ଆବଶ୍ୟକତା ଏବେ ଆସିଛି।

ଭାରତର ଅଭିବୃଦ୍ଧି, ଏ ସଭ୍ୟତାର ଭବିଷ୍ୟତ ଏବଂ ଏ ଦେଶର ଗଣତାନ୍ତ୍ରିକ ରାଜନୀତି ତେଲ ପାଖରେ ସମ୍ପ୍ରତି ବନ୍ଧା ପଡ଼ିଯାଇଛି।

ତେଲ ନେଇ ତେଣୁ ରାଜନୀତି ନକଲେ ଭଲ ହୁଅନ୍ତା।



# ଗୁହାରି

ଆଜି ଶ୍ରୀଗୁଣ୍ଡିଚା। ଘଣ୍ଟ ଏବଂ ହରିବୋଲ ଶବ୍ଦରେ ମହାପ୍ରଭୁ ଜଗନ୍ନାଥଙ୍କ ରଥଟଣା ଆରମ୍ଭ ହେଲା। ଚକାଆଖିରେ ମହପ୍ରଭୁ ଏ ଦୁନିଆକୁ ଦେଖୁଥିଲେ। ଆରତଙ୍କ ଗୁହାରି ଶୁଣୁଥିଲେ। ମହାପ୍ରଭୁଙ୍କ ଏ ଖୋଲା ଦରବାର। ଏ ପୁଣି ରାଜ ରାସ୍ତାରେ।

ମରିଚିକୋଟ ଛକ ପାଖରେ ଜଗନ୍ନାଥଙ୍କ ରଥ ଅଟକିଲା। ରଥ ଆଗକୁ ଚାଲି ଆସିଲା 'ଖେମି। ଖେମି ବାଲିଆ'। ଘର ତା'ର ଉତ୍ତରପ୍ରଦେଶ। ଖେମି କହିଲା- "ସାଆନ୍ତେ, ଓଳକି ନେବେ। ମୋ ଗୁହାରି ଟିକିଏ ଶୁଣିବେ। ମୁଁ ଆଉ ମୋ ଗାଁରେ ନାହିଁ ସାଆନ୍ତେ। ଗାଁ ମୁଖିଆର ପୁଅଟିଏ ଅଛି। ମଦୁଆଟା। ଦୁଇ ତିନିଥର ରାତିରେ ମୋ ଘରକୁ ପଶି ଆସିବାକୁ ଉଦ୍ୟମ କଲା। ଥରେ ମୁଁ ତାକୁ ଚାପୁଡେ ଦେଇଥିଲି।

ଗାଁ ମୁଖିଆ ଗାଁର ଗୁଣିଆ ଡାକ୍ତର 'ଓଝା' କୁ ଧରି ପ୍ରଚାର କଲା - ମୁଁ କୁଆଡେ ଡାହାଣୀ। ଗାଁରେ ରହିଲେ ଖରାପ। ଗାଁ କୂଅରୁ ପାଣି ଶୁଖି ଯାଉଛି ମୋରି ଯୋଗୁଁ। ଠିକ୍ ସମୟରେ ବର୍ଷା ହେଉନି ମୋରି ଯୋଗୁଁ ଏବଂ ଅଜଣା ରୋଗରେ ଗାଁ ପିଲା ମୋରି ଯୋଗୁଁ ହିଁ ମରୁଛନ୍ତି। ମୁଁ କୁଆଡେ ରାତି ଅଧରେ ନଙ୍ଗଳା ହୋଇ ପଡ଼ିଆକୁ ଯାଏ। ବିଷ୍ଠା ଖାଏ।

ଏ ପ୍ରଚାର ଏତେ ସାଂଘାତିକ ହେଲା ଯେ, ଦିନେ ମୋତେ ସେମାନେ ଧରିନେଇ ନଣ୍ଡା କରିଦେଲେ। ମୁହଁରେ କଳା ବୋଳିଲେ। ଲଙ୍ଗଳା କରି ଗାଁ ଦାଣ୍ଡରେ ଚଲାଇ ଚଲାଇ ନେଲେ।

ଗାଁ ମୁଖିଆ ମୋତେ ମାରିଦେବାକୁ ରାତି ଅଧରେ ଦିନେ ମୋ ପାଇଁ ନିଆଁ କୁଣ୍ଡଟିଏ ତିଆରି କଲା। ଗାଁ ଲୋକେ ତାକୁ ସାହାଯ୍ୟ କଲେ। ସେଥିରେ ମୋ ଦାଦାପୁଅ ଭାଇମାନେ ବି ଥିଲେ। ମୁଁ ସେସବୁ ଜାଣିପାରି ଗାଁ ଛାଡି ପଳାଇ ଆସିଲି...।

"ହଁ ସାଆନ୍ତେ! ଏ ଖାଲି ଏ 'ଖେମି'ର କଥା ନୁହେଁ। ଭାରତ ବର୍ଷର ହଜାର ହଜାର ଖେମିମାନେ ଆଦିବାସୀ ଏବଂ ହରିଜନ ପଡ଼ାରେ ଡାହାଣୀର ନାଁ ନେଇ ଅଛନ୍ତି। ସବୁ ଦୁର୍ବଳ, ଦରିଦ୍ର ତଥା ଦଳିତ ସ୍ତ୍ରୀ ଲୋକ ଭିତରେ ଏ ପୁରୁଷ ପ୍ରଧାନ ଉଚ୍ଚ ସମାଜ ଡାହାଣୀର ଉପାଦାନ ଦେଖିଛି। କିଛି ସ୍ୱାର୍ଥାନ୍ୱେଷୀ ତାକୁ ଯାହା ଶୋଷଣ କରୁଛନ୍ତି। ସାଆନ୍ତେ! ଏ ଖେମିର ଗୁହାରି"।

ରଥ ଘଣ୍ଟ ବାଜି ଉଠିଲା। ରଥ ପୁଣି ଚାଲିଲା। ହରିବୋଲ ହୁଳହୁଳି ଶବ୍ଦରେ ରଥ ଗଡି ଚାଲିଥିଲା ଆଗକୁ। ଜଗନ୍ନାଥେ ଅଟକିଲେ ମାଉସୀ ମା' ମନ୍ଦିର ପାଖରେ। ଘଣ୍ଟୁଆ ବିଶ୍ରାମ ନେଲେ। ଏଥର ରଥ ସମ୍ମୁଖରେ ଚାଲି ଆସିଲା ସ୍ତ୍ରୀ ଲୋକଟିଏ। ମହାପ୍ରଭୁଙ୍କୁ ଦୂରରୁ ପ୍ରଣାମ ଜଣାଇଲା। କହିଲା - "ସାଆନ୍ତେ; ମୁଁ ସୁନିତା ରାଜପୁତ। ମଧ୍ୟ ପ୍ରଦେଶରେ ମୋ ଘର। ବୟସ ମୋର ପାଖାପାଖି ତିରିଶି। ଏଇ ବୟସରେ ମୁଁ ଷାଠିଏ ବର୍ଷର ବୁଢ଼ିଟିଏ ପରି ଦିଶୁଛି। ଜାଣନ୍ତି ସାଆନ୍ତେ କାହିଁକି ? ବାହାଘରର ୯ ବର୍ଷ ଭିତରେ ମୁଁ ଛଅ ଥର ଗର୍ଭପାତ କଲିଣି। ପୁଅଟିଏ ଜନ୍ମ ଦେବାକୁ ଏ ସବୁ ମୁଁ କରୁଛି ଏବଂ ଏପରି କରିବାକୁ ମୋ ସ୍ୱାମୀ ଏବଂ ତାଙ୍କର ପରିବାରର ଲୋକମାନେ ମୋତେ ବାଧ୍ୟ କରୁଛନ୍ତି।

"ମୋର ଦୁଇଟି ଝିଅ। ବଡ଼ ଝିଅର ବୟସ ସାତ ବର୍ଷ ଏବଂ ସାନ ଝିଅର ବୟସ ପାଞ୍ଚ ବର୍ଷ। ବଡ଼ ଝିଅ ଜନ୍ମ ହେବା ପରେ ମୁଁ ତିନି ଥର ଗର୍ଭପାତ କରିଛି। ଯେତେବେଳେ ଗର୍ଭଟିଏ କନ୍ୟା ଭ୍ରୂଣ ବୋଲି ପରୀକ୍ଷାରେ ଜଣାପଡ଼େ ତାକୁ ମୁଁ ନଷ୍ଟ କରାଏ। ଖୁସିର କଥା ଯେ ଦ୍ୱିତୀୟ ଝିଅଟି ବଞ୍ଚିଗଲା। କାରଣ ହେଲା, ଏହା ଯେ ଏକ ଝିଅ, ଏକଥା ଜଣାଯିବା ପରେ ଏହାକୁ ନଷ୍ଟ କରିବାକୁ ଆଉ ସମୟ ନଥିଲା। ଗର୍ଭପାତ ସମୟ ଗଡ଼ି ଯାଇଥିଲା। ଦ୍ୱିତୀୟ ଝିଅଟି ଜନ୍ମ ହେବା ପରେ ମୁଁ ଆଉ ତିନିଥର ଗର୍ଭପାତ କରିଛି।"

"ହଁ ମହାପ୍ରଭୁ! ଝିଅର ମା' ହେବାର ଦୁଃଖ ଟିକିଏ ଶୁଣନ୍ତୁ। ପ୍ରତି ଗର୍ଭପାତ ପୂର୍ବରୁ ମୋ ସ୍ୱାମୀ ମୋତେ ନିର୍ଯ୍ୟାତନା ଦିଏ, ବାଡାଏ। ଖାଇବାକୁ ନଦେଇ ଉପାସରେ ରଖେ। ବର୍ତ୍ତମାନ ମୁଁ ମଧ୍ୟ ସାତ ମାସର ଗର୍ଭବତୀ। ଏଥର ମଧ୍ୟ ଝିଅଟିଏ ଜନ୍ମ ହେବ ବୋଲି ଜଣାପଡ଼ିବା ପରେ ଗର୍ଭପାତ କରିବାକୁ ମୋ ସ୍ୱାମୀ ମୋତେ ବାଧ୍ୟ କରୁଛି। ତଳି ପେଟକୁ ଗୋଇଠା ମାରୁଛି। ମୋ ସ୍ୱାମୀ ରାଜେଶ ରାସ୍ତାକଡ଼ରେ ବସି ଚେରମୂଳି ଓ ଆୟୁର୍ବେଦୀୟ ଔଷଧ ବିକେ। ସେ ଏବେ ଖୋଲା ଖୋଲି କହୁଛି- "ପୁଅଟିଏ ପାଇବା ପର୍ଯ୍ୟନ୍ତ ସେ ଯେତେ ଇଚ୍ଛା ସେତେ ଗର୍ଭପାତ କରିବାକୁ ପଛାଇବନି।"

"ମୁଁ ଏ ଗର୍ଭପାତ କଥା ପୋଲିସକୁ କହିଥିଲି। ଏଥିରେ ମୋ ସ୍ୱାମୀଙ୍କର କିଛି ଅପରାଧ ନାହିଁ କହି ପୋଲିସ ନୀରବ ରହିଥିଲେ। ଡାକ୍ତରମାନେ ମଧ୍ୟ ଗର୍ଭପାତକୁ ଏକ ଆଇନସିଦ୍ଧ ଘଟଣା ବୋଲି କହନ୍ତି। ହଁ ସାଆନ୍ତେ! ଜଣେ ଭାରତୀୟ ଝିଅ 'ସୁନିତା ଉଇଲିୟମ୍' ଅନ୍ତରୀକ୍ଷରେ ବିଚରଣ କରୁଥିବା ବେଳେ ମୋ ପରି ସୁନିତା ରାଜପୁତ୍‌ମାନଙ୍କୁ ପିଲା ଗଢ଼ିବା ଆଉ ଭାଙ୍ଗିବାର ଏକ ମେସିନ୍ କରି ଭାରତୀୟ ସମାଜ ଆନନ୍ଦ ପାଉଛି...।"

ଚକାଡ଼ୋଳା ସୁନିତାର କଥା ଶୁଣିଲେ। ରଥ ପୁଣି ଚାଲିଲା। ସାଲବେଗଙ୍କୁ ଦର୍ଶନ ଦେବାକୁ ରଥ ଅଟକିଲା ବଳଗଣ୍ଡିରେ। ରଥ ଆଗରେ ଏବେ ଛିଡ଼ା ହେଲା 'ରୂପକନ୍‌ୱାର'। ଏଇ କିଛି ବର୍ଷ ତଳେ ରାଜସ୍ଥାନରେ ତାକୁ ସତୀ କରାଯାଇଥିଲା।

'ରୂପକନଓ୍ୱାର' କହିଲା - "ସାଆନ୍ତେ! 'ରୂପ'ର ନମସ୍କାର ନେବେ। ଷାଠିଏ ବର୍ଷିୟ ମୋ ବୃଦ୍ଧ ସ୍ୱାମୀଙ୍କର ଦେହାନ୍ତ ପାଇଁ ମୋ ପରିବାର ଲୋକେ ମୋତେ ଜୋର କରି ସେଇ ଯୁଇ ନିଆଁରେ ପୋଡିଦେଲେ। କହିଲେ- ମୁଁ କୁଆଡେ ସତୀ ହୋଇଗଲି। ଦେବୀ ସତୀ। ମୋ ନାଁରେ ମନ୍ଦିର ତୋଳା ହେବ।"

ସେ ଦିନର ସେ ମର୍ମନ୍ତୁଦ ଘଟଣା କହୁଛି ସାଆନ୍ତେ। ରୋଗରେ ପଡି ମୋ ସ୍ୱାମୀ ମରିଗଲା ପରେ ମୋତେ କିଛି ଲୋକ ଦେବୀ ବେଶ କରିଦେଲେ। ମୁଣ୍ଡରେ ଚନ୍ଦନ ଟିପା ଦେଲେ। ନୂଆ ଶାଢ଼ି ପିନ୍ଧାଇଲେ। କ'ଣ ପିଇବାକୁ ଦେଲେ। ପିଇବା ପରେ ମୋତେ ନିଦ ଲାଗୁଥିଲା। ମୋ ପ୍ରତିବାଦ ସତ୍ତ୍ୱେ ସେ ମୋତେ ମୋ ସ୍ୱାମୀଙ୍କ ଯୁଇରେ ବସାଇଲେ। ବାଜା ବଜାଇ ନାଚିବାକୁ ଲାଗିଲେ। ସେ ଶବ୍ଦ ଭିତରେ ମୋ ମୃତ୍ୟୁ କାଳୀନ ଯନ୍ତ୍ରଣା କାହାକୁ ଶୁଭୁ ନଥିଲା।

ଭାରତରେ ଏବେ ମଧ୍ୟ ସତୀ ପ୍ରଥା ଅଛି ସାଆନ୍ତେ! 'ସତୀ' ନାଁରେ ନିରୀହ ମହିଳା ମାନଙ୍କୁ ହତ୍ୟା କରାଯାଉଛି। ଏ ଗୁହାରି ଶୁଣାଇଲି। କିଛି କରିବେ ସାଆନ୍ତେ।"

ସନ୍ଧ୍ୟାରେ ରଥ ଲାଗିଲା ଗୁଣ୍ଡିଚା ଘରେ। ଏ ଲେଖକ ଯୋଡ଼ ହସ୍ତରେ ତିନି ଠାକୁରଙ୍କୁ ଜଣାଇଲା - "ମହାପ୍ରଭୁ; ଆପଣତ ଖେମି, ସୁନିତା, ରୂପକନ୍ୱାରର ଦୁଃଖ ଶୁଣିଲେ। ଏ ଖାଲି ଏକକ ଉଦାହରଣ ନୁହଁନ୍ତି ସାଆନ୍ତେ! ଏ ପୁରୁଷ ପ୍ରଧାନ ଭାରତୀୟ ସମାଜ ଏପରି ହଜାର ହଜାର ଖେମି, ସୁନିତା, ରୁପ୍ ମାନଙ୍କୁ ଯନ୍ତ୍ରଣା ଦିଏ। ଆଜି ମଧ୍ୟ କେଉଁ ଏକ ନିପଟ ମଫସଲ ଗାଁରେ ପାଞ୍ଚ ଛଅ ବର୍ଷର ଛୋଟ ଝିଅଟିକୁ ତାର ଆତ୍ମୀୟସ୍ୱଜନ ମାନେ ବୋହୁ ବେଶରେ ସଜାଇ ବାହାବେଦୀକୁ ନେଉଥିବେ। ବାଲ୍ୟ ବିବାହ ଅନେକଠି ଏବେ ବି ଅଛି। ଏ ସମାଜର ଏ ମାନସିକତା ଧ୍ୱଂସ ହେବା ତେଣୁ ଦରକାର। ଆପଣ ଏ ସବୁ ଧ୍ୱଂସ କରିପାରିବେ ମହାପ୍ରଭୁ। ଏତିକି ଗୁହାରି...।

*(ଏ ଲେଖାରେ ପ୍ରକାଶିତ ସମସ୍ତ ଘଟଣା ଓ ଚରିତ୍ର ବିଭିନ୍ନ ଖବର କାଗଜରେ ପ୍ରକାଶ ପାଇଥିଲା)*



# ଅଗଷ୍ଟ ପନ୍ଦର

ଆଜି ଅଗଷ୍ଟ ପନ୍ଦର। ଭାରତର ସ୍ୱାଧୀନତା ଦିବସ। ପାଖ ପଡ଼ିଆରେ ପୋଲିସ ବ୍ୟାଣ୍ଡ ପାର୍ଟିର ବାଜା ଶୁଭୁଛି। ହାତରେ ଜାତୀୟ ପତାକା ଧରି ଧାଡିବାନ୍ଧି ଛୋଟ ଛୋଟ ପିଲାମାନେ ପଡିଆ ଆଡ଼କୁ ଯାଉଛନ୍ତି। ଆଉ କିଛି ସମୟ ପରେ ମୁଖ୍ୟ ଅତିଥି ପତାକା ଉତ୍ତୋଳନ କରି ଭାଷଣ ଦେବେ। କହିବେ- ଏ ସ୍ୱାଧୀନତା ପାଇଁ ଆମର ପୂର୍ବ ପୁରୁଷମାନେ ବ୍ରିଟିଶ ବିରୁଦ୍ଧରେ ସଂଘର୍ଷ କରିଥିଲେ। ଅନେକ ପ୍ରାଣବଳୀ ବି ଦେଇଥିଲେ।

ଛକପାଖ ତେଜରାତି ଦୋକାନରେ ଦେଖା ହେଲା ଭୋଳା ସହ। ଭୋଳାର ବୟସ ଏଗାର କି ବା'ର ହେବ। କେଉଁ ଏକ ବାବୁଙ୍କ ଘରେ ସେ ଘର କାମ କରେ। ପଚାରିଲି - "ତୁ ପ୍ୟାରେଡ଼ ଦେଖି ଯିବୁନି?" ସେ ଉତ୍ତର ଦେଲା - "ସମୟ କାହିଁ ବାବୁ। ଘରେ ବହୁତ କାମ। ଆଜି ସ୍ୱାଧୀନତା ଦିବସ। ଛୁଟିଦିନ। ବାବୁ ଆଉ ମା' ଘରେ ଅଛନ୍ତି। ସେମାନେ ଆଜି ଅଫିସ ଯିବେନାହିଁ। ଘରେ ଆଜି ଭୋଜି ହେବ। ବାବୁ ମା'ଙ୍କ ସାଙ୍ଗମାନେ ଆସିବେ। ମୁଁ ବଡିଭୋଅରୁ ଉଠିଲାଣି।"

ଭୋଳା କଥା ଶୁଣିବାକୁ ଆଗ୍ରହ ହେଲା। ପଚାରିଲି - "ସକାଳୁ ଉଠି କ'ଣ କଲାଣୁ?" କହିଲା - "ଅନେକ କାମ କରିସାରିଲାଣି। ଆହୁରି ଅନେକ ବି ବାକି ଅଛି। ଲୁଗା ଧୋଇଛି, ଘର ଝାଡିଛି, ବାସନ ମାଜିଛି, ସଂଜ ଭୋଜି ପାଇଁ ପ୍ରସ୍ତୁତ କରୁଛି। ଆମ ବାବୁ ଏବେ ଉଠି ଟିଭିରେ ଦିଲ୍ଲୀ ସ୍ୱାଧୀନତା ଦିବସ ଉତ୍ସବ ଦେଖୁଛନ୍ତି। ଦିପହର ହେଲେ ସେ ସିନେମା ଦେଖିବେ। ରାତିରେ ଭୋଜି ହେବ। ମୁଁ ସ୍ୱାଧୀନତା ଫୋଦିନତା କ'ଣ ବୁଝେନି। ମୋ ପାଇଁ ଏହାର ମାନେ କ'ଣ"?

ଦୋକାନରୁ ଜିନିଷ କିଣି ଭୋଳା ଚାଲିଯାଉଥିଲା। ପୁଣି ପଚାରିଲି- "ତୋର ପାଠ ପଢ଼ିବାକୁ ଇଛା ହେଉନି?" ମୋତେ ଟିକିଏ ଚାହିଁ ସେ ଉତ୍ତର ଦେଲା - "ଇଛା ହୁଏ ବାବୁ! ଇଛା ହେବନି କେମିତି? ସ୍କୁଲ ଯିବାକୁ ଇଛା ହୁଏ। ବହି ପଢ଼ିବାକୁ ଇଛା ହୁଏ। ସାଙ୍ଗମାନଙ୍କ ସହ ମିଶି ଖେଳ ପଡିଆରେ ଖେଳିବାକୁ ବି ଇଛା ହୁଏ। ହେଲେ ଭାଗ୍ୟ କାହିଁ ବାବୁ। ମାଲିକଙ୍କ ଘରେ କାମ କରି ଯେଉଁ ପଇସା ପାଏ, ପ୍ରତି ମାସରେ ମୋ ବାପା ଆସି ତାକୁ ନେଇଯାଏ। ଏଥରେ ଆମ ଘର ଚଳେ।"

"ଯାଉଛି ବାବୁ! ମା' ତେଣେ ଅପେକ୍ଷା କରିଥିବେ। ଡ଼େରିହେଲେ ଗାଳିଦେବେ।

ଆଜି ସକାଳେ ଉଠିବାରେ ଟିକିଏ ଡ଼େରି ହେବାରୁ ସେ ମୋତେ ଗାଳି ଦେଲେ। ଚାପୁଡ଼ାଟିଏ ବି ମାରିଲେ।"

ତରତର ହୋଇ ଘରକୁ ଫେରି ଯାଉଥିବା ଭୋଳାକୁ ପଛରୁ ଲକ୍ଷ୍ୟ କଲି। ଭାବିଲି - "ଏ ଖାଲି ଗୋଟିଏ ଭୋଳାର ଅନ୍ତର୍ଦାହ ନୁହେଁ। ଯେଉଁ ବୟସରେ ଏ ଭୋଳାମାନେ ସ୍କୁଲ ଯିବା କଥା; ଗୁଡ଼ି ଉଡାଇବା କଥା; ସେ ବୟସରେ ସେମାନେ ମାଲିକମାନଙ୍କ ଘରେ କାମ କରୁଛନ୍ତି; ବିଡି କାରଖାନା ଆଉ ଇଟାଭାଟିରେ ଶ୍ରମିକ ହେଉଛନ୍ତି। ଆଜି ବି ସେମାନେ ସେଠି ସେ କାମ କରୁଥିବେ। ମାଲିକମାନଙ୍କ ଠାରୁ ମାଡ଼ ଖାଉଥିବେ।

ଦୋକାନରୁ ଜିନିଷ କିଣି ମୁଁ ଫେରିଲି। ଘରେ ପହଞ୍ଚୁ ପହଞ୍ଚୁ ଘରଣୀ କହିଲେ - "ମାଳ କ'ଣ କହୁଛି ଜାଣିଲଣି ?"

ମାଳ ଆମ ଘରେ ଚାକରାଣୀ କାମ କରେ। ଏଇ କିଛି ବର୍ଷ ହେଲା ସେ ଏ କାମ କରୁଛି। ପଚାରିଲି - "କ'ଣ ହେଲା ମାଳ? ସେ ଉତ୍ତର ଦେଲା, " ବାବୁ, କାଲିଠାରୁ ଆଉ ମୁଁ ଏଠାକୁ ଆସିବିନି। ଆମ ବସ୍ତି କାଲି ଭଙ୍ଗାହେବ। ଆଜି ଭଙ୍ଗା ହୋଇଥାନ୍ତା। ସ୍ୱାଧୀନତା ଦିବସ ବୋଲି ଭଙ୍ଗା ହେଲାନି। ନୋଟିସ୍ ଦିଆସରିଛି - କାଲି ବୁଲ୍‌ଡ଼ୋଜର ଆସିବ। ବର୍ଷ ବର୍ଷ ଧରି ରହୁଥିବା ଆମ ଚାଳ ଘର ସବୁ ଭାଙ୍ଗି ଦିଆଯିବ। ରହିବାକୁ ଆମକୁ ଅଲଗା ଯାଗା ଦିଆଯାଉନି। କୋଉଠି କି ଯିବୁ ତେଣୁ ଠିକ୍ ନାହିଁ।"

ଆମର ସେ ସବୁ ଘର ନଥିଲା ବାବୁ। ନୁଆଁଣିଆ କୁଡ଼ିଆ। ଗୋଟିଏ ଗୋଟିଏ ବଖରାରେ ଚାରି ପାଞ୍ଚ ଜଣ ଲେଖାଏଁ ରହୁଥିଲୁ। ନେତାମାନେ ଆମ ପାଇଁ ଭୋଟର କାର୍ଡ କରି ଦେଇଥିଲେ। ଯାଗାର ପଟା କଥା କହିଲାବେଳେ କିଛି ଶୁଣିଲେନି।

ପ୍ରଶ୍ନ କଲି, ବସ୍ତି ଭାଙ୍ଗୁଛି କାହିଁକି ? ମାଳ କହିଲା- "ଏ ସହର ଭିତରେ ବସ୍ତି ରହିବା କୁଆଡ଼େ ଖରାପ। ଆମ ପିଲା ଖାଲି କୁଆଡ଼େ ନିଶା ଖାଉଛନ୍ତି। ଅପରାଧ କରୁଛନ୍ତି। ସହରକୁ କୁଆଡ଼େ ଆମେ ପ୍ରଦୁଷଣ କରୁଛୁ। ସହର ରାସ୍ତା ଆମ ପାଇଁ ଗହଳି ହେଉଛି। ଆମ ପିଲାଏ ଭିକ୍ଷାବୃତ୍ତି କରୁଛନ୍ତି। ମଦ ପିଇ ଏମାନେ କୁଆଡ଼େ ରାସ୍ତାରେ ଗଡୁଛନ୍ତି। ବସ୍ତି ବାସିନ୍ଦାଙ୍କ ଯୋଗୁଁ ଏ ସହରରେ ସ୍ୱରେଜ ହୋଇପାରୁନି। ଡ୍ରେନେଜ ହୋଇ ପାରୁନି। ଏଠି ପାଣି ଜମି ରହୁଛି ଆମ ଯୋଗୁଁ। ଆମ ଯୋଗୁଁ ଏ ସହରକୁ କୁଆଡ଼େ ବାହାର ଯାତ୍ରୀ ଆଉ ପର୍ଯ୍ୟଟକ ଆସୁ ନାହାଁନ୍ତି। ଏ ସହରର ପ୍ରଗତି କୁଆଡ଼େ ଆମରି ଯୋଗୁଁ ଅଟକି ଯାଉଛି।"

"ଅନ୍ୟ କେଉଁଠି ଯିବାକୁ ଦୁଃଖ ନାହିଁ ବାବୁ! ଦୁଃଖ ଏତିକି ଯେ, ପିଲାଟି ମୋର ଏଇ ପାଖ ସ୍କୁଲରେ ପଢୁଥିଲା। ଭଲ ବି ପଢୁଥିଲା। ଗୁରୁମା କହୁଥିଲେ, ସେ ଏ ବର୍ଷ ବୃତ୍ତି ପାଇପାରେ। ତାରି ପାଇଁ ଦୁଃଖ ବାବୁ। ତା' ଭାଗ୍ୟରେ ଯାହାଥିବ।"

ଲୁହରେ ଛକେଇ ଆସୁଥିବା ଆଖିକୁ ମାଳ ଲୁଗା କାନିରେ ପୋଛିଲା। ଏଥର ଟିକିଏ ଗମ୍ଭୀର ହୋଇ ସେ କହିଲା - "ଏ ସହର ପାଇଁ ଯେ ଆମେ କିଛି କରୁନୁ, ଏକଥା ଠିକ୍ ନୁହେଁ। ଆମ ବସ୍ତିରେ ରାଜ ମିସ୍ତ୍ରୀ, ରଙ୍ଗ ମିସ୍ତ୍ରୀ, ପାଇପ୍ ମିସ୍ତ୍ରୀ, ଇଲେକ୍ଟ୍ରି ମିସ୍ତ୍ରୀ ଅଛନ୍ତି। ଏ ସବୁ ଚିକ୍ ଚିକ୍ କୋଠା ଘର ଆମେ କରିଛୁ ବାବୁ। ଆମେ ବାବୁଙ୍କ ପାଇଁ ଗାଧୁଆ ଘର କରୁଛୁ। ଶୋଇବା ଘର ସଜାଉଛୁ। ଏଠି ଗଢ଼ି ଉଠୁଥିବା ଶିଳ୍ପରେ ଆମେ କାମ କରୁଛୁ। ଆମ ପିଲାଏ ଜରି ଗୋଟାଇ ଏ ସହରକୁ ସଫା କରୁଛନ୍ତି। ଏ ସହରର ସୌନ୍ଦର୍ଯ୍ୟ ଆମ ଯୋଗୁଁ ବଢୁଛି। ଏହାର ପ୍ରଗତି ପାଇଁ ଆମେ ସାହାଯ୍ୟ କରୁଛୁ। ଭାରତର ସବୁ ବଡ଼ ବଡ଼ ସହରରେ ବସ୍ତି ଅଛି। ପ୍ରଗତି ବି ଚାଲିଛି। ସେଦିନ ଜଣେ ସମାଜ ସେବୀ କହୁଥିଲେ, ଆମେ ଏ ସହରର ଜୀବନ ରେଖା। ଏ ସହରକୁ ସାହାଯ୍ୟ କରୁଛୁ। ଆମ କଥା କିଏ କିନ୍ତୁ ବୁଝୁ ନାହାଁନ୍ତି। ବୁଝିଲେନି। ନେତାମାନେ ତ ତାଙ୍କ ଗାଦି କିପରି ଠିକ ରହିବ, ସେଥିପାଇଁ ବ୍ୟସ୍ତ। ହଁ ଯାଉଛି ବାବୁ! ଆଉ ଗୋଟିଏ ଚାକରାଣୀ ବୁଝିଦେବେ। ମା' ଏ ଘରକୁ ଏକା ପାରିବେନି।"

ମାଳ ନମସ୍କାର କରି ଗେଟ ପାର ହୋଇ ଚାଲିଗଲା। ଟିଭିରେ ପ୍ରଧାନମନ୍ତ୍ରୀଙ୍କ ଭାଷଣ ଶୁଭୁଥିଲା। ଭାରତର ପ୍ରଧାନମନ୍ତ୍ରୀ ତାଙ୍କ ସରକାରର ସଫଳତା ଆଉ ପ୍ରତିଶ୍ରୁତିର ତାଲିକା ଦେଉଥିଲେ। ଭୋଳା ଆଉ ମାଳ ମାନଙ୍କ ପାଇଁ ଏହାର ଅର୍ଥ କ'ଣ ବୋଲି ଭାବୁଥିଲି।



# ଦଙ୍ଗା

ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କ ହତ୍ୟାକାରୀ କିଏ ଅବଶ୍ୟ ଏ ପର୍ଯ୍ୟନ୍ତ ଏହା ଜଣା ପଡ଼ିନାହିଁ। ଏହାର ଏବେ ଏକ ବିଚାର ବିଭାଗୀୟ ତଦନ୍ତ ହେଉଛି। ଲକ୍ଷ୍ମଣାନନ୍ଦଙ୍କ ହତ୍ୟା ପରେ କନ୍ଧମାଳ ସମେତ ଓଡ଼ିଶାର ପ୍ରାୟ ଅନ୍ୟ କିଛି ଜିଲ୍ଲାରେ ସାମ୍ପ୍ରଦାୟିକ ଦଙ୍ଗାର ତାଣ୍ଡବଲୀଳା ଚାଲିଲା। ଚର୍ଚ୍ଚ ପୋଡ଼ା ହେଲା। ଖ୍ରୀଷ୍ଟିଆନଙ୍କୁ ଆକ୍ରମଣ ହେଲା। ହତ୍ୟା, ଧର୍ଷଣ, ଲୁଟତରାଜ ଚାଲିଲା। ଗାଁ ମାନଙ୍କରେ ପୋଡ଼ି ଯାଇଥିବା ଘର ମାନଙ୍କର ପୋଡ଼ାକାନ୍ଥ ଏବଂ ଖୁମ୍ବ ଅସୁର ପରି ଛିଡ଼ା ହେଲା। ଗାଁ ଲୋକମାନେ ଭୟରେ ପଳାଇ ଯାଇ ଜଙ୍ଗଲରେ ରହିଲେ।

ଏ ଥିଲା ଲକ୍ଷ୍ମଣାନନ୍ଦଙ୍କ ମୃତ୍ୟୁ ପରେ ଓଡ଼ିଶାର କିଛି ସାମାଜିକ ଚିତ୍ରର ଏକ ମିଡ଼ିଆ ରିପୋର୍ଟ। ଏ ରିପୋର୍ଟ ଏଠାରେ ବର୍ଷ ବର୍ଷର ସହିଷ୍ଣୁ ସର୍ବଧର୍ମ ସମନ୍ୱୟର ସମାଜକୁ ଯେପରି ଖତେଇ ହେଉଥିଲା। ଦଙ୍ଗାର ଦୃଶ୍ୟ ଇତିହାସରେ ଲେଖାହେଲା। କନ୍ଧମାଳ ଏବେ ଇତିହାସ ହୋଇଗଲା।

ଦଙ୍ଗାର ସମର୍ଥକମାନେ କହି ପାରନ୍ତି, ବଡ଼ ଗଛଟିଏ ଯେତେବେଳେ ଭୁଷୁଡିପଡ଼େ ସେତେବେଳେ ଏହାର ଚାରିପାଖ ସଲଗ୍ନ ଭୂଇଁ ଦୁଲୁକି ଉଠିବା ସ୍ୱଭାବିକ। ଆବେଗର ଆକ୍ରମଣାତ୍ମକ ପ୍ରତିଫଳନ ହେବା ଏକ ପ୍ରାକୃତିକ ପ୍ରକ୍ରିୟା। ଗଣ ଆବେଗକୁ ପ୍ରକୃତରେ ରୋକି ହୁଏନି। ଏହା ସ୍ୱତଃସ୍ଫୂର୍ତ ଘଟେ। ଲକ୍ଷ୍ମଣାନନ୍ଦଙ୍କ ମୃତ୍ୟୁ ପରେ ଏ ଯେମିତି ଏମିତି ବି ଘଟିଯାଇଛି।

ସତକଥା କିନ୍ତୁ ହେଲା, ଗଣ ଆବେଗ ଆପେ ଆପେ ସୃଷ୍ଟି ହୋଇଯାଏନି। ଏହାକୁ ଉସ୍କାଇ ସୃଷ୍ଟି କରାଯାଇଥାଏ। ଆବେଗ ଯେତେବେଳେ ଆବେଗ ଭିତରେ ଆବଦ୍ଧ ହୋଇ ଥାଏ, ଏଥିରେ ଅନ୍ୟ କାହାର କିଛି କ୍ଷତି ହୁଏନି। କିନ୍ତୁ ଏଇ ଆବେଗ ଯେତେବେଳେ ଆକ୍ରମଣାତ୍ମକ ହୋଇ ସାମୁହିକ ହିଂସାର ରୂପନିଏ ଏହା ସେବେ ଗଣ ଉନ୍ମାଦ ହୋଇଯାଏ। ଅନ୍ୟ କଥାରେ କହିଲେ ଏହା ଏକ ମାସ୍ ହିଷ୍ଟ୍ରିଆ। ଏହି ଉନ୍ମାଦ ଭାଇଚାରା ଭାଙ୍ଗେ। ସାମ୍ପ୍ରଦାୟିକ ସଦ୍‌ଭାବକୁ ନଷ୍ଟ କରେ ଏବଂ ହିଂସା ସୃଷ୍ଟ କ୍ଷତ ଶୁଖିଗଲେ ବି ଦାଗ ଅନେକ ଦିନ ଧରି ରହିଯାଏ। ଏଇ ଯେମିତି ଖ୍ରୀଷ୍ଟିଆନ ମିସିନାରୀ ଗ୍ରାହାମ ଷ୍ଟେନ୍ ଏବଂ ତାଙ୍କ ଦୁଇ ପୁତ୍ରଙ୍କ ହତ୍ୟା ପରର ଅନେକ ବର୍ଷ ପରେ ବି ଓଡ଼ିଶାର ଦୁଇ ମୁଖ୍ୟ ସମ୍ପ୍ରଦାୟ ଭିତରେ ଆବେଗର ଫାଟ ସମ୍ଭବତଃ ଏବେ ବି ରହିଯାଇଛି।

ସ୍ୱାମୀ ଲକ୍ଷ୍ମଣାନନନ୍ଦ ଜୀ ଜଣେ ଧାର୍ମିକ ପୁରୁଷ ଥିଲେ। ବୟସ ପାଖାପାଖି ତାଙ୍କର ଥିଲା ନବେ। ଦଳିତ ମାନଙ୍କର ସେ ସେବା କରୁଥିଲେ। ଗରିବଙ୍କ ଶିକ୍ଷା ସ୍ୱାସ୍ଥ୍ୟ ପାଇଁ କାମ କରୁଥିଲେ। ନବେ ବର୍ଷର ଜଣେ ଦୁର୍ବଳ ସନ୍ନାସୀଟିଏ ସେ କାହାପାଇଁ କେମିତି ବିପଦଟିଏ ହୋଇଗଲେ, ପ୍ରକୃତରେ ଏହା ରହସ୍ୟମୟ ଲାଗୁଛି।

ହତ୍ୟାକାରୀଙ୍କ ବୋଧେ ଉଦ୍ଦେଶ୍ୟ ଥିଲା, ସ୍ୱାମୀଜୀଙ୍କ ହତ୍ୟାପରେ ସାମାଜିକ ସଂହତି ନଷ୍ଟ ହେବ। ସାମୁହିକ ହିଂସା ସୃଷ୍ଟି ହେବ ଏବଂ ଧର୍ମ ନାଁରେ ଏ ସମାଜ ବାଣ୍ଟି ହୋଇ ଧୃବିକରଣ ହୋଇଯିବ। ଏ ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ସାଧିତ ନ ହୋଇଥିଲେ ବି ଏଠି ସାମ୍ପ୍ରଦାୟିକ ସହାବସ୍ଥାନରେ କ୍ଷତି ଆସିଛି। ଗଣମାଧମରେ ଖବରଟିଏ ଆସିଥିଲା, ଫୁଲବାଣୀ ଜଙ୍ଗଲରେ ଲୁଚିଥିବା ଲୋକେ ବାହାର ମଣିଷଙ୍କୁ ଦେଖିଲେ ଭୟରେ କୁଆଡ଼େ ଜଙ୍ଗଲ ଭିତରକୁ ପଳାଇଥିଲେ।

ପ୍ରଶ୍ନ ହୁଏ, ଭାରତ ବର୍ଷରେ ଏତେ ସାମ୍ପ୍ରଦାୟିକ ଦଙ୍ଗା କାହିଁକି ? କାରଣ ହେଉଛି, ଭାରତ ଏକ ବହୁ ବୃତ୍ତିଭୋଗୀ ଧାର୍ମିକ ସମାଜ। ଏଠି ଧର୍ମ, ସଂସ୍କୃତି ଏବଂ ଭାଷାରେ ବିଭିଧତା ଅଛି। ଏହା ସହିତ ବି, ଏ ଦେଶ ଏକ ଗଣତାନ୍ତ୍ରିକ ଦେଶ। ଏଠି ରାଜନୈତିକ କ୍ଷମତା ପାଇବାକୁ ହେଲେ ନିର୍ବାଚନ ଜିତିବାକୁ ପଡ଼େ ଏବଂ ନିର୍ବାଚନ ଜିତିବାକୁ ଭୋଟ ବ୍ୟାଙ୍କର ଦରକାର ହୁଏ। ଆବେଗ ପ୍ରୟୋଗରେ ଭୋଟ ବ୍ୟାଙ୍କ ସୃଷ୍ଟି କରିବା ସହଜ। ଧର୍ମ ଏଥିପାଇଁ ଏକ ପ୍ରଧାନ ଅସ୍ତ୍ର ଏବଂ ଏଇଟା ବି ସତ ଯେ ପ୍ରତି ଦଙ୍ଗାକାରୀର ଏକ ରାଜନୈତିକ ଆଶ୍ରୟ ସ୍ଥଳ ଥାଏ।

ଭାରତର ନିରକ୍ଷରତା ମଧ ଏଠି ବାରମ୍ବାର ସଂଗଠିତ ହେଉଥିବା ଦଙ୍ଗାର ଏକ ପ୍ରମୁଖ କାରଣ ଭାବେ ଧରି ନିଆଯାଏ। ଗୁଜବକୁ ଏଠି ବିଶ୍ୱାସ କରୁଥିବା ଲୋକ ବେଶି। କୌଣସି ଏକ ଘଟଣାର କଦର୍ଥ କରି ବୁଝେଇ ଦେଲେ ଏଇ ଅର୍ଥାନ୍ତରକୁ ବୁଝି ବିଶ୍ୱାସ କରାଯିବା ଲୋକ ଏଠି ଅଧିକ। ଏହା ବି ଜଣାଯାଏ, ଭାରତବର୍ଷର ସବୁ ଦଙ୍ଗା ସହରରୁ ଆରମ୍ଭ ହୋଇ ଗାଁକୁ ଯାଏ ଏବଂ ତଥାକଥିତ ଶିକ୍ଷିତ ଶ୍ରେଣୀ ଏଇ ଦଙ୍ଗାରୁ ବାହାବା ନିଏ। ଏପରି ଏକ ପରିସଂଖ୍ୟନ ଆସେ ଯେ, ସ୍ୱାଧୀନତା ପୂର୍ବରୁ ଏବଂ ପରେ ଭାରତ ବର୍ଷରେ ଯେତିକି ଲୋକ ଦଙ୍ଗାରେ ମୃତାହତ ହେଲେଣି, ପ୍ରଥମ ବିଶ୍ୱଯୁଦ୍ଧରେ ମୃତାହତଙ୍କ ସଂଖ୍ୟା ସେତିକି ହୋଇ ନଥିଲା।

ଅଭିଯୋଗ ହୁଏ, ଲକ୍ଷ୍ମଣାନନ୍ଦ ଜୀ ଧର୍ମାନ୍ତରିକରଣକୁ କେବଳ ରୋକୁ ନଥିଲେ, ନିଜେ ବି ଧର୍ମାନ୍ତରିକରଣ କରୁଥିଲେ। ହିନ୍ଦୁ ଧର୍ମରୁ ଖ୍ରୀଷ୍ଟିଆନ ହୋଇଥିବା ବ୍ୟକ୍ତିଙ୍କୁ ପୁଣି ହିନ୍ଦୁ ଧର୍ମକୁ ଫେରାଇ ଆଣୁଥିଲେ। କିନ୍ତୁ ଏଇ ଅଭିଯୋଗ ପାଇଁ ଯେ ଜଣେ ବୃଦ୍ଧ ସଂସାର ତ୍ୟାଗୀ ସନ୍ନାସୀଙ୍କ ସମେତ ତାଙ୍କ ସହଯୋଗୀଙ୍କୁ ହତ୍ୟା କରାଯିବ, ଏହାକୁ ସହଜରେ ହଜମ କରି ହେଉନି।

ଭାରତ ଏକ ଧର୍ମ ନିରପେକ୍ଷ ଦେଶ। ଧର୍ମ ବି ଏକ ବ୍ୟକ୍ତିଗତ ବିଶ୍ୱାସ। ନିଜ ଇଛାରେ ଧର୍ମ ଗ୍ରହଣ କରିବା ଏବଂ ଧର୍ମ ପ୍ରଚାର କରିବା ଏହା ଏକ ସାମ୍ବିଧାନିକ ମୌଳିକ ଅଧିକାର। ଏଇ ଅଧିକାର କିନ୍ତୁ ନିରଙ୍କୁଶ ନୁହେଁ। ଧର୍ମାନ୍ତରିକରଣରେ ଯଦି ବଳ କିମ୍ବା ପ୍ରଲୋଭନର ସ୍ଥିତି ଥାଏ ଏବଂ ଧର୍ମ ପ୍ରଚାରରେ ଯଦି ସାମାଜିକ ଶୃଙ୍ଖଳା ନଷ୍ଟ ହେଉଥାଏ, ଏହାକୁ ନିୟନ୍ତ୍ରଣ କରିବାର ଅଧିକାର ରାଷ୍ଟ୍ରର ମଧ୍ୟ ଅଛି। କନ୍ଧମାଳରେ ଯଦି ଏହା ହେଉନଥିଲା; ଏ ନିୟନ୍ତ୍ରଣ କାହିଁକି ନଥିଲା ବୋଲି ପ୍ରଶ୍ନ ହେବା ଅପ୍ରାକୃତିକ ନୁହେଁ।

ଭାରତର ସମସ୍ତ ଲଘୁ ସମ୍ପ୍ରଦାୟ ଏ ଦେଶର ବାସିନ୍ଦା। ମୁସଲମାନ ଏବଂ ଖ୍ରୀଷ୍ଟିଆନ୍ ହୋଇଥିବା ବ୍ୟକ୍ତି ଏ ଦେଶକୁ ବାହାରୁ ଆସିନାହାଁନ୍ତି। ଏଠି ତାଙ୍କର ଜନ୍ମ। ଭାରତୀୟ ସଂସ୍କୃତି ଉପରେ ତାଙ୍କର ଭରସା ବି ଅଛି। ବ୍ୟକ୍ତିଗତ ବିଶ୍ୱାସ ପାଇଁ ଯଦି ଜଣେ କିଏ ଅନ୍ୟ ପଟକୁ ଡ଼େଇଁଗଲା, ଏଥିପାଇଁ ଅସହିଷ୍ଣୁ ହୋଇଯିବା ଯେ ଭୁଲ, ଏଥିନେଇ ଗଣ ସଚେତନତାଟିଏ ଦରକାର ହେଉଛି।

ସବୁ ଧର୍ମ ଶାନ୍ତିର କଥା ହିଁ କହେ। ସମ୍ପ୍ରୀତିର ପ୍ରଚାର କରେ। ହିଂସାକୁ ଆଧାର କରି କୌଣସି ଧର୍ମ ପୃଥିବୀରେ ଜନ୍ମ ନେଇନାହିଁ। ବଞ୍ଚିବି ପାରିବନି।

ହଁ, ଏ ଆଲୋଚନାର ଏ ଶେଷ କଥା। ପ୍ରକୃତରେ ଦଙ୍ଗାରେ କିଏ ଜିତେ ନାହିଁ। ସମସ୍ତେ ହିଁ ହାରନ୍ତି। କିଛି ଦିନ ପରେ ଯେତେବେଳେ କନ୍ଧମାଳର ଦଙ୍ଗାର ପ୍ରଭାବ ସଂପୂର୍ଣ୍ଣ ଥମିଯିବ ଏବଂ ପରିଣତିର ସମୀକ୍ଷା ହେବ, ସେତେବେଳେ ଲକ୍ଷ୍ମଣାନନ୍ଦଙ୍କ ହତ୍ୟାକାରୀ ଏବଂ ହତ୍ୟାପରର ଦଙ୍ଗାକାରୀ ଉଭୟ ରାଜି ହେବେ ଯେ, ଆମେ ସମସ୍ତେ ହାରିଛୁ।

ସାମ୍ପ୍ରଦାୟିକ ସଦ୍‌ଭାବନାର ବିକଳ୍ପ କିଛି ନାହିଁ। ରାଜନେତା, ବୁଦ୍ଧିଜୀବୀ, ମୁଲ୍ଲା, ବିଶପ, ମହନ୍ତ ସମସ୍ତେ ଏବେ ଏଇ କଥା ଏକ ସ୍ୱରରେ କହିବାର ହିଁ ବେଳ। ଦଙ୍ଗା ସମାଧାନ ନୁହେଁ।



# କ୍ୟାମ୍ପସ ରାଜନୀତି

ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଏଇ କିଛିବର୍ଷ ତଳେ ଛାତ୍ର ସଂସଦ ନିର୍ବାଚନକୁ ନେଇ ଘଟିଥିବା ଲଙ୍କାକାଣ୍ଡ ପୁରୀରେ ଅଟକି ନଥିଲା। ଏହା ଭାରତର ମାନ୍ୟବର ଉଚ୍ଚତମ ନ୍ୟାୟାଳୟକୁ ଚାଲିଯାଇଥିଲା। ମାନ୍ୟବର ସୁପ୍ରିମକୋର୍ଟ ନିର୍ଦ୍ଦେଶ ବି ଦେଇ ଦେଲେ- ଛାତ୍ରମାନଙ୍କ ବିରୁଦ୍ଧରେ ଫୌଜଦାରୀ ମାମଲା ହେଉ। କ୍ୟାମ୍ପସ ରାଜନୀତିର ପ୍ରକୃତରେ ଏହା ଏକ ସଦ୍ୟତମ କ୍ରିୟା ତଥା ପ୍ରତିକ୍ରିୟାର ଉଦାହରଣ।

ଏ ଲେଖକ ଚାରି ଦଶନ୍ଧି ତଳେ ଏଇ ଏସ୍.ସି.ଏସ୍. କଲେଜର ଛାତ୍ର ଥିଲା। ଏଇଠୁ ସେ ଭାଷଣ ଦେବା ଶିଖିଥିଲା। କଲେଜ ମାଗାଜିନ୍ ଏବଂ ସେମିନାର୍‌ରେ ଲେଖା ଲେଖି ନିଜ ଲେଖକୀୟ ସତ୍ତାର ଆବିଷ୍କାର କରିଥିଲା। ଆଜି ଯେତେବେଳେ କେନ୍ଦ୍ର କର୍ମଚାରୀଙ୍କର ଜଣେ ସର୍ବଭାରତୀୟ ନେତା ଭାବେ ଓଡ଼ିଶା ବାହାରେ ବିଭିନ୍ନ ଯାଗାରେ ଭାଷଣ ଦିଏ ଏବଂ ଓଡ଼ିଶାର ବିଭିନ୍ନ ଖବର କାଗଜରେ ସ୍ତମ୍ଭ ଲେଖେ, ଏଇ ଲେଖକର ସାମନ୍ତ ଚନ୍ଦ୍ରଶେଖର କଲେଜ କଥା ମନେ ପଡ଼େ। ଇଏ ଅନୁଗତ୍ୟର କଥା। ଏ ଭାବନା ବି ଏ କଲେଜର ଅନେକ ପୂର୍ବତନ ଛାତ୍ର ଛାତ୍ରୀମାନଙ୍କର ଥିବ। ଜଣେ ଶିକ୍ଷିତ ବ୍ୟକ୍ତିକୁ ତା'ର ଶେଷ ଜୀବନ ପର୍ଯ୍ୟନ୍ତ ଯେଉଁ ଗୋଟିଏ ପ୍ରଶ୍ନର ଉତ୍ତର ବାରମ୍ବାର ଦେବାକୁ ହୁଏ, ସେ ହେଉଛି କେଉଁ ଶିକ୍ଷାନୁଷ୍ଠାନରୁ ସେ ଶିକ୍ଷା ପାଇଥିଲା। ଦୁଃଖ ଯେ, ଶିକ୍ଷାନୁଷ୍ଠାନ ସହ ସଂଶ୍ଳିଷ୍ଟ ସମସ୍ତ ଆନୁଗତ୍ୟ ଏବଂ ମହିମା ଗାନ ନେଇ ସମସ୍ତ ସ୍ମୃତିକୁ କ୍ୟାମ୍ପସ ରାଜନୀତି ନଷ୍ଟ କରି ଦେଲାଣି। ନିଜ ଶିକ୍ଷାନୁଷ୍ଠାନର କମ୍ପ୍ୟୁଟର, ଲାବୋରୋଟରି ଭାଙ୍ଗି ଦେବା କେଉଁ ଆନୁଗତ୍ୟ, ବାସ୍ତବରେ ଜଣା ଜାଏନି।

ସ୍ମରଣ କରାଯାଇପାରେ, ମଧ୍ୟପ୍ରଦେଶ ଉଜ୍ଜୟନୀର ମାଧବ କଲେଜରେ ଜଣେ ଅଧ୍ୟାପକଙ୍କୁ ଏଇ ଛାତ୍ର ସଂସଦ ନିର୍ବାଚନ ନେଇ ସେଠାର ଛାତ୍ରମାନେ ପିଟିପିଟି ମାରିଦେଇଥିଲେ। ଅଧ୍ୟାପକଙ୍କ ହତ୍ୟା ସେତେବେଳେ କ୍ୟାମ୍ପସ ନିର୍ବାଚନର ଆବଶ୍ୟକତା ସମ୍ପର୍କରେ ଦେଶସାରା ପ୍ରଶ୍ନ ମଧ୍ୟ ଆଣିଥିଲା। ଅବଶ୍ୟ ଆଶା କରାଯାଉଥିଲା, ଲିଙ୍ଗଡ଼ୋ କମିଟିଙ୍କ ସୁପାରିଶ ଶିକ୍ଷାନୁଷ୍ଠାନ ରାଜନୀତିକୁ ଶୃଙ୍ଖଳିତ କରିଦେବ। ଯାହା ଜଣାଯାଏ, ଏ ପର୍ଯ୍ୟନ୍ତ ତାହା ହୋଇନି। ଏସ୍.ସି.ଏସ୍. କଲେଜ ସମେତ ଓଡ଼ିଶାର ଅନେକ କଲେଜର ଛାତ୍ର ସଂସଦ ନିର୍ବାଚନକୁ ନେଇ ହିଂସା ସୃଷ୍ଟି ହୋଇଛି।

ସ୍ପଷ୍ଟ କହିଲେ, କ୍ୟାମ୍ପସ୍‌ରେ ଆଉ ପବିତ୍ରତା ନାହିଁ। ଏଠି ଏବେ ଦୁଇଟି ଜିନିଷର

ରାଜୁତି ଚାଲେ। ପ୍ରଥମଟି ହେଉଛି ରାଜନୀତିକରଣ ଏବଂ ଅନ୍ୟଟି ହେଉଛି ଅପରାଧିକରଣ। ଅଧ୍ୟାପକ ଏବଂ ଅଧ୍ୟାପିକାମାନଙ୍କୁ ତଥାକଥିତ ଛାତ୍ର ନେତାମାନେ ସେମାନଙ୍କର ଆଉ ଗାଇଡ୍ ଏବଂ ଦିଗ୍‌ଦର୍ଶକ ବୋଲି ଭାବନ୍ତି ନାହିଁ। ଏମାନଙ୍କର ଗାଇଡ୍ ଭାଇମାନେ ଗେଟ୍ ବାହାରେ ଥାଆନ୍ତି। କଲେଜ କ୍ୟାମ୍ପସରେ ରାଜନୀତି ନାଁରେ ଗୁଣ୍ଡା ଏବଂ ଲୁମ୍ପେନ ମାନଙ୍କର ଏଠି ଭିଡ଼ ଜମେ।

ବାସ୍ତବରେ କ୍ୟାମ୍ପସ ହିଂସା ଯେ ଆମର ବୃହତ ଗଣତାନ୍ତ୍ରିକ ବିଚ୍ୟୁତିର ଏକ ପ୍ରତିଫଳନ ଏବଂ ବିଧାନସଭା ତଥା ସଂସଦରେ ହେଉଥିବା ଆମ ଲୋକ ପ୍ରତିନିଧିଙ୍କ ଆଚରଣର ଏକ ସଂକ୍ଷିପ୍ତ ସଂସ୍କରଣ ବୋଲି ଯେଉଁ ଅଭିଯୋଗ ହୁଏ, ଏହା ଅସତ୍ୟ ନୁହେଁ।

ଭାରତରେ ମହାବିଦ୍ୟାଳୟ ଏବଂ ବିଶ୍ୱବିଦ୍ୟାଳୟ ମାନଙ୍କରେ ଛାତ୍ର ସଂସଦ ନିର୍ବାଚନ ପାଇଁ ଉଚ୍ଚସ୍ତରୀୟ ନୀତିଗତ ନିଷ୍ପତ୍ତି ନେବାବେଳେ ଏହା ବିଚାରରେ ଥିଲା ଯେ, ଛାତ୍ର ଛାତ୍ରୀମାନେ ଶିକ୍ଷାନୁଷ୍ଠାନ ପରିଚାଳନାରେ ଭାଗନେବା ଦରକାର। ଆନୁଷ୍ଠାନିକ ଉନ୍ନତି ପାଇଁ ଏମାନଙ୍କର ସମ୍ପୃକ୍ତି ରହିବା ଉଚିତ। ଯେହେତୁ ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଏବଂ ଏଠାରେ ଏକ ରାଜନୈତିକ ସମାଜଟିଏ ଅଛି, ଛାତ୍ରଛାତ୍ରୀମାନେ ନିର୍ବାଚନ ମାଧ୍ୟମରେ କଲେଜ ପରିଚାଳନା ପାଇଁ ନିଜ ପ୍ରତିନିଧି ଠିକ୍ କରିବା ଅଗଣତାନ୍ତ୍ରିକ ନୁହେଁ। ଏହାକୁ ରାଜନୀତିର ନାଁ ବି ଦିଆଯାଇପାରେ।

ତାତ୍ତ୍ୱିକ ସିଦ୍ଧାନ୍ତ ହେଲା, ରାଜନୀତି ଏକ କଳୁଷିତ ପଦାର୍ଥ ନୁହେଁ। କ୍ଷମତା ଏବଂ ରାଜନୀତି ସମ୍ପର୍କରେ କୁହାଯାଏ ଯେ, ରାଜନୀତି ହେଉଛି ପ୍ରତିଯୋଗିତା ତଥା ପରିଚାଳନାର ଏକ ପ୍ରକ୍ରିୟା ଏବଂ ସରକାର, ସଂଘ, ୟୁନିୟନ ଏ ସବୁ ଏଇ ପ୍ରକ୍ରିୟାର ମାଧ୍ୟମ ମାତ୍ର। ଛାତ୍ର ସଂସଦ ମାଧ୍ୟମରେ ନିର୍ବାଚନ ଜିତି ଏବଂ କଲେଜ ପରିଚାଳନାରେ ଭାଗ ନେଇ ଆନୁଷ୍ଠାନିକ ପ୍ରଗତିକୁ ତ୍ୱରାନ୍ୱିତ କରିବା ପ୍ରକୃତରେ ଛାତ୍ର ସଂସଦ ରାଜନୀତି ହିଁ ଉଦ୍ଦିଷ୍ଟ ଥିଲା।

୧୯୬୦ ଏବଂ ୧୯୭୦ ଦଶକରେ କ୍ୟାମ୍ପସ ରାଜନୀତି ଥିଲା ଅନନ୍ୟ। ଏସବୁ ଆଦର୍ଶ ଭିତ୍ତିକ ଥିଲା। ପାଠପଢ଼ାର ସମସ୍ୟା ଏବଂ କୌଣସି ଜାତୀୟ ପ୍ରସଙ୍ଗକୁ ନେଇ ଏଠି ଆଲୋଚନା ହେଉଥିଲା। ଛାତ୍ର ନେତାମାନେ ଏ ସମସ୍ୟାରେ ଛାତ୍ର ଛାତ୍ରୀମାନଙ୍କୁ ବୁଝାଉଥିଲେ। ସାମ୍ପ୍ରତିକ ଭାରତୀୟ ରାଜନୀତିରେ ଥିବା ବରିଷ୍ଠ ନେତା ଅରୁଣ ଜେଟଲି, ଲାଲୁ ଯାଦବ, ନିତିଶ କୁମାର, ପ୍ରକାଶ କରାତେ, ସୀତାରାମ ୟେଚୁରୀ, ଚନ୍ଦ୍ରବାବୁ ନାଇଡୁ ଏପରି ଅନେକ ରାଜନେତା କ୍ୟାମ୍ପସ ରାଜନୀତିରୁ ହିଁ ଜନ୍ମ ନେଇଥିଲେ ଏବଂ କ୍ୟାମ୍ପସରେ ନେତୃତ୍ୱ ନେଇଥିବା ଅନେକ ବି ଭାରତୀୟ ପ୍ରଶାସନିକ ସେବାରେ ଯୋଗଦେଇ କ୍ଷମତାର ସର୍ବୋଚ୍ଚରେ ପହଞ୍ଚି ଯାଇଛନ୍ତି।

କଲେଜ ନିର୍ବାଚନ ଏବେ ଆଉ ଦଳୀୟ ରାଜନୀତିରୁ ପୃଥକ ହୋଇ ରହି ନାହିଁ। ଅନେକ ରାଜନୈତିକ ନେତା କ୍ୟାମ୍ପସ ରାଜନୀତିରେ ବେଶ ରୁଚି ରଖିଛନ୍ତି। ଏଥିପାଇଁ ଆର୍ଥିକ ସାହାଯ୍ୟ ଏବଂ ବାହୁବଳ ଯୋଗାଇ ଦେଉଛନ୍ତି। ଏପରି ଖବର ମଧ୍ୟ ଆସେ, ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଜଣେ ଜଣେ ପ୍ରାର୍ଥୀ ପ୍ରଚାରରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରନ୍ତି। ନିଜ ସପକ୍ଷରେ ସ୍ଲୋଗାନ୍ ଦେବାକୁ ଭଡ଼ାରେ ସ୍ଲୋଗାନ୍‌କାରୀଙ୍କୁ ଆଣନ୍ତି। ଏପରି ବି ହୁଏ, ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦର ପ୍ରାର୍ଥୀଟିଏ ଜିତିଗଲେ ଏହା ଭାରତୀୟ ଜନତା ପାର୍ଟିର ବିଜୟ ବୋଲି ଗଣାଯାଏ ଏବଂ ଜାତୀୟ ଛାତ୍ର ୟୁନିୟନ୍ ବା ଏନ୍.ଏସ୍.ୟୁ.ଆଇ.ର ପ୍ରାର୍ଥୀଟିଏ ଜିତିଗଲେ ଭାରତୀୟ ଜାତୀୟ କଂଗ୍ରେସର ଦଳୀୟ ଶିବିରରେ ଉଲ୍ଲାସ ଖେଳିଯାଏ। ଓଡ଼ିଶାରେ ମଧ୍ୟ ଅନେକ ରାଜନୈତିକ ନେତା, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀମାନେ ନିର୍ବାଚିତ ଛାତ୍ର ନେତାଙ୍କୁ ନିଜ ଦଳର କହି ସ୍ୱାଗତ ଜଣାନ୍ତି।

ପ୍ରଶ୍ନ ହୁଏ, ଏଇ ଛାତ୍ର ସଂସଦ ନିର୍ବାଚନ ଭାରତର ଜାତୀୟ ସ୍ୱାର୍ଥ ପ୍ରତି କ'ଣ ଏବଂ କିପରି ଅନୁକୂଳ ହେଉଛି ? ଏବଂ ଏକ ବୃହତ୍ ରାଜନୈତିକ ହିଂସା ପାଇଁ କ୍ୟାମ୍ପସକୁ ଏକ ନର୍ସରୀ ଭାବେ ବ୍ୟବହାର କରାଯାଉଛି କାହିଁକି ? ଇଏ ପ୍ରକୃତରେ ଆଜିର ପ୍ରଶ୍ନ ନୁହେଁ। ଏ ପ୍ରଶ୍ନ ଆଜକୁ ପ୍ରାୟ ଦୁଇ ଦଶନ୍ଧି ଧରି ପଚରା ଚାଲିଛି।

କ୍ୟାମ୍ପସ ନିର୍ବାଚନ ନେଇ ଏକ ସର୍ଭେକ୍ଷଣ ଏବେ ଏ ଲେଖକର ନଜରକୁ ଆସିଲା। ଏ ସର୍ଭେକ୍ଷଣରେ ଥିଲା-କଲେଜ ନିର୍ବାଚନରେ ମାତ୍ର ତିରିଶ ପ୍ରତିଶତ ପିଲା ଭୋଟ ଦିଅନ୍ତି। ୪୦ ପ୍ରତିଶତ ପିଲାଙ୍କର କଲେଜ ନିର୍ବାଚନରେ ମୋଟେ ରୁଚି ନ ଥାଏ। ଛଅ ସାତ ପ୍ରତିଶତ ପିଲାଏ ମିଟିଙ୍ଗରେ ଯୋଗ ଦିଅନ୍ତି ଏବଂ ମାତ୍ର ଏକରୁ ତିନି ପ୍ରତିଶତ ଛାତ୍ର ଛାତ୍ରୀ ନିର୍ବାଚନରେ ପ୍ରାର୍ଥୀ ଭାବେ ଛିଡ଼ା ହୁଅନ୍ତି। ସୁତରାଂ କଲେଜ ନିର୍ବାଚନ ସପକ୍ଷ ନେଇ ଯୁକ୍ତି ଯେ ଏକ ସାମୁହିକ ଯୁକ୍ତି ଏବଂ କ୍ୟାମ୍ପସ ହିଂସା ପାଇଁ ଯେ ସମସ୍ତେ ଦାୟୀ, ଏପରି ଅଭିଯୋଗର ବି କିଛି ଅର୍ଥ ନଥାଏ।

ଶେଷକଥା ହେଲା, କଲେଜର ଉନ୍ନତି ପାଇଁ ଛାତ୍ର ସଂସଦ ନିର୍ବାଚନର ଆବଶ୍ୟକତା ଅଛି। ଏହା କିନ୍ତୁ ଶୃଙ୍ଖଳିତ ହେବା ଦରକାର। ଲିଙ୍ଗଡ଼ୋ କମିଟିର ଆଚରଣ ବିଧି ଏଇ ଶୃଙ୍ଖଳା କଥା ହିଁ କହେ। ଲିଙ୍ଗଡ଼ୋ ତେଣୁ ସମସ୍ୟା ନୁହେଁ, ଏକ ସମାଧାନ। ଅଥଚ କ୍ୟାମ୍ପସ ରାଜନୀତି ଆଳରେ ଦଳୀୟ ରାଜନୀତିର ଏଠି ଅନୁପ୍ରବେଶ ଏକ ଗଣତାନ୍ତ୍ରିକ ବିଲକ୍ଷଣ। ଆମ ରାଜନେତାମାନେ ଜଣେ ଛାତ୍ରକୁ ତାଙ୍କ ଦଳରେ ନେବା ପାଇଁ ଛାତ୍ରଟିର ଶିକ୍ଷା ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କଲେ ଭଲ ହୁଅନ୍ତା।



# 'ଦିବସ' ପାଳନ

ଦିନେ ବଡ଼ି ଭୋଅରୁ ଟେଲିଫୋନ୍ ଆସିଲା। ବଡ଼ପୁଅ ଫୋନ୍ କରିଥିଲା ଲଣ୍ଡନରୁ। ସେ ସେଠାରେ ରହେ। ଚାକିରୀ କରେ। ପଚାରିଲି - ଏତେ ସକାଳୁ କ'ଣ ଦରକାର ପଡ଼ିଲା ? ତୋ'ର ବୋଧେ ସେଠି ରାତି ପ୍ରାୟ ଗୋଟାଏ ହୋଇଥିବ। ସେ କହିଲା - "ହଁ, ଏବେ ମୁଁ ଅଫିସରୁ ଫେରିଲି। ବୋଉକୁ ଟେଲିଫୋନ୍ ଦେଲ। ତାକୁ ମୁଁ ଶୁଭେଚ୍ଛା ଜଣାଇବି। ଆଜି ପରା 'ମାତୃ ଦିବସ' - 'ମଦରସ୍ ଡ଼େ'।"

ଇଂଲଣ୍ଡରେ କୁଆଡ଼େ ମାତୃ ଦିବସ ଭଲ ଭାବେ ପାଳିତ ହୁଏ । କାରଣ ହୁଏତ ଏଇଆ ହୋଇପାରେ, ଏଠି ମା' ନାଁରେ ଲୋକେ ପରିଚୟ ପାଆନ୍ତି। ଅଧ୍ୟୟନରୁ ଚାକିରୀ ପର୍ଯ୍ୟନ୍ତ ସବୁଠି ମା' ନାଁ କ'ଣ ପଚରାଯାଏ ? ବାପାଙ୍କ ନାଁ କେତେବେଳେ କେମିତି ପଛରେ ଆସେ।

ମାତୃ ଦିବସକୁ ମନେ ରଖିଛି ଜାଣି ପୁଅକୁ ଧନ୍ୟବାଦ ଜଣାଇଲି ଏବଂ କହିଲି ମା' କେବଳ ଗୋଟିଏ ଦିନ ପାଇଁ ନୁହେଁ; ଏହାର ଆବଶ୍ୟକତା ସବୁଦିନ ପାଇଁ ରହିବା ଉଚିତ।

ଏବେ ଏଠି ଅନେକ ଦିବସ ପାଳିତ ହେଉଛି। ବେଳେ ବେଳେ ଏ ଦିବସ ପାଳନ କେମିତି ଅସ୍ୱଭାବିକ ବି ଲାଗୁଛି। ମନେ ହେଉଛି କିଛି ଲୋକ ଏହାକୁ ନେଇ 'ସୋ' କରୁଛନ୍ତି। ଦିବସ ପାଳନରେ ପବିତ୍ରତା ରହୁନି।

ଦିବସ ପାଳନ କିଛି ନୂଆ କଥା ନୁହେଁ। ଜନ୍ମଦିନ ପାଳନ କରିବାର ପରମ୍ପରା ଅନେକ ଦିନୁ ଏଠି ରହିଛି। ମୃତ୍ୟୁ ଶ୍ରାଦ୍ଧ ବାର୍ଷିକୀ ପ୍ରାୟ ସମସ୍ତଙ୍କ ଘରେ ହୁଏ। ନିଜର ବିବାହ ବାର୍ଷିକୀ ଅନେକ ବେଶ୍ ଜାକ ଜମକରେ ପାଳନ କରନ୍ତି। ବିବାହର ପଚିଶ ବର୍ଷ ପୂର୍ତ୍ତି କିମ୍ବା ପଚାଶ ବର୍ଷ ପୂର୍ତ୍ତି ଉତ୍ସବରେ ଉନ୍ମାଦ ବି ସ୍ୱତନ୍ତ୍ର। ଏତେ ଦିନ ସ୍ୱାମୀ ସ୍ତ୍ରୀ ହୋଇ ଏକାଠି ରହିବା କିଛି କମ୍ କଥା ନୁହେଁ।

ଏଇ କିଛି ବର୍ଷ ହେଲା ଯେଉଁ ବିବାଦୀୟ ଦିବସଟି ଏକ ଉତ୍ସବ ଭାବେ ଭାରତରେ ପାଳିତ ହୋଇ ଆସୁଛି ସେ ହେଉଛି 'ଭାଲେଣ୍ଟାଇନ୍ ଡ଼େ'। ପ୍ରତିବର୍ଷ ଫେବୃୟାରୀ ଚଉଦ ତାରିଖରେ ଏ ଦିବସ ପାଳିତ ହୁଏ। ଏ ଦିବସ ପାଳନର ପ୍ରସ୍ତୁତି ନିଆରା। ଏହାର ଭାବ ବି ନିଆରା। କାରଣ ଏହା ପ୍ରେମିକ ପ୍ରେମିକାଙ୍କର ଦିବସ।

ଭାଲେଣ୍ଟାଇନ୍ ଥିଲେ ଜଣେ ଇଟାଲୀୟ ସାଧୁ। କୌଣସି ଏକ କାରଣ ଯୋଗୁଁ

ତାଙ୍କର ମୃତ୍ୟୁ ହୋଇଥିଲା। ମୃତ୍ୟୁରେ ସେ ସହୀଦ୍ ହୋଇଥିଲେ। ସେ ଥିଲେ ପ୍ରେମିକ ପ୍ରେମିକାଙ୍କର ଗୁରୁ, ଆଦର୍ଶ। ଫେବୃୟାରୀ ୧୪କୁ ପ୍ରେମର ଦିବସ କହି ପ୍ରେମିକ ପ୍ରେମିକାମାନେ ଭାଲେଣ୍ଟାଇନ୍‌କୁ ମନେ ପକାନ୍ତି।

'ଭାଲେଣ୍ଟାଇନ୍ ଡ଼େ' ପ୍ରଥମେ ଏକ ପାଶ୍ଚାତ୍ୟ ଘଟଣା ଥିଲା। ଏବେ ଏହା ଭାରତକୁ ଆସିଛି। ଭାରତୀୟ ସଂସ୍କୃତି ପ୍ରେମୀମାନେ 'ଭାଲେଣ୍ଟାଇନ୍ ଡ଼େ'କୁ ଭାରତୀୟ ସଂସ୍କୃତିର ପରିପନ୍ଥୀ ବୋଲି ଭାବନ୍ତି। କାରଣ ହେଉଛି, ଭାରତରେ ପ୍ରେମିକ ପ୍ରେମିକାଙ୍କର କିଛି ସାମାଜିକ ସ୍ୱୀକୃତି ନଥାଏ।

ପ୍ରେମ କିଛି ଖରାପ କଥା ନୁହେଁ। କିନ୍ତୁ 'ଭାଲେଣ୍ଟାଇନ୍ ଡ଼େ'ରେ ଏବଂ ପ୍ରେମ ନାଁରେ କିଛି ନକଲି ପ୍ରେମିକ ପ୍ରେମିକା ଅଶ୍ଳୀଳତା ପ୍ରଦର୍ଶନ ସାଧାରଣରେ କରନ୍ତି। ଅନେକ ରାଜନୈତିକ ଦଳ ଏଇ ଦିବସର ନିଷେଧ ପାଇଁ ତେଣୁ ଦାବୀ ଉଠେଇଲେଣି।

ବିଭିନ୍ନ ଦିବସ ପାଳନ କରିବାର ତାଲିକା ଏଠି ବଢ଼ିବାରେ ଲାଗିଛି। ମାତୃ ଦିବସ, ବୟସ୍କ ଦିବସ, ଗୁରୁ ଦିବସ, ଶିଶୁ ଦିବସ, ମହିଳା ଦିବସ, ବିକଳାଙ୍ଗ ଦିବସ ଏପରି ଅନେକ ଦିବସ ପାଳିତ ହେଲାଣି। ପୃଥିବୀର ଜାତିସଂଘ ବର୍ଷର ୩୬୫ ଦିନ ପାଇଁ ୩୬୫ଟି ଦିବସ ପାଳନର ବ୍ୟବସ୍ଥା କରି ଦେଇଛି। ଏ ସମାଜର ପ୍ରତ୍ୟେକ ବର୍ଗର ବ୍ୟକ୍ତିଙ୍କୁ ବର୍ଷର ଗୋଟିଏ ଦିନ ବିଶେଷ ଭାବେ ମନେ ପକାଇବାର ବିଧି ବାସ୍ତବତାରେ ଅନନ୍ୟ।

ବାପା, ବୋଉ, ଗୁରୁଜନ, ବୁଢ଼ା ବୁଢ଼ୀ ଏବଂ ବିକଳାଙ୍ଗଙ୍କୁ ସମ୍ମାନ ଦେବା ଏବଂ ସାହାଯ୍ୟ କରିବା ଭାରତରେ ପ୍ରତି ପଢ଼ା ବହିରେ ଲେଖାଅଛି। ବାପା ବୋଉଙ୍କୁ ସେବା କରିବା ଏଠି ଏକ ସାମାଜିକ ବାଧ୍ୟତା। ବିକଳାଙ୍ଗଙ୍କ ପ୍ରତି ଅନୁକମ୍ପା ଆଣିବା ଏଠି ଏକ ସାମାଜିକ କର୍ତ୍ତବ୍ୟ। ତେବେ ଏଇ କର୍ତ୍ତବ୍ୟ ପାଳନ ପାଇଁ ଏକ ନିର୍ଦ୍ଦିଷ୍ଟ ଏବଂ ସ୍ୱତନ୍ତ୍ର ଦିବସ କାହିଁକି ବୋଲି ପ୍ରଶ୍ନ ଆସେ। ଏ ପ୍ରଶ୍ନର ଉତ୍ତରରେ କିଛି କାରଣ ଦିଆଯାଏ। ପ୍ରଥମ କାରଣରେ କୁହାଯାଏ - ନିଜକୁ ଛାଡ଼ିଦେଲେ ଏଠି ଆହୁରି ଅନେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଏ ସମାଜର ଗୋଟିଏ ଗୋଟିଏ ଅଂଶ। ଏମାନଙ୍କ ପ୍ରତି ସ୍ୱତନ୍ତ୍ର ସମ୍ମାନ ଦରକାର। ଏମାନଙ୍କ ପ୍ରତି ସ୍ୱତନ୍ତ୍ର ଭାବେ ସମ୍ବେଦନଶୀଳ ହେବା ବି ଉଚିତ ଏବଂ ସେଥିପାଇଁ ଏକ ନିର୍ଦ୍ଦିଷ୍ଟ ଦିନ ରହିବା ବି ବିଧେୟ, ଯେଉଁ ଦିନରେ ସମସ୍ତଙ୍କୁ ମନେ ପକାଯାଇ ପାରିବ।

ଏ ସମ୍ପର୍କରେ ଅନ୍ୟ ଏକ ବିଶ୍ଳେଷଣ ମଧ୍ୟ ଆସେ। ଆମେ ସମସ୍ତେ ଏଠି ବେଶ୍ ସ୍ୱାର୍ଥପର ହୋଇଗଲାଣୁ। ନିଜ ବ୍ୟତୀତ ଅନ୍ୟ କାହା କଥା ଚିନ୍ତା କରିବାକୁ ଆମ ପାଖରେ ଆଉ ସମୟ ନାହିଁ। ଯୌଥ ପରିବାର ଥିବାବେଳେ ବାପା ମା'ଙ୍କ କଥା ନଜରକୁ ଆସୁଥିଲା। ବୁଢ଼ାବେଳେ ଜେଜେ, ଜେଜେ ମା'ଙ୍କ ପ୍ରତି ସେବା ନେଇ ବିଶେଷ ଆଗ୍ରହ ଥିଲା। ଏ ସବୁର ଏବେ ଆଉ ଅବକାଶ ନାହିଁ। କାରଣ ଏଠି ଆଉ

ଯୌଥ ପରିବାର ନାହିଁ। ଏହା ବଦଳରେ ଏକକ ଆଣବିକ ପରିବାରଟିଏ ଜନ୍ମ ନେଇ ସାରିଲାଣି। ଯେଉଁଠି ସ୍ୱାମୀ, ସ୍ତ୍ରୀ ଏବଂ ନିଜ ପିଲାଙ୍କୁ ନେଇ ସଂସାର ଗଢ଼ାହୁଏ ଏବଂ ଚାଲେ।

ସଂପ୍ରତି ପୁଣି ଏଇ ଆଣବିକ ପରିବାର ଭାଙ୍ଗିବାକୁ ବସିଲାଣି। ଏକାକୀ ନିସଂଗ ରହିବା ଏବେ ଏକ ନୂଆ ତତ୍ତ୍ୱ। ଏହାକୁ 'ମି ଫାକ୍ଟର' କୁହାଯାଉଛି। ସମ୍ଭବତଃ ସେଇଥିପାଇଁ ବାପା, ବୋଉ, ବୟସ୍କ, ଶିକ୍ଷକ, ଶିଶୁଙ୍କୁ ମନେ ପକାଇବା ନିମନ୍ତେ ବର୍ଷକର ଗୋଟିଏ ଦିନ ବ୍ୟବସ୍ଥା ହୋଇଛି।

ଦିବସ ପାଳନ କରିବା ତେଣୁ ଭଲ କଥା। ଅଥଚ ଏପରି ଦିବସ ପାଳନ ଅନେକ ସମୟରେ ପରିହାସଟିଏ ହୋଇଯାଉଛି। ଶିଶୁ ଦିବସ, ଗୁରୁ ଦିବସ ଏପରି ଅନେକ ଦିବସ ଆଉ ସ୍ଥିରିକୃତ ଦିବସରେ ପାଳିତ ହେଉନି। କିଛି ବାହାନା ଦେଖାଇ ଏହାର ତାରିଖ ଘୁଞ୍ଚୁଛି। ମନେ ପକାଇବାକୁ ଯଦି ଇଚ୍ଛା ନାହିଁ ଦିବସ ପାଳନ ବନ୍ଦ ହେବା ଦରକାର। କାରଣ ଏଥିରେ ଶ୍ରଦ୍ଧା ଆଉ ସମ୍ମାନ ଅପେକ୍ଷା ତାଚ୍ଛଲ୍ୟ ବେଶି ଥାଏ ବୋଲି ପ୍ରତୀୟମାନ ହୁଏ।

ଦିବସ ପାଳନର ଅନ୍ୟ ଏକ ଦିଗ ମଧ୍ୟ ଆଲୋଚନାକୁ ଆସେ। ଅଭିଯୋଗ ହୁଏ, ଏଠି ଏବେ ଅନେକ ଦିବସ ବଡ଼ ଆକାରରେ ପାଳିତ ହେଉଛି ଏଇଥିପାଇଁ ଯେ ଏପରି କରିବାକୁ ବ୍ୟବସାୟୀ ମାନେ ବେଶି ତତ୍ପର ହେଉଛନ୍ତି। ଏଇ ଯେପରି 'ଭାଲେଣ୍ଟାଇନ୍ ଡ଼େ'। ଭାଲେଣ୍ଟାଇନ୍ ଡ଼େ ଆସିଲେ ଶୁଭେଚ୍ଛା ପତ୍ରର ଆଦାନ ପ୍ରଦାନ ହୁଏ। ଉପହାର ଦିଆଯାଏ। ମିଠା ବଜାର ଜମେ। ଉତ୍ସବରେ ଆଉ ନିଷ୍ଠା ବେଶି ନାହିଁ। ପ୍ରକୃତରେ ଏଥିରେ ବ୍ୟବସାୟ ବେଶି। ମାର୍କେଟ ଏବଂ ଦିବସ ପାଳନ ଉତ୍ସବ ପରସ୍ପର ଏବେ ସଂଶ୍ଳିଷ୍ଟ। କାରଣ ଇଏ ଏବେ ବଜାରବାଦର ଯୁଗ। ଏଇ ଯେମିତି ଏବେ ଭାଲେଣ୍ଟାଇନ୍ ଡ଼େ'ର ସାତ ଦିନ ପୂର୍ବରୁ ଦିବସ ପାଳନ ଉତ୍ସବ ଆରମ୍ଭ ହୋଇଯାଉଛି। ଫେବୃୟାରୀ ସାତ ତାରିଖରେ ରୋଜ ଡ଼େ', ଆଠ ତାରିଖରେ ପ୍ରପୋଜ୍ ଡ଼େ, ନଅ ତାରିଖରେ ଚକଲେଟ୍ ଡ଼େ, ଦଶ ତାରିଖରେ ଟେଡ଼ି ଡ଼େ', ଏଗାର ତାରିଖରେ ପ୍ରୋମିସ୍ ଡ଼େ', ବାର ତାରିଖରେ ହଗ୍ ଡ଼େ', ତେର ତାରିଖରେ କିସ୍ ଡ଼େ' ଏବଂ ଚଉଦ ତାରିଖରେ ଭାଲେଣ୍ଟାଇନ ଡ଼େ'। ଭଲ ବ୍ୟବସାୟ ପାଇଁ ବ୍ୟବସାୟୀ କର୍ପୋରେଟ୍ ହାଉସ୍ ଏହାକୁ ଭଲ ପ୍ୟାକେଜିଂ କରିସାରିଲେଣି।

ହଁ, ଏ ଆଲୋଚନାର ଏ ଶେଷକଥା। ଦିବସ ପାଳନ ଏକ ଭଲ ପରମ୍ପରା। ଉତ୍ତମ ବିଧି। ଏ ସମାଜର ପ୍ରତି ବର୍ଗର ଲୋକଙ୍କୁ ଯେ ଆମେ ମନେ ରଖିଛୁ ଏଇଥିରୁ ହିଁ ଆଭାସ ମିଳେ। ଏହା ଏକ ପୂର୍ଣ୍ଣାଙ୍ଗ ସମାଜର ବି ସୂଚନା ଦିଏ। ଇଂରାଜୀରେ ଏହାକୁ ଇନ୍‌କ୍ଲୁସିଭ୍ ସୋସାଇଟି ବୋଲି କୁହାଯାଏ। ଏପରି ଏକ ସମାଜ ଗଠନ ପାଇଁ ପୃଥିବୀ ସାରା ସଚେତନତା ସୃଷ୍ଟି ହେଲାଣି। ଆମେ ବାଦ୍ ଯିବା କାହିଁକି ?

# ନେତାଙ୍କ ଜନ୍ମଦିନ ଉତ୍ସବ

ଏହି କିଛି ବର୍ଷ ଧରି ଭାରତରେ ବଡ଼ ବଡ଼ ରାଜନେତାଙ୍କ ଜନ୍ମଦିନ ଆଉ ବ୍ୟକ୍ତିଗତ ଘଟଣା ହୋଇ ରହିନାହିଁ। ଏହା ସାର୍ବଜନୀନ ହୋଇଗଲାଣି। ଏଥିପାଇଁ ସରକାରୀ ଖର୍ଚ୍ଚରେ ବିଜ୍ଞାପନ ଦିଆଯାଉଛି। ଲାଇଫ୍ ସାଇଜ୍ ହୋଡ଼ିଂ ସର୍ବସାଧାରଣ ସ୍ଥାନରେ ଲଗାଯାଉଛି ଏବଂ ଅନେକ ଟି.ଭି. ଚାନେଲ ବିଦ୍ୱାନମାନଙ୍କୁ ଡ଼ାକି ଆଲୋଚନାମାନ ଆୟୋଜନ କରୁଛନ୍ତି।

ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ତଥା ବହୁଜନ ସମାଜ ପାର୍ଟିର ମୁଖ୍ୟ ମାୟାବତୀଙ୍କ ଜନ୍ମଦିନ ଏଇ ଅଳ୍ପଦିନ ତଳେ ଚର୍ଚ୍ଚାରେ ଥିଲା। ଏ ଚର୍ଚ୍ଚା ବି ସରିନି। ସମ୍ବାଦ ଯାହା, ମାୟାଙ୍କ ଜନ୍ମଦିନ ଉତ୍ସବ ପାଇଁ ଚାନ୍ଦା ଆଦାୟ କରିବାକୁ ଯାଇ ଉତ୍ତରପ୍ରଦେଶରେ ଏକ ଅପ୍ରିତିକର ଘଟଣା ବି ଘଟିଗଲା। ବି.ଏସ୍.ପି.ର ଜଣେ ବିଧାୟକ ସେଠାର ଜଣେ ପି.ଡ଼ବ୍ଲୁ.ଡ଼ି. ଇଞ୍ଜିନିୟରଙ୍କ ଠାରୁ ପଚାଶ ଲକ୍ଷ ଟଙ୍କା ଚାନ୍ଦା ମାଗିଲେ। ଇଞ୍ଜିନିୟର ଏହା ଦେବାକୁ ମନା କରିଦେବାରୁ ବିଧାୟକ ନିଜେ ତାଙ୍କ ସମର୍ଥକମାନଙ୍କ ସହ ଯାଇ ଇଞ୍ଜିନିୟରଙ୍କୁ ପିଟି ପିଟି ମାରିଦେଲେ। ଏହା ମଧ୍ୟ ଖବର ଆସେ, ମାୟାଙ୍କ ଜନ୍ମଦିନରେ ତାଙ୍କୁ ଏକ ହଜାର କୋଟି ଟଙ୍କାର ଭେଟି ଦେବାକୁ କୁଆଡ଼େ ନିର୍ଦ୍ଦେଶ ଥିଲା। ତେବେ ମାୟାଙ୍କ ଜନ୍ମଦିନ ଉତ୍ସବ ଧୂମଧାମରେ ପାଳିତ ହେବାର ଖବର ଗତ ବର୍ଷ ମାନଙ୍କରେ ମଧ୍ୟ ଆସୁଥିଲା। ୨୦୦୯ରେ ଏହା ଗୁରୁତ୍ୱପୂର୍ଣ୍ଣ ଥିଲା ଏଇଥି ପାଇଁ ଯେ, ସେବର୍ଷ ଲୋକସଭା ପାଇଁ ନିର୍ବାଚନ ହେବାର ଥିଲା ଏବଂ ସୁଶ୍ରୀ ମାୟାବତୀ ଜଣେ ପ୍ରଧାନମନ୍ତ୍ରୀ ପ୍ରାର୍ଥୀ ଥିଲେ।

ଭାରତୀୟ ଜାତୀୟ କଂଗ୍ରେସର ମୁଖ୍ୟ ସୋନିଆ ଗାନ୍ଧିଙ୍କର ଜନ୍ମଦିନ ଏଇ ଡିସେମ୍ବରରେ ପାଳିତ ହୋଇ ସାରିଛି। ଏହା ନିରାଡ଼ମ୍ବରରେ ପାଳିତ ହେବ ବୋଲି ମାଡ଼ାମଙ୍କର ତାଗିଦ୍ ଆସିଥିଲା। ତଥାପି ଜନ୍ମଦିନର ସକାଳୁ ସକାଳୁ ସୋନିଆଙ୍କ ଦର୍ଶନ ପାଇଁ ଜନପଥରେ ଶୁଭେଚ୍ଛୁଙ୍କର ଲମ୍ବା ଧାଡ଼ି ଲାଗି ଯାଇଥିଲା ଏବଂ ଫୁଲତୋଡ଼ାର ବିପ୍ପଣୀ ବସିଥିଲା ବୋଲି ସମ୍ବାଦ ଆସିଥିଲା।

ଏନ୍.ଡ଼ି.ଏ. ଶାସନ ବେଳେ ବି ଅଟଳ ବିହାରୀ ବାଜପେୟୀଙ୍କ ଜନ୍ମଦିନ ପାଳନ ବେଳେ ହୋଇଥିବା ଦଳାଚକଟା ଖବର ବେଶ କିଛିଦିନ ଏଠି ଚର୍ଚ୍ଚାରେ ଥିଲା। ମହିଳାଙ୍କୁ ଶାଢ଼ୀ ବାଣ୍ଟିବା ସମୟରେ ଏହି ଦଳାଚକଟା ହୋଇଥିଲା ଏବଂ ଅନେକ ମହିଳାଙ୍କ

ଏଥିରେ ମୃତ୍ୟୁ ହୋଇଥିଲା।

ଭାରତରେ ଏଇ କିଛି ନିର୍ଦ୍ଦିଷ୍ଟ ନେତାଙ୍କ ଜନ୍ମଦିନ ଉତ୍ସବ କେବଳ ଧୂମଧାମରେ ପାଳିତ ହୁଏନି; ଦେଶର ପ୍ରାୟ ସବୁ ପ୍ରମୁଖ ଦଳର ମୁଖ୍ୟ ନେତାଙ୍କ ଜନ୍ମଦିନ ଗଣ ଉତ୍ସବ ଭାବେ ପାଳନ କରାଯାଉଛି। କେଉଁଠି ମୋଗଲାଇ ଇ.ଆଜାମ୍ କାଇଦାରେ ମଞ୍ଚ ତିଆରି କରାଯାଇ ନେତାଙ୍କୁ ସେଠାରେ ବସାଇ ସମ୍ବର୍ଦ୍ଧନା ଦିଆଯାଉଛି ତ, କେଉଁଠି ନେତାଙ୍କ ଓଜନର ସୁନା କିମ୍ବା ରୂପା ଉପହାର ଦିଆଯାଉଛି।

ନେତାଙ୍କ ଜନ୍ମଦିନ ଉତ୍ସବ ଏପରି ପାଳିତ ହେବାର ଧାରା ଏଇ ମାତ୍ର ପଣିଚ ତିରିଶ ବର୍ଷ ତଳୁ ଆସିଛି। ସ୍ୱାଧୀନତା ସଂଗ୍ରାମ ବେଳେ ସେତେବେଳର ପ୍ରମୁଖ ନେତାଙ୍କ ଜନ୍ମଦିନ କେବେ ପଡୁଥିଲା କର୍ମୀମାନେ ଜାଣି ନଥିଲେ, କିମ୍ବା ଜାଣି ଜାଣି ତାଙ୍କୁ ଜଣାଇ ଦିଆଯାଉ ନଥିଲା। ନେତାଙ୍କ ଆଦର୍ଶ ଏବଂ କାର୍ଯ୍ୟକ୍ରମ ଉପରେ କର୍ମୀମାନେ କେବଳ ଗୁରୁତ୍ୱ ଦେଉଥିଲେ ଏବଂ ତାହାର ପ୍ରଚାର କରୁଥିଲେ। ସ୍ୱାଧୀନତା ପରେ ଅବଶ୍ୟ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହାର ଲାଲ ନେହେରୁଙ୍କ ଜନ୍ମଦିନ ଉତ୍ସବ ପାଳିତ ହେଲା। ଏହା କିନ୍ତୁ ପିଲାଙ୍କ ଗହଣରେ ହେଉଥିଲା ଏବଂ ଏହାର ନାଁ ଦିଆଯାଇଥିଲା 'ଶିଶୁ ଦିବସ'।

ଏବେ ଜଣେ ନେତାଙ୍କ ଜନ୍ମ ଦିବସରେ ଲମ୍ବା ଧାଡ଼ିରେ ଯାଇ ଅନେକ ସମୟ ପରେ ନେତାଙ୍କୁ ଦର୍ଶନ କରି ଫେରିବା ପରେ ଜଣେ କର୍ମୀ ସଫେଇ ଦେଇ କହିଲେ - ଜନ୍ମଦିନରେ କାହାକୁ ଶୁଭେଚ୍ଛା ଦେବା ଖରାପ କଥା ନୁହେଁ। ଏହା ଭକ୍ତିର ନିଦର୍ଶନ। ଯେ କୌଣସି ଧର୍ମରେ ମଧ୍ୟ ଭକ୍ତିଭାବ ଥାଏ। ନିଜ ପ୍ରିୟ ଲୋକଙ୍କୁ ଦର୍ଶନ କରି ତାଙ୍କର ଦୀର୍ଘ ଜୀବନ କାମନା କରିବା ଭାରତର ଏହା ଏକ ଭଲ ପରମ୍ପରା।

ଏପରି ଯୁକ୍ତିକୁ ପୂର୍ଣ୍ଣଭାବେ ପ୍ରତ୍ୟାଖ୍ୟାନ କରି ହେବନି। ଏହା ସତ ବି ହୋଇପାରେ। କିନ୍ତୁ ଅସଲ କଥା ହେଲା, ନେତାଙ୍କ ଜନ୍ମଦିନ ଉତ୍ସବରେ ଉପସ୍ଥିତ ଥିବା ସମସ୍ତ ବ୍ୟକ୍ତି 'ଭକ୍ତ' ନା 'ତୋଷାମଦକାରୀ' ଜାଣିବା କଷ୍ଟ। ଭକ୍ତି ଏବଂ ତୋଷାମଦ ଭିତରେ ଥିବା ପ୍ରାର୍ଥକ୍ୟ ଅବଶ୍ୟ ଜାଣି ହୁଏନାହିଁ।

ତୋଷାମଦ ଓ ଚାଟୁକାରିତା ଏକ ଭୟଙ୍କର ଅଭ୍ୟାସ। ଭାରତରେ ଏଇ ଅଭ୍ୟାସ ଗତ ସତୁରି ଦଶନ୍ଧିରୁ ଚାଲିଆସୁଛି। ସ୍ପଷ୍ଟ କହିଲେ ଏହା ଇନ୍ଦିରା ଗାନ୍ଧିଙ୍କ ଅମଳରୁ ହିଁ ସୃଷ୍ଟି। ବଙ୍ଗଳା ଦେଶ ଯୁଦ୍ଧରେ ଭାରତ ଜିତି ସାରିବା ପରେ ଇନ୍ଦିରାଙ୍କ ଜନପ୍ରିୟତା ଏଠି ବେଶ ଅଧିକ ବଢ଼ିଯାଇଥିଲା। ଭାରତର ଅନ୍ୟ ନେତାଙ୍କ ଠାରୁ ଇନ୍ଦିରାଙ୍କ କରିସ୍ମା ବି ଅଧିକ ଥିଲା। ଅନେକ ଲୋକ ତାଙ୍କୁ ମା' ଦୁର୍ଗା କହି ପୂଜା କରୁଥିଲେ ଏବଂ ଅନେକ ସମର୍ଥକ ମଧ୍ୟ ଇନ୍ଦିରାଙ୍କୁ ଇଣ୍ଡିଆ କହିବାକୁ କୁଣ୍ଠାବୋଧ କରୁନଥିଲେ। ଏହା ସେତେବେଳେ ଜାଣି ଜାଣି କରାଯାଇଥିଲା ବୋଲି ବିଶ୍ଳେଷଣରେ ଆସେ ଏବଂ କେତେକ ନେତାଙ୍କ

ଜନପ୍ରିୟତାକୁ କିପରି ସଫଳ ପରିଚାଳନା କରିବାକୁ ହୁଏ ଏ ସୂଚନା ଇନ୍ଦିରାଙ୍କ ସମର୍ଥକମାନେ ସତୁରି ଦଶକରୁ ଏଠି ଦେଇ ସାରିଛନ୍ତି।

ନେତାଙ୍କ ଜନ୍ମଦିନକୁ ଏକ ଗଣଉତ୍ସବ ଭାବେ କାହିଁକି ପାଳନ କରାଯାଉଛି ବୋଲି ସ୍ୱାଭାବିକ ପ୍ରଶ୍ନ ମଧ୍ୟ ଆସୁଛି। ଉତ୍ତର ହେଲା- ଭାରତରେ ଗଣତନ୍ତ୍ରର ସ୍ୱରୂପ ବଦଳିବାକୁ ଲାଗିଛି। ନିର୍ବାଚନୀ ରାଜନୀତିର ଧାରାରେ ପରିବର୍ତ୍ତନ ଆସିଛି। ଏଠି ନିର୍ବାଚନ ଜିତିବା ପାଇଁ ଉପାୟମାନ ଅହରହ ଖୋଜା ଚାଲିଛି। ରାଜନୀତି ଏଠି ତେଣୁ ଉପଭୋକ୍ତାବାଦୀ ସଂସ୍କୃତିରେ ପ୍ରଭାବିତ ହେଉଛି। ସ୍ପଷ୍ଟ କହିଲେ ଭାରତରେ ଏବେ "ବ୍ରାଣ୍ଡ ରାଜନୀତି" ଚାଲିଛି। ଏ ରାଜନୀତି ହେଉଛି ଯେଉଁଠି ନେତାଙ୍କ କରିସ୍ମା ତଥା ଜନପ୍ରିୟତାକୁ ଏକ ପଣ୍ୟଦ୍ରବ୍ୟ କରି ବଜାରରେ ବିକାଯାଏ ଏବଂ ଏଥିନେଇ ଭୋଟ ସଂଗ୍ରହ କରାଯାଏ। ଏହା 'ସେଲେବିଲିଟି'ର କଥା। ନେତାଙ୍କ ଜନ୍ମଦିନ ଯେ ଏଥିପାଇଁ ଏକ ବଡ଼ ମାଧ୍ୟମ, ଏଇ ଧାରଣା ଏବେ ସୃଷ୍ଟି ହୋଇସାରିଛି।

ଜନ୍ମଦିନକୁ ସାର୍ବଜନୀନ ଉତ୍ସବଟିଏ କରିଦେବାକୁ ଭାରତୀୟ ମିଡ଼ିଆ ବି ଦାୟୀ। ପ୍ରତ୍ୟେକ ମିଡ଼ିଆ ସଂସ୍ଥା ତାର ଦର୍ଶକ, ଶ୍ରୋତା, ପାଠକ ସୃଷ୍ଟି କରି ଟି.ଆର୍.ପି. ବଢ଼ାଇବାକୁ ଚାହେଁ, ଏବଂ ଟି.ଆର.ପି. ବଢ଼ିଲେ ଅଧିକ ବିଜ୍ଞାପନ ମିଳିବାର ସୁଯୋଗ ଥାଏ।

ହଁ ଏ ଆଲୋଚନାର ଏ ଶେଷକଥା - ଜନ୍ମଦିନ ଏକ ବ୍ୟକ୍ତିଗତ ଘଟଣା। ଏହା ବ୍ୟକ୍ତିଗତ ସ୍ତରରେ ରହିବା ବି ଉଚିତ। ସରକାରୀ ଖର୍ଚ୍ଚରେ ପାଳିତ ହେଉଥିବା ନେତାଙ୍କ ଜନ୍ମଦିନ ଉତ୍ସବ ଗଣତନ୍ତ୍ର ପାଇଁ ଶୁଭଙ୍କର ନୁହେଁ। ତୋଷାମଦରେ ଯେଉଁଠି ରାଜନୀତି ଚାଲେ ସେ ରାଜନୀତି ଭୟଙ୍କର ହୋଇଥାଏ। ପୃଥିବୀର ସମସ୍ତ ଏକଛତ୍ରବାଦୀ ଘଟଣା ଏହି ରାଜନୈତିକ ତୋଷାମଦରୁ ହିଁ ସୃଷ୍ଟି ହୋଇଛି।

ସରକାରୀ ଖର୍ଚ୍ଚରେ ହେଉଥିବା ନେତାଙ୍କ ଜନ୍ମଦିନ ଉତ୍ସବରେ ତେଣୁ କଟକଣା ରହିବା ଉଚିତ।



# ଜାତୀୟ ଦଳଙ୍କ ଭବିଷ୍ୟତ

ଏଇ କିଛିଦିନ ଧରି ଖବରଟି, ବାରମ୍ବାର ପ୍ରକାଶ ପାଉଛି । ସେ ହେଉଛି, ଓଡ଼ିଶାରେ ଭାରତୀୟ ଜନତା ପାର୍ଟି କୌଣସି ଏକ ଛୋଟ ଆଞ୍ଚଳିକ ଦଳ ସହ ମେଣ୍ଟ କରିପାରେ । ବାସ୍ତବରେ ଏ ଖବରଟି ବେଶ୍ କ୍ଷୁଦ୍ର ହେଲେ ବି ଏହା ଏକ ବିଶେଷ ରାଜନୈତିକ ଗୁରୁତ୍ୱ ହିଁ ବହନ କରେ ।

ଭାରତୀୟ ଜନତା ପାର୍ଟି ହେଉଛି ଏକ ଜାତୀୟ ରାଜନୈତିକ ଦଳ । ଭାରତର ଅନ୍ୟ ରାଜନୈତିକ ଦଳ ପରି ଏହାର ଏକ ପ୍ରତିଷ୍ଠା ବି ରହିଛି ।

ଗୋଟିଏ ରାଜନୈତିକ ଦଳକୁ ଏକ ଜାତୀୟ ରାଜନୈତିକ ଦଳର ମାନ୍ୟତା ପାଇବାକୁ ହେଲେ ଭାରତର ନିର୍ବାଚନ ଆୟୁକ୍ତ କିଛି ଆବଶ୍ୟକୀୟ ସର୍ତ୍ତ ରଖିଛନ୍ତି । ଏ ସର୍ତ୍ତରେ ଅଛି, ଦଳଟିଏ ଗୋଟିଏ ରାଜ୍ୟରେ କୌଣସି ସାଧାରଣ ନିର୍ବାଚନରେ ସମୁଦାୟ ସଂଗୃହୀତ ଭୋଟର ଅନ୍ୟୁନ ୪ପ୍ରତିଶତ ଭୋଟ ପାଇବା ଦରକାର ଏବଂ ଭାରତର ଅନ୍ୟୁନ ୪ଟି ରାଜ୍ୟରେ ଏଇ ହାରରେ ଏ ଦଳର ଭୋଟ ସଂଖ୍ୟା ରହିବା ଉଚିତ୍ । ଏହି ଆବଶ୍ୟକତା ପୂରଣ କରିଥିବା ହେତୁ ଭାରତୀୟ ଜାତୀୟ କଂଗ୍ରେସ, ଭାରତୀୟ ଜନତା ପାଟି, ସି.ପି.ଏମ୍. ତଥା ସି.ପି.ଆଇ. ହେଉଛନ୍ତି ଏ ଦେଶର ଜାତୀୟ ରାଜନୈତିକ ଦଳ ଏବଂ ଜାତୀୟ ମାନ୍ୟତା ପାଇବା ପାଇଁ ଏନ୍.ସି.ପି., ସମାଜବାଦୀ ପାର୍ଟି ଓ ବି.ଏସ୍.ପି. ଏବେ ପ୍ରୟାସରେ ଅଛନ୍ତି । ଏସବୁ ରାଜନୈତିକ ଦଳ ଯେ, ନିର୍ବାଚନ କମିଶନଙ୍କ ଆଇନଗତ ସ୍ୱୀକୃତି ପରେ ବାସ୍ତବରେ ଭାରତ ସାରା ନିଜର ପ୍ରଭାବ କେତେ ବିସ୍ତାର କରି ପାରିଛନ୍ତି, ଏହା ଏବେ ଏକ ବଡ଼ ପ୍ରଶ୍ନବାଚୀ ।

ଭାରତରେ ଥିବା ରାଜ୍ୟ ସଂଖ୍ୟା ହେଉଛି ସମୁଦାୟ ଅଣତିରିଶ ଏବଂ କେନ୍ଦ୍ର ଶାସିତ ଅଞ୍ଚଳ ହେଉଛି ସାତ । ଏ ଦେଶର ମୋଟ ଛତିଶି ୟୁନିଟ ଭିତରୁ କଂଗ୍ରେସ ଏବେ ୧୦ଟି ରାଜ୍ୟରେ ସିଧାସଳଖ ଶାସନ କରୁଛି । ଭାରତୀୟ ଜନତା ପାର୍ଟି ଏକାକୀ ଶାସନ କରୁଛି ମାତ୍ର ଛଅଟି ରାଜ୍ୟରେ ଏବଂ ଅନ୍ୟ ଦୁଇଟି ରାଜ୍ୟରେ ଏହା ମେଣ୍ଟ ଶାସନର ପାର୍ଟନର୍ ରହିଛି । ସି.ପି.ଏମ୍.ର ଶାସନ ମାତ୍ର ଗୋଟିଏ ରାଜ୍ୟରେ ଅଛି ଏବଂ ସି.ପି.ଆଇ.ର ପ୍ରତ୍ୟକ୍ଷ ଶାସନ ଭାରତର କୌଣସି ପ୍ରଦେଶରେ ଏବେ ନାହିଁ । ସୁତରାଂ ଭାରତର ଜାତୀୟ ରାଜନୈତିକ ଦଳର ମାନ୍ୟତା ପାଇଥିବା ଏଇ ରାଜନୈତିକ ଦଳମାନେ ୯ ଦେଶର ଏକତୃତୀୟାଂଶ ରାଜ୍ୟରେ ବି ଶାସନ କରୁ ନାହାନ୍ତି ।

ଭାରତୀୟ ରାଜନୀତିରେ ଏପରି ବିଖଣ୍ଡିତ ଅବସ୍ଥା ପୂର୍ବରୁ କେବେ ଦେଖା ଯାଇନଥିଲା । ୧୯୮୯ ମସିହା ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସ କେନ୍ଦ୍ରରେ ନିରଙ୍କୁଶ ଶାସନ କରୁଥିଲା ଏବଂ ଦେଶର ଅଧିକାଂଶ ରାଜ୍ୟରେ ଏହି ଦଳର ଏକାକୀ ଶାସନ ଥିଲା । କଂଗ୍ରେସ ଯେ, ସେବେ ଏକ ପ୍ରକୃତ ଜାତୀୟ ଦଳ ଥିଲା, ଏକଥା କହିବାରେ କାହାର କୁଣ୍ଠା ନଥିଲା । ୧୯୭୭ ମସିହାରେ ଯଦିଓ ପ୍ରଥମ ଅଣକଂଗ୍ରେସ ଦଳ ଭାବେ ଜନତାପାର୍ଟିର ଏହି ଦେଶରେ ଶାସନ ଥିଲା, ଏହା କିନ୍ତୁ ମେଣ୍ଟ ସରକାର ନଥିଲା । କାରଣ ୧୯୭୭ ନିର୍ବାଚନରେ ବିଭିନ୍ନ ଦଳରୁ ଆସି ଜନତା ପାର୍ଟି ତିଆରି କରିଥିବା ଦଳମାନେ ଗୋଟିଏ ନିର୍ବାଚନ ସଂକେତରେ ଭୋଟ ଲଢ଼ି ଥିଲେ ।

୧୯୮୯ ମସିହାରେ ଭି.ପି.ସିଂହଙ୍କ ଶାସନ ବେଳେ ଅର୍ଥାତ୍ ଏକାଦଶ ଲୋକସଭାରେ ବିଭିନ୍ନ ରାଜନୈତିକ ଦଳର ସଂଖ୍ୟା ଥିଲା ୧୮ । ଚଳିତ ୨୦୦୯ ଲୋକସଭାରେ ଦଳର ସଂଖ୍ୟା ୩୮ରେ ପହଁଞ୍ଚିଛି ଏବଂ ଆସନ୍ତା ଲୋକସଭା ନିର୍ବାଚନରେ ଏହି ସଂଖ୍ୟା ହୁଏତ ଆହୁରି ବଢ଼ି ଯାଇପାରେ । କୌଣସି ଗୋଟିଏ ରାଜନୈତିକ ଦଳ ଯେ ଆଉ ଏଣିକି ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ପାଇବ ନାହିଁ ଏବଂ ଆସନ୍ତା ନିର୍ବାଚନ ପରେ ପୁଣି ଏକ ମେଣ୍ଟ ସରକାର ଏଠି ଗଠିତ ହେବ, ଏପରି ପ୍ରାକ୍ ସୂଚନା ସର୍ବେକ୍ଷଣ କରୁଥିବା ସଂସ୍ଥାମାନେ ଦେଇଦେଲେଣି । ସ୍ପଷ୍ଟ କହିଲେ, ଭାରତର ଜାତୀୟ ରାଜନୈତିକ ଦଳମାନଙ୍କର ଭବିଷ୍ୟତ ଏତେ ଆଉ ଭଲ ନାହିଁ ।

ସୁତରାଂ ପ୍ରଶ୍ନ ଆସେ, ଏ ଦେଶର ଜାତୀୟ ଦଳମାନଙ୍କର ଜାତୀୟ ଚରିତ୍ର ଦୃଢ଼ ରହୁନାହିଁ କାହିଁକି ? ଉତ୍ତର ହେଉଛି, ଜାତୀୟ ଦଳମାନଙ୍କର ଆଉ କରିସ୍ମାପୂର୍ଣ୍ଣ ନେତା ନାହାନ୍ତି, ଯାହାଙ୍କର ଜାତୀୟ ଛବି ବିକି ଏ ଦଳ ଦେଶସାରା ଭୋଟ ପାଇପାରିବ ଏବଂ ଦ୍ୱିତୀୟ କଥାଟି ହେଲା, ଜାତୀୟ ଦଳ ଭାବେ ଦେଉଥିବା ପ୍ରତିଶ୍ରୁତି ଏହି ଦଳମାନେ ପାଳନ କରୁନାହାନ୍ତି । ଅପର ପକ୍ଷରେ ଅନେକ ଆଞ୍ଚଳିକ ଦଳ ଆଞ୍ଚଳିକ ପ୍ରସଙ୍ଗ ନେଇ ଭୋଟ ଲଢୁଛନ୍ତି ଏବଂ ସେଇଥିପାଇଁ, ଭାରତୀୟ ନିର୍ବାଚନୀ ରାଜନୀତି ଜାତି, ଅଞ୍ଚଳକୁ ଆଧାର କରି ବିଖଣ୍ଡିତ ହୋଇଯାଇଛି ।

ଗତ ଦୁଇ ଦଶନ୍ଧି ଭିତରେ ଲୋକସଭାରେ ସଂଖ୍ୟାଗରିଷ୍ଠତା ନପାଇ ଭାରତର ଜାତୀୟ ଦଳମାନେ ଆଞ୍ଚଳିକ କ୍ଷୁଦ୍ର ଦଳମାନଙ୍କ ସହ ମିଶି ଯେଉଁ ମେଣ୍ଟ ସରକାର ଗଠନ କରୁଛନ୍ତି ଏହାର ଅନୁଭୁତି ବେଶ ତିକ୍ତ । ଆଞ୍ଚଳିକ ଦଳମାନଙ୍କର ଅଧିକାଂଶ କ୍ଷେତ୍ରରେ ଜାତୀୟ ଦୃଷ୍ଟି ଭଙ୍ଗୀ ବା ଭିଜନ ରହୁନାହିଁ । ଆଞ୍ଚଳିକ ପ୍ରସଙ୍ଗ ଏବଂ ନିଜର ଭୋଟ ବ୍ୟାଙ୍କ ଉପରେ ଏମାନେ ଗୁରୁତ୍ୱ ଦେଉଛନ୍ତି । ଅନେକ ସମୟରେ ତ ଆଞ୍ଚଳିକ ଦଳମାନେ ସରକାରର ନେତୃତ୍ୱ ନେଉଥିବା ଦଳକୁ ବ୍ଲାକମେଲିଂ କରୁଛନ୍ତି ଏବଂ ସମର୍ଥନ ପ୍ରତ୍ୟାହାର କରିବାକୁ ବାରମ୍ବାର ଧମକ ଦେଉଛନ୍ତି । ବାଜପେୟୀଙ୍କ ସରକାର ବେଳେ କ୍ଷୁଦ୍ର ଦଳମାନେ ଏହି ପ୍ରକ୍ରୀୟାରେ ଥିଲେ ଏବଂ ଏବେ ଏଲ୍.ଟି.ଟି.ଇ. ପ୍ରସଙ୍ଗରେ ଡ଼ି.ଏମ୍.କେ. ଡ଼ଃ

ମନମୋହନ ସିଂହ ସରକାରକୁ ସେଇ ଧମକ ଦେଲେ। ସୁତରାଂ ରାଜନୈତିକ ଅସ୍ଥିରତା ପାଇଁ ଦୁର୍ବଳ ଜାତୀୟ ଦଳ ହିଁ ଦାୟୀ ଏବଂ ଜାତୀୟ ଅଖଣ୍ଡତା ତଥା ସୁଶାସନ ନିମନ୍ତେ ଏହି ରାଜନୈତିକ ଅସ୍ଥିରତା ବିପଦ ହିଁ ସୃଷ୍ଟି କରୁଛି।

ଭାରତରେ ସଂପ୍ରତି ଦୁଇଟି କ୍ଷମତା କେନ୍ଦ୍ର ରହିଛି। ଗୋଟିଏ ହେଉଛି କଂଗ୍ରେସ ନେତୃତ୍ୱରେ ପରିଚାଳିତ ୟୁ.ପି.ଏ. ଏବଂ ଅନ୍ୟଟି ବିଜେପି ନେତୃତ୍ୱରେ ପରିଚାଳିତ ଏନ୍.ଡ଼ି.ଏ.। ଏହି ଦୁଇଗୋଷ୍ଠୀ ସଂପ୍ରତି ଦୁଇଟି ମହାସଂଘ ବା ଫେଡ଼େରେସନ୍ ହେବା ଉଚିତ୍ ଏବଂ ଏହାର ସହଯୋଗୀ ଦଳମାନେ ଗୋଟିଏ ଫେଡ଼େରେସନକୁ ଗୋଟିଏ ନିର୍ବାଚନ ଚିହ୍ନ ନେଇ ଲୋକସଭା ନିର୍ବାଚନ ଲଢ଼ିବା ଦରକାର। ରାଜ୍ୟ ବିଧାନସଭା ନିର୍ବାଚନରେ ଆଞ୍ଚଳିକ ଦଳମାନେ ନିଜର ସ୍ୱତନ୍ତ୍ର ଚିହ୍ନ ରଖିପାରନ୍ତି।

ଏ ଶେଷକଥା, ଭାରତର ସାମଗ୍ରୀକ ଉନ୍ନତି ପାଇଁ କିଛି ଦୃଢ଼ ଜାତୀୟ ରାଜନୈତିକ ଦଳର ଆବଶ୍ୟକତା ରହିଛି। ତେବେ କିଛି କରିସ୍ମାପୂର୍ଣ୍ଣ ଆଞ୍ଚଳିକ ନେତାଙ୍କ ପ୍ରତି ଭୋଟରଙ୍କର ଆକର୍ଷଣ ବି ଅଛି।

ଭୋଟ ଦାତା ତେଣୁ ଯେ ଏବେ ଏଠି ଏକ ଦ୍ୱନ୍ଦରେ ଅଛନ୍ତି, ଏହା ନିଶ୍ଚିତ।



# ପବ୍ ସଂସ୍କୃତି

ଏଇ କିଛିଦିନ ହେଲା ପବ୍ ସଂସ୍କୃତି କଥା ଚର୍ଚ୍ଚାକୁ ଆସିଛି । ପବ୍ ହେଉଛି ଏକ ଇଂରାଜୀ ଶବ୍ଦ । ଯାହାର ଅର୍ଥ ହେଲା, ସହରଟିଏରେ ସାଧାରଣ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଏକ ଆମୋଦ ପ୍ରମୋଦ ସ୍ଥାନ ଯେଉଁଠି ଭୋଜନ ତଥା ମଦ୍ୟପାନର ସୁବିଧା ଥାଏ ଏବଂ ସମୟ ସମୟରେ ପୁଅ ଝିଅଙ୍କୁ ପରସ୍ପର ସହ ଦୈହିକ ସମ୍ପର୍କ ରଖିବାକୁ ସୁଯୋଗ ଦିଆଯାଇଥାଏ ।

ଏଇ ପବ୍‌କୁ ଯିବା ଏବଂ ଏଠି ମଜ୍ଜା କରିବା ଏହା ଏକ ବ୍ରିଟିସ୍ ଅଭ୍ୟାସ । ଇଂଲଣ୍ଡର ପ୍ରତି ସହରରେ ଆଜକୁ ଶହ ଶହ ବର୍ଷ ତଳୁ ଏପରି ପବ୍ ଗୃହମାନ ତୋଳାଯାଇଛି । ଲୋକେ ସେଠାକୁ ପ୍ରତି ସନ୍ଧ୍ୟାରେ ଯାଆନ୍ତି । ବିଭିନ୍ନ ଆଲୋଚନା କରନ୍ତି । ଗୁଲିଗପ କରନ୍ତି । ଜୋର ଶବ୍ଦରେ ଗୀତ ବଜାନ୍ତି । ସ୍ତ୍ରୀ ପୁରୁଷ ମଦ ପିଇ ନାଚନ୍ତି । ଡ଼େଟିଂ କରନ୍ତି । ଏହାକୁ ସେମାନେ ଏକ ସଂସ୍କୃତି ବୋଲି କହନ୍ତି - ପବ୍ ସଂସ୍କୃତି - ପବ୍ କଲଚର ।

ଭାରତରେ ଏଇ ସଂସ୍କୃତି ଜନ୍ମ ନେଇଛି ଏଇ ମାତ୍ର ଅଳ୍ପ କିଛି ବର୍ଷ ତଳୁ । ଏ ଦେଶରେ ମଧ୍ୟବର୍ଗଙ୍କ ଭିତରେ ଏହା ଏବେ ସୀମିତ ରହିଛି । ଶିକ୍ଷିତ ଯୁବକ ଯୁବତୀ ବିଶେଷ କରି ବୈଷୟିକ ଜ୍ଞାନ ପାଇଁ ବଡ଼ ବଡ଼ ସହରରେ ଚାକିରୀ କରୁଥିବା ପ୍ରଫେସନାଲମାନେ ଏହାକୁ ଏକ ପ୍ରକାର ଜୀବନଶୈଳୀ କରି ଦେଇଛନ୍ତି ।

ପବ୍ ସବୁ ପ୍ରଥମେ ଏଠି ବାଙ୍ଗାଲୋରରେ ତିଆରି ହୋଇଥିଲା । ଏହି ସହର ଏକ ସିଲକନ୍ ସହର ହେବାପରେ ଏବଂ ଆଇଟି ପ୍ରଫେସନାଲମାନେ ଏଠାରେ ନିଯୁକ୍ତି ପାଇବା ପରେ ପାଶ୍ଚାତ୍ୟ ସଂସ୍କୃତି ଏଇ ପବ୍ ସଂସ୍କୃତିକୁ ଏମାନେ ଏଠାକୁ ଧାର କରି ଆଣିଥିଲେ । ପବ୍ ଏବେ ଆଉ ଏକ ଅଜଣା ଅନୁଚିନ୍ତା ନୁହେଁ । ସାମାଜିକ ମଦ୍ୟପାନ ବା ସୋସିଆଲ ଡ୍ରିଙ୍କିଂ ନିମନ୍ତେ ଏହା ସମ୍ପ୍ରତି ଏକ ଭଲ ନିରାପଦ ସ୍ଥାନଟିଏ ହୋଇଯାଇଛି ।

ସତ କଥା ହେଲା - କ୍ଲବରେ ବସି ମଦ ପିଇବା ମୂଳତଃ ଏକ ବ୍ରିଟିସ୍ ସଂସ୍କୃତି । ଇଂରେଜମାନେ ଭାରତରେ ଶାସନ କଲାବେଳେ ନିଜର ମସ୍ତି ପାଇଁ ସ୍ଥାନୀୟ କ୍ଲବମାନ ଗଢ଼ିଥିଲେ । ସନ୍ଧ୍ୟାରେ ନିଜର ସ୍ତ୍ରୀଙ୍କ ସହ ସେମାନେ କ୍ଲବକୁ ଯାଉଥିଲେ । ମଦପାନ ଆଉ ଗପସପର ଆସର କରୁଥିଲେ । ଏହା ସେବେ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ଭିତରେ ହିଁ

ଆବଦ୍ଧ ଥିଲା। ଭାରତୀୟମାନେ ଇଂରେଜ କ୍ଲବମାନଙ୍କୁ ଯିବା ସେବେ ପ୍ରାୟ ମନାଥିଲା।

୧୯୯୦ ଦଶକରେ ଉଦାରୀକରଣ ଯୁଗ ଭାରତରେ ଆରମ୍ଭ ହେବା ପରେ ସାମାଜିକ ମଦ୍ୟପାନର ଅଭ୍ୟାସ ଏଠି ଆରମ୍ଭ ହୋଇଯାଇଛି। ରୁଦ୍ଧ କୋଠରୀ ଭିତରେ ବସି ମଦ ପିଇବାର ପରମ୍ପରା ପ୍ରାୟ ଶେଷ ହୋଇଯାଇଛି। ପବ୍‌ରେ ଖୋଲାଖୋଲି ମଦ ପିଇ ନାଚିବା ଆଉ ଏକ ନୂଆ ଘଟଣା ବି ନୁହେଁ। ସ୍ତ୍ରୀ ଲୋକ ଏବଂ ଯୁବତୀମାନେ ମଦ ପିଇବାକୁ ସମ୍ପ୍ରତି 'ଫରୱାର୍ଡ' ବା 'ଆଗୁଆ' ବୋଲି ଅଭିହିତ କରାଯାଉଛି। ଝିଅମାନେ ପବ୍‌ରେ ମଦ ନ ପିଇଲେ ତାଙ୍କୁ ଗାଉଁଲି, ଡ୍ୟୁଡ୍, ପଛୁଆ ବୋଲି ଗାଳି ଶୁଣିବାକୁ ପଡୁଛି।

କିଛି ବର୍ଷ ତଳେ କର୍ଣ୍ଣାଟକର ମାଙ୍ଗାଲୋରରେ ଏକ ପବ୍ ଭିତରେ ପ୍ରବେଶ କରି ଶ୍ରୀରାମ ସେନା ନାମକ ଏକ ହିନ୍ଦୁ ସଂଗଠନର କିଛି କର୍ମୀ ପବ୍‌ରେ ଉପସ୍ଥିତ ଥିବା କେତେକ ଯୁବତୀଙ୍କୁ ମାଡ଼ପିଟ କଲେ। ସେମାନେ ଏପରି ଆକ୍ରମଣ କରିବାର ସପକ୍ଷରେ ଯୁକ୍ତି ଦେଇ କହିଲେ, ଭାରତରେ ପବ୍ ସଂସ୍କୃତି ଏକ କଳୁଷିତ ସଂସ୍କୃତି। ଭାରତୀୟ ସଂସ୍କୃତି ପ୍ରତି ଏହା ବିପଦ। କିଛି ଯୁବକ ଯୁବତୀ ପବ୍‌ରେ ଦାୟିତ୍ୱ ଶୂନ୍ୟ ଭାବେ ମଦ୍ୟପାନ କରି ସମାଜରେ ହିଂସା ତଥା ଅଘଟଣ ସୃଷ୍ଟି କରୁଛନ୍ତି।

ଅବଶ୍ୟ ଏପରି ଯୁକ୍ତି କେବେ ଆଧାରହୀନ ନୁହେଁ। ମଧ୍ୟ ରାତ୍ରରେ ମଦ୍ୟପାନ କରି କାର ରେସ୍ କରିବା, ଅନ୍ୟକୁ ଗାଳି ଦେବା, ନଗ୍ନ ହୋଇ ନାଚିବା, ଧର୍ଷଣ କରିବା ଏବଂ କେତେବେଳେ କେମିତି ହତ୍ୟାକାଣ୍ଡ ଘଟାଇବା ଏଇ ପବ୍ ସଂସ୍କୃତିର ଏକ ସାଧାରଣ ପରିଣତି ହୋଇଗଲାଣି। ଏଇ ଗତ ଛଅ ସାତ ବର୍ଷ ତଳେ ଦିଲ୍ଲୀର ଏକ ବାର ଭିତରେ ମଡେଲ ଜେସିକା ଲାଲଙ୍କୁ ଏପରି ଏକ ପରିବେଶରେ ହିଁ ହତ୍ୟା କରାଯାଇଥିଲା। ପ୍ରକାଶ ଥାଉକି, ଜେସିକା ସେଇ ବାର୍‌ରେ ଜଣେ କର୍ମଚାରୀ ଭାବେ କାମ କରି ରାତିରେ ଗ୍ରାହକମାନଙ୍କୁ ମଦ ପରଶୁ ଥିଲେ ଏବଂ ମନୁ ଶର୍ମା ନାମକ ଜଣେ ଗ୍ରାହକଙ୍କ ସହ ସାଥୀ ହୋଇ ସେ ମଦ ପାନ କରିବାକୁ ମନା କରି ଦେବାରୁ ତାଙ୍କୁ ହତ୍ୟା କରାଯାଇଥିଲା ବୋଲି ଅଭିଯୋଗ ହୁଏ।

ପବ୍ ସଂସ୍କୃତି ନେଇ ଭାରତରେ ଏବେ ବିତର୍କ ଆରମ୍ଭ ହୋଇଯାଇଛି। ଏ ସଂସ୍କୃତିର ସପକ୍ଷବାଦୀମାନେ ଯୁକ୍ତି ଦେଇ କହନ୍ତି - ବଞ୍ଚିବାର ଶୈଳୀ ପ୍ରତି ବ୍ୟକ୍ତିର ଏକ ନିଜସ୍ୱ ପସନ୍ଦର କଥା। ସେ ତାର ଜୀବନ କିପରି କାଟିବ ଏହା ଜଣଙ୍କର ବ୍ୟକ୍ତିଗତ ଅଧିକାରଭୁକ୍ତ। ଏ ଅଧିକାରରେ କିଛି ଲୋକ ନିଜକୁ ଭାରତୀୟ ସଂସ୍କୃତିର ମୁରବୀ କହି ହସ୍ତକ୍ଷେପ କରିବା ଅନୁଚିତ। ଭାରତର ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ରେଣୁକା ଚୌଧୁରୀ ପବ୍ ସଂସ୍କୃତି ସପକ୍ଷବାଦୀ ଗୋଷ୍ଠୀର ମୁଖିଆ ସାଜି ଏପରି ବି କହି ଦେଲେଣି, ଏଣିକି ପବ୍ ଯିବାକୁ ଉତ୍ସାହିତ କରାଯିବ ଏବଂ "ପବ୍ ଭରୋ ଆନ୍ଦୋଳନ" ଆରମ୍ଭ ହେବ। ବ୍ୟକ୍ତିଗତ ପସନ୍ଦକୁ ଅନ୍ୟ କାହାର ମନମାନି ଆଗରେ ପଣବନ୍ଦୀ ହେବାକୁ ଦିଆଯିବ ନାହିଁ।

ପବ୍ ସଂସ୍କୃତିରେ ଅନ୍ୟ ଦିଗଟିଏ ବି ଅଛି।ଏହାକୁ ବିରୁଦ୍ଧ କରୁଥିବା ଗୋଷ୍ଠୀ ସେଇ ପୁରୁଣା ଯୁକ୍ତି ଦିଅନ୍ତି। କହନ୍ତି - ସ୍ୱାଧୀନତା ଅର୍ଥ ସ୍ୱେଚ୍ଛାଚାରିତା ନୁହେଁ। ଜଣଙ୍କର ସ୍ୱାଧୀନତା ଯେପର୍ଯ୍ୟନ୍ତ ଅନ୍ୟ ଜଣଙ୍କର ସ୍ୱାଧୀନତା ତଥା ଅଧିକାର ପ୍ରତି ଆଞ୍ଚ ନ ଆଣିଛି ସେପର୍ଯ୍ୟନ୍ତ ଏହାକୁ ସହ୍ୟ କରାଯାଇପାରେ। ଯେଉଁ ଜୀବନ ଶୈଳୀ ତଥା ସଂସ୍କୃତିରେ ସମାଜରେ ସ୍ୱେଚ୍ଛାଚାରିତା, ବ୍ୟଭିଚାର ଏବଂ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୁଏ ତାହାକୁ ବିରୁଦ୍ଧ କରିବା ଏକ ନୈତିକ ଅଧିକାର।

ଏ ଦୁଇଟି ଯୁକ୍ତି ଅବଶ୍ୟ ବଳିଷ୍ଠ। ବାସ୍ତବତା ହେଲା, ବ୍ୟକ୍ତି ସ୍ୱାଧୀନତାରେ ନିୟନ୍ତ୍ରଣ ନ ରହିଲେ ଏହା ସ୍ୱେଚ୍ଛାଚାରିତା ହୋଇଯାଏ। କିନ୍ତୁ ପବ୍ ଭିତରେ ପଶି ଅନ୍ୟଙ୍କୁ ଆକ୍ରମଣ କରିବା ଏହା ନିୟନ୍ତ୍ରଣ ନୁହେଁ। ଏହା ଗୁଣ୍ଡାରାଜ। ପବ୍‌ରେ ବସି ମଦ ପିଉଥିବା ବ୍ୟକ୍ତିଠାରୁ ଏହା ସମାଜ ପ୍ରତି ବେଶି ବିପଦ ସୃଷ୍ଟି କରେ।

ଏ ଆଲୋଚନାର ଉପସଂହାର ହେଲା, ପବ୍ ସଂସ୍କୃତି ଏକ ନୂଆ କରି ଉତ୍ତୁରିଥିବା ସଂସ୍କୃତି। ପରମ୍ପରା ଠାରୁ ଏହା ଟିକିଏ ନିଆରା। ନିଆରା ଅଭ୍ୟାସଟି ସମାଜକୁ ଆସିଲେ ଏହାର ବିରୁଦ୍ଧ ହେବା ସ୍ୱଭାବିକ। କାରଣ ହେଉଛି ପରମ୍ପରା ଏବଂ ଆଧୁନିକତା ଭିତରେ ଦ୍ୱନ୍ଦ ପ୍ରାୟ ସବୁବେଳେ ଥାଏ। ଆଧୁନିକ ପରିବର୍ତ୍ତନକୁ ସମାଜ ଗ୍ରହଣ କଲେ ଏହା ବି ଦିନେ ପରମ୍ପରା ହୋଇଯାଏ।

ତେବେ ପବ୍‌ରେ ହେଉଥିବା ସାମାଜିକ ମଦ୍ୟପାନରେ ଦାୟିତ୍ୱ ଜ୍ଞାନ ରହିବା ଉଚିତ। ଯିଏ ମଦ ପିଇବାରେ ଦାୟିତ୍ୱବାନ ନୁହେଁ, ତାର ସାମାଜିକ ମଦ୍ୟପାନର ଅଧିକାର ହିଁ ନାହିଁ। ଏହା ପବ୍ ହେଉ ବା ବାର୍।



# ଦୂତକୁ ମାର ନାହିଁ

ଦୂତ ଅର୍ଥ ଏଠି ବର୍ତ୍ତମାନର ପତ୍ରକାରଙ୍କ କଥା। ପୂର୍ବକାଳରେ ଯେଉଁମାନେ ଖବର ଆଣୁଥିଲେ ଏବଂ ଦେଉଥିଲେ ଏବଂ ବର୍ତ୍ତମାନ ଯେଉଁମାନେ ଖବର ସଂଗ୍ରହ କରନ୍ତି ଏବଂ ଛାପନ୍ତି। ଗୋଟିଏ ସଭ୍ୟ ସମାଜ ପାଇଁ ଏଇ ପତ୍ରକାର ବା ମେସେଞ୍ଜରର ଦରକାର ଥାଏ। ସୁଶାସନ ପାଇଁ ସତ୍ୟ ଖବରର ଆବଶ୍ୟକତା ବେଶି।

ବିଡ଼ମ୍ବନା ଯେ, ପୃଥବୀ ସାରା ପତ୍ରକାରଙ୍କ ଉପରେ ଆକ୍ରମଣ ବର୍ତ୍ତମାନ ଏକ ସାଧାରଣ ଘଟଣା। ଏମାନଙ୍କୁ କାହିଁକି ମାରୁଛ କହି କିଛି ଆବେଗିକ ଆବେଦନ କଲେ ବି ଆକ୍ରମଣକାରୀଙ୍କ ଉପରେ ଏହାର କିଛି ପ୍ରଭାବ ପଡୁନି। ଇରାକ୍, ଆଫଗାନିସ୍ଥାନ ଏବଂ ପାକିସ୍ଥାନରେ ସାମ୍ବାଦିକଙ୍କ ପ୍ରତି ନିର୍ଯ୍ୟାତନା ଯେପରି ଏଠାରେ ଏକ ନିତି ଦିନିଆ କଥା।

ଯେଉଁ ଘଟଣାଟି ଏବେ ଆଲୋଡ଼ନ ସୃଷ୍ଟି କରିଛି, ସେ ହେଉଛି ପାକିସ୍ଥାନର 'ସ୍ୱାତ'ରେ ଘଟିଥିବା ସାମ୍ବାଦିକଙ୍କ ହତ୍ୟା ଘଟଣା। 'ସ୍ୱାତ' ଏବେ ତାଲିବାନଙ୍କ ଦଖଲରେ ଅଛି। ଏଠାରେ ତାଲିବାନୀ କାର୍ଯ୍ୟକଳାପ ଉପରେ ଖବର ସଂଗ୍ରହ କରୁଥିବା ଜିଓ ଟି.ଭି.ର ଜଣେ ସମ୍ବାଦଦାତା ମୁସା ଖାଁ ଙ୍କୁ ତାଲିବାନୀମାନେ ତଣ୍ଟିକାଟି ହତ୍ୟା କରି ଦେଇଛନ୍ତି। ଉଦ୍ଦେଶ୍ୟ ହେଉଛି ସବୁ ସାମ୍ବାଦିକ ଯେପରି ଭୟଭୀତ ହୋଇ 'ସ୍ୱାତ' ଛାଡ଼ି ଚାଲିଯିବେ ଏବଂ ଏହା ଯେପରି ସହରରେ ଏକ ଶୁଦ୍ଧ ଇସଲାମୀୟ ସମାଜଟିଏ ପ୍ରତିଷ୍ଠିତ ହୋଇଯିବ।

ଆନ୍ତର୍ଜାତିକ ପତ୍ରକାର ମହାସଂଘ ସମ୍ପ୍ରତି ଏକ ରିପୋର୍ଟ ପ୍ରକାଶ କରିଛନ୍ତି। ଏ ରିପୋର୍ଟରେ ଅଛି, ଗତ ବର୍ଷ ଅର୍ଥାତ୍ ୨୦୧୧ରେ ପୃଥିବୀରେ ୧୦୯ ଜଣ ସମ୍ବାଦିକଙ୍କୁ ହତ୍ୟା କରାଯାଇଛି ଏବଂ ସବୁଠାରୁ ଉଲ୍ଲେଖନୀୟ କଥା ହେଲା ସାମ୍ବାଦିକଙ୍କ ପ୍ରତି ଆକ୍ରମଣ ଏତେ ତୀବ୍ର ହୋଇ ଯାଇଛି ଯେ, କୌଣସି ଏକ ଉତ୍ତେଜନା ପୂର୍ଣ୍ଣ ଅଞ୍ଚଳ ବା ହଟ୍ ସ୍ପଟରେ ଏମାନେ କାମ କରିବା ଆଉ ସହଜ ହେଉନାହିଁ।

ସତକଥା ହେଲା, ଆକ୍ରମଣ ପାଇଁ ପତ୍ରକାରଟିଏ ସମ୍ପ୍ରତି ସହଜ ଟାର୍ଗେଟ୍। ଭାରତରେ ଏହି ଶ୍ରେଣୀ ମଧ୍ୟ ଆତଙ୍କବାଦୀ, ଭ୍ରଷ୍ଟାଚାରୀ ନେତା, ମାଫିଆ ମାନଙ୍କର ଶୀକାର ହେଉଛନ୍ତି।

ପତ୍ରକାରିତା ଏକ ପବିତ୍ର କାମ। ଦୂତ ଗିରିରେ ସବୁ ସମୟରେ ସମ୍ମାନ ଥାଏ।

କାହିଁ କେଉଁ କାଳରୁ ଏ ଦେଶରେ ପତ୍ରକାରିତାର ଧାରା ରହିଛି। ଏଠି ପତ୍ରକାରଙ୍କର ପ୍ରତିନିଧି ଭାବେ 'ନାରଦ'ଙ୍କ ସୁଖ୍ୟାତି ଥିଲା। ସେ ଖବର ଆଣୁଥିଲେ ଏବଂ ବାଣ୍ଟୁଥିଲେ ଏବଂ ମହାଭାରତର ସିଦ୍ଧ ପୁରୁଷ ଶ୍ରୀକୃଷ୍ଣ ବି ଜଣେ ଉତ୍ତମ ଦୂତ ଭାବେ ପ୍ରସିଦ୍ଧି ପାଇଥିଲେ।

ସୁତରାଂ ପତ୍ରକାରିତାର ଲିଗାସି ଭାରତରେ ବହୁ ଦିନରୁ ଅଛି। ଅଥଚ ସମ୍ବାଦଦାତାଙ୍କ ପ୍ରତି ଯେଉଁ ସମ୍ମାନ ତଥା ଶ୍ରଦ୍ଧା ରହବା କଥା ତାହା ରହୁନାହିଁ। ଏପରିକି ସ୍ୱାଧୀନତାକୁ ଆଦର୍ଶ କରିଥିବା ଏ ଗଣତାନ୍ତ୍ରିକ ରାଷ୍ଟ୍ର ବି ପୋଲିସ ଷ୍ଟେଟ ଆଢୁଆଳରେ ବେଳେ ବେଳେ ସମ୍ବାଦିକଙ୍କ ପ୍ରତି ନିର୍ଯ୍ୟାତନା ଦେଉଛି। ରିପୋର୍ଟିଂ କଲାବେଳେ ପତ୍ରକାରଙ୍କ କ୍ୟାମେରା ଭାଙ୍ଗିଦେବା ଏବଂ ଆକ୍ରମଣ କରିବା, ଏବେ ଆଉ ଆଶ୍ଚର୍ଯ୍ୟ ଲାଗୁନି।

ଦୂତ ପ୍ରତି ଅସମ୍ମାନ ପ୍ରକୃତରେ ଏହା ଏକ ଏବର ଘଟଣା। ସ୍ୱାଧୀନତାର ପ୍ରାଥମିକ ଅବସ୍ଥାରେ ଭାରତରେ ପତ୍ରକାରଙ୍କ ପ୍ରତି ସମ୍ମାନ ଯଥେଷ୍ଟ ଥିଲା। ଏମାନଙ୍କର ସ୍ୱାଧୀନତା ଉପରେ ତତ୍କାଳୀନ ଶାସକ ବର୍ଗ କେବେ ହସ୍ତକ୍ଷେପ କରୁ ନଥିଲେ।

ଏ ସମ୍ପର୍କରେ 'ନ୍ୟାସନାଲ ହେରାଲ୍ଡ' ଖବର କାଗଜରେ ବହୁଦିନ ଧରି ସାମ୍ବାଦିକତା କରୁଥିବା ପି.ଡ଼ି. ଟଣ୍ଡନଙ୍କ ଏକ ସ୍ମୃତି ବିଜଡ଼ିତ ଲେଖା ଏ ଲେଖକର ନଜରକୁ ଆସିଲା। ଟଣ୍ଡନ ସାହେବ ଲେଖିଛନ୍ତି - ନେହରୁଙ୍କ ଅମଳରେ ସାମ୍ବାଦିକଙ୍କ ପ୍ରତି ଶାସକ ବର୍ଗ ବେଶ ଦରଦ ଥିଲେ। ଗୋଟିଏ ଉଦାହରଣ ଦିଅନ୍ତି ଟଣ୍ଡନ। କହନ୍ତି - "ନ୍ୟାସନାଲ ହେରାଲ୍ଡ"ର ପ୍ରତିଷ୍ଠାତା ଥିଲେ ଜବାହରଲାଲ ନେହରୁ। ହେରାଲ୍ଡର ସମ୍ପାଦକ ଚଳପତି ରାଓଙ୍କୁ ସେ ସ୍ପଷ୍ଟ କହି ଦେଇଥିଲେ- କଂଗ୍ରେସ ର ନୀତି, କଂଗ୍ରେସ ନେତା ଏବଂ ଖୋଦ ଜବାହର ଲାଲ ନେହରୁଙ୍କ ବିରୁଦ୍ଧରେ ଯଦି କିଛି ଥାଏ, ନ୍ୟାସନାଲ ହେରାଲ୍ଡ ପ୍ରକାଶ କରିବାରେ କିଛି ବାଧା ନାହିଁ।

ଚଳପତି ରାଓ ଥିଲେ ଜଣେ ସାଧାସିଧା ମଣିଷ। ବେଶ୍ ନିର୍ଭୀକ କିନ୍ତୁ ଥିଲେ। ଉତ୍ତର ପ୍ରଦେଶର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜି.ବି. ପନ୍ଥଙ୍କ ଶାସନ ବିରୁଦ୍ଧରେ ସମାଲୋଚନା କରି ସେ ଲେଖା ବାରମ୍ବାର ପ୍ରକାଶ କରୁଥିଲେ।

ଥରେ କଂଗ୍ରେସ କମିଟି ବୈଠକରେ ଉତ୍ତର ପ୍ରଦେଶ ଶାସନ କଥା ଆଲୋଚନାକୁ ଆସିଲା। ଏଥିନେଇ ହେରାଲଡ୍ ଖବର କାଗଜର ଭୂମିକା ମଧ୍ୟ ଆଲୋଚିତ ହେଲା। ସେଠାରେ ଉପସ୍ଥିତ ଥିବା ଜଣେ କମିଟି ସଭ୍ୟ ମନ୍ତବ୍ୟ ଦେଲେ, ଉତ୍ତର ପ୍ରଦେଶରେ କଂଗ୍ରେସର ବିରୋଧି ଭୂମିକା ନ୍ୟାସନାଲ ହେରାଲ୍ଡ କରୁଛି। କଂଗ୍ରେସ ସରକାର ଏଠି ବେଶି ଅପଦସ୍ତ ହେଉଛି ଏଇ କାଗଜ ଯୋଗୁଁ। ଏ କାଗଜ ତ କଂଗ୍ରେସର।

ନେହରୁ ସେଦିନ ମିଟିଂରେ ଥିଲେ। ସେ ବିରକ୍ତ ହୋଇ କହିଲେ, ପତ୍ରକାର କାହାର ତୋଷାମଦକାରୀ ନୁହଁନ୍ତି କିମ୍ବା ଭୃତ୍ୟ ନୁହଁନ୍ତି। ସେ ଯେ ସବୁବେଳେ ପ୍ରଶଂସା

କରିବେ ଏହା ଠିକ ନୁହେଁ। ଯଦି କଂଗ୍ରେସ ଶାସନ ଏବଂ ନୀତି ନେଇ ହେରାଲ୍ଡ ଟିପ୍‌ପଣୀ କରୁଛି, ଏହା ସ୍ୱାଗତ ଯୋଗ୍ୟ। ନିଜକୁ ତେଣୁ ସଂଶୋଧିତ କରିନେବା ଭଲ। ସଭାରେ ଉପସ୍ଥିତ ଥିବା ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ପନ୍ଥ ସାହେବ ବି ଏହାକୁ ମୁଣ୍ଡ ହଲାଇ ସମର୍ଥନ କରିଥିଲେ।

ସେବେଠୁ ଆଜି ପର୍ଯ୍ୟନ୍ତ ଦୀର୍ଘ ପଚାଶ ବର୍ଷର ଅବଧି ଭିତରେ ପତ୍ରକାରିତାରେ କିଛି ପରିବର୍ତ୍ତନ ଆସିନାହିଁ। ଅଥଚ ଶାସକଙ୍କ ମାନସିକତାରେ ପରିବର୍ତ୍ତନ ଆସିଛି। ବିରୁଦ୍ଧ କରୁଥିବା ସାମ୍ବାଦିକଙ୍କୁ ଯନ୍ତ୍ରଣା ଦେବା କିଛି ଶାସକଙ୍କର ଏବେ ଏକ ନୂଆ ମନ୍ତ୍ର।

ସାମ୍ବାଦିକତାରେ ସମ୍ପ୍ରତି ନୂଆ ବିବାଦଟିଏ ବି ଉଠିଛି। ସେ ହେଉଛି, କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ଖବରର ଉତ୍ସକୁ ନେଇ। ଗୋଟିଏ ଗୋଷ୍ଠୀର ଯୁକ୍ତି ହେଲା - ଏକ ସମ୍ବେଦନଶୀଳ ସମ୍ବାଦ କେଉଁଠୁ ଏବଂ କାହାଠାରୁ ମିଳିଲା, ଏହାର ମୂଳକଥା ସମ୍ବାଦଦାତାଟି ରାଷ୍ଟ୍ର ଅନୁସନ୍ଧାନକାରୀ ଅନୁଷ୍ଠାନକୁ ଯୋଗାଇ ଦେବା ଉଚିତ। ଯେହେତୁ ଦେଶ ଏବଂ ନାଗରିକର ସୁରକ୍ଷା ଦାୟିତ୍ୱ ହେଉଛି ରାଷ୍ଟ୍ରର। ତାମିଲନାଡୁର 'ନିକନ୍'ର ପତ୍ରିକାର ସମ୍ପାଦକ ଆର. ଆର. ଗୋପାଳଙ୍କ ପ୍ରତି କିଛି ବର୍ଷ ତଳେ ରାଷ୍ଟ୍ରଶକ୍ତି ନିର୍ଯ୍ୟାତନା ଦେବା ଖବର ଏଠି ଚହଳ ସୃଷ୍ଟି କରିଥିଲା। ଗୋପାଳଙ୍କର ଦୋଷ ଥିଲା ଯେ, ସେ ଚନ୍ଦନ ଦସ୍ୟୁ ବୀରପାନାଙ୍କ ସହ କେବେ ଏବଂ କେଉଁଠି ମିଶିଥିଲେ, ଏ ଖବର ଦେବାକୁ ମନା କରିଦେଇଥିଲେ।

ଅନ୍ୟ ଗୋଷ୍ଠୀ କିନ୍ତୁ ଭିନ୍ନ ମତ ଦିଅନ୍ତି। ଏ ସବୁ ମୁକ୍ତ ପ୍ରେସ୍‌ର ପ୍ରବକ୍ତା। ଏମାନଙ୍କ ଯୁକ୍ତିହେଲା, ଖବରର ଉତ୍ସ ଗୁପ୍ତ ରଖିବା ପତ୍ରକାରର ନୈତିକ ଦାୟିତ୍ୱ। ଏହା ପ୍ରଘଟ ହେଲେ ଗୁପ୍ତ ଖବର ଦେବାକୁ ଲୋକେ ଆଉ ଆଗେଇ ଆସିବେନି। ଅତ୍ୟାଚାରୀ ଶାସକ ଏବଂ ଭ୍ରଷ୍ଟାଚାରୀଙ୍କୁ ଶାସ୍ତି ଦେବା କଷ୍ଟ ହେବ।

ସ୍ପଷ୍ଟ କହିଲେ, ସ୍ୱାଧୀନ ଗଣମାଧ୍ୟମ ଏକ ସଭ୍ୟ ସମାଜ ପାଇଁ ଜରୁରୀ। ଖବର ଦାତାଟି ଖବର ଦେଇ କେବଳ ପବିତ୍ର କାର୍ଯ୍ୟଟିଏ ହିଁ କରୁଛି।

ଦୂତକୁ ତେଣୁ ମାର ନାହିଁ। ଡୋଣ୍ଟ ସୁଟ୍ ଦି ମେସେଞ୍ଜର, ପ୍ଲିଜ୍।



# ପ୍ରାକୃତିକ ବନ୍ଧୁ

ଏଇ କିଛିଦିନ ଧରି ଭାରତୀୟ ରାଜନୈତିକ ଭାଷାକୋଷରେ ନୂଆ ଶବ୍ଦଟିଏ ବହୁଳ ବ୍ୟବହୃତ ହେଉଛି। ସେ ହେଉଛି "ପ୍ରାକୃତିକ ବନ୍ଧୁ" ବା ନାଚୁରାଲ ଆଲାଏ। ଗୋଟିଏ ରାଜନୈତିକ ଦଳ ଅନ୍ୟ ଦଳ ସହ ନିର୍ବାଚନୀ ମେଣ୍ଟ କଲେ, ଏହାର କାରଣରେ କୁହାଯାଇଛି ଏମାନେ ପ୍ରାକୃତିକ ବନ୍ଧୁ। ଏମାନଙ୍କର ସ୍ୱଭାବ ଏକ ଏବଂ ସହଜାତ। ଯେତେବେଳେ ମଧ୍ୟ ଗୋଟିଏ ଦଳ ଅନ୍ୟଠାରୁ ଅଲଗା ହେଉଛି, ଏହାର ଅର୍ଥ କରାଯାଉଛି ଯେ, ଏମାନେ କେବେ ପ୍ରାକୃତିକ ବନ୍ଧୁ ନଥିଲେ।

ପ୍ରାକୃତିକ ବନ୍ଧୁ ହେଉଛି ଯେଉଁ ବନ୍ଧୁ ଦ୍ୱୟ ଏବଂ ବନ୍ଧୁମାନଙ୍କ ଭିତରେ ଭାବନା ତଥା ପ୍ରକୃତି ଏକା ହୋଇଥିବ, ଚରିତ୍ର ଏକ ଓ  କାର୍ଯ୍ୟକଳାପ ସମାନ ଥିବ। ପରସ୍ପରକୁ ଏମାନେ ବିଶ୍ୱାସ କରୁଥିବେ।

ଏଗାର ବର୍ଷ ତଳେ ଯେତେବେଳେ ଓଡ଼ିଶାର ବିଜୁ ଜନତା ଦଳ ଏବଂ ଭାରତୀୟ ଜନତା ପାର୍ଟି ଏକାଠି ରହିବେ ବୋଲି ସଂକଳ୍ପ କଲେ ସେତେବେଳେ ଏମାନେ ଯେ ପ୍ରାକୃତିକ ବନ୍ଧୁ ଏମାନେ କହି ବୁଲିଲେ। କଂଗ୍ରେସ ଏମାନଙ୍କର ପରମ ଶତ୍ରୁ ଏବଂ ଶତ୍ରୁର ଶତ୍ରୁ ମିତ୍ର ହେବା ତତ୍ୱକୁ ଏମାନଙ୍କର ବନ୍ଧୁତ୍ୱର ଆଧାର କଲେ।

ଏକ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ଧରି ଏକତ୍ର ସହବାସ କଲାପରେ ହଠାତ୍ ଏମାନେ ଜାଣିଲେ ଯେ ଏମାନେ ପ୍ରାକୃତିକ ବନ୍ଧୁ ନୁହଁନ୍ତି। ଏ ଦୁହିଁଙ୍କର ଲକ୍ଷ୍ୟ ଅଲଗା। ରାଜନୈତିକ ଭାବନା ଅଲଗା। ବିଜେପି ହିନ୍ଦୁତ୍ୱ ଉପରେ ଜୋର ଦେଉଥିବା ବେଳେ ବିଜେଡ଼ି ଧର୍ମ ନିରପେକ୍ଷତା କଥା ହିଁ କୁହେ ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯାହା ଅଭିଯୋଗରେ ଆସେ, ବିଜେପି ଯେତେବେଳେ ଓଡ଼ିଶାର କନ୍ଧମାଳକୁ ଏକ ପ୍ରୟୋଗଶାଳା କରି 'ହିନ୍ଦୁତ୍ୱ'ର ପରୀକ୍ଷା କଲା ବିଜୁ ଜନତା ଦଳକୁ ଏହା ଭଲ ଲାଗିଲାନି।

ବର୍ତ୍ତମାନର ସତ୍ୟ ହେଲା ଓଡ଼ିଶାରେ ବିଜେପି ଏବଂ ବିଜେଡ଼ିର ବନ୍ଧୁତ୍ୱ ଆଉ ନାହିଁ। ଦୋସ୍ତ ଆଉ ଦୋସ୍ତ ହୋଇ ରହିନାହିଁ।

ପଞ୍ଚତନ୍ତ୍ରରେ ପ୍ରାକୃତିକ ବନ୍ଧୁତ୍ୱ ନେଇ ଏକ କାହାଣୀ ଅଛି। ଏ ହେଉଛି ବେଙ୍ଗ-ମୂଷିକର କାହାଣୀ। କାହାଣୀଟି ଠିକ ଏମିତି - ଥରେ ମୂଷା ଆଉ ବେଙ୍ଗଟିଏ ପରସ୍ପରର ବନ୍ଧୁ ହେଲେ। ସାରା ଜୀବନ ବନ୍ଧୁ ହୋଇ ରହିବାକୁ ଏମାନେ ଶପଥ ନେଲେ। ଏଇ

ବନ୍ଧୁତା କାଳେ ଭାଙ୍ଗିଯିବ ଏଥିପାଇଁ ଏ ଦୁହେଁ ପରସ୍ପରର ଗୋଡ଼କୁ ଏକାଠି ଏକ ଶକ୍ତ ରଜ୍ଜୁରେ ବାନ୍ଧିଲେ ଏବଂ ଏପରି ଅବସ୍ଥାରେ ଏମାନେ ଗୋଟିଏ ପୋଖରୀ ତୁଠରେ ପଡ଼ି ରହିଲେ। ଏହାକୁ ଏମାନେ କହିଲେ ପ୍ରାକୃତିକ ବନ୍ଧୁତ୍ୱ।

ଦିନେ ଆକାଶରେ ଉଡୁଥିବା ଏକ ଛଞ୍ଚାଣ ପୋଖରୀ ପାଖରେ ପଡ଼ି ରହିଥିବା ଏଇ ମୂଷା ଏବଂ ବେଙ୍ଗକୁ ଦେଖିଲା। ସେ ତାଙ୍କ ଉପରେ ଘାଉଁରା ଦେଲା।

ଆସନ୍ନ ବିପଦର ଆଶଙ୍କା କରି ନିଜର ଆତ୍ମରକ୍ଷା ପାଇଁ ବେଙ୍ଗଟି ପୋଖରୀକୁ ଡ଼େଇଁ ପଡ଼ିଲା। ବେଙ୍ଗ ନିଜର ଜୀବନ ରଖିଦେଲା ଅଥଚ ମୂଷାର ସଲିଳ ସମାଧି ହୋଇଗଲା। ସମଭାବାପନ୍ନ ନ ହେଲେ ଯେ ବନ୍ଧୁତ୍ୱ ଦୀର୍ଘସ୍ଥାୟୀ ହୁଏନି, ଏ ହେଉଛି ବେଙ୍ଗ ମୂଷିକ କାହାଣୀର ମୂଳକଥା।

ପଞ୍ଚତନ୍ତ୍ରରେ ଏପରି କାହାଣୀ ସବୁ ରାଜପୁତ୍ରଙ୍କୁ କୁହାଯାଇଛି। ଏଥିରୁ କିଛି ଏମାନେ ଶିକ୍ଷା କରିବାକୁ ନିର୍ଦ୍ଦେଶ ଅଛି। ହେଲେ ବର୍ତ୍ତମାନର ରାଜପୁତ୍ରମାନେ ଅର୍ଥାତ୍ ଆମ ରାଜନେତାମାନେ ଏପରି କାହାଣୀରୁ କିଛି ଶିଖୁ ନାହାଁନ୍ତି। ଯେତେବେଳେ ମେଣ୍ଟଟିଏ ଗଢ଼ାଯାଇଛି କିମ୍ବା ଏହା ଭାଙ୍ଗୁଛି, ପ୍ରାକୃତିକ ବନ୍ଧୁତ୍ୱର ଆଳ ଖୋଜି ନୂଆ ରାଜନୈତିକ ସମୀକରଣ କରାଯାଇଛି।

ନୂଆ ନୂଆ ପାର୍ଟନରର ଖୋଜି ସମୀକରଣ କରିବା ଏହା କେବଳ ଓଡ଼ିଶା ରାଜନୀତିରେ ଅଟକି ରହିନାହିଁ। ମହାରାଷ୍ଟ୍ରରେ ଦୀର୍ଘଦିନ ବନ୍ଧୁ ହୋଇଥିବା କଂଗ୍ରେସ ଓ ଏନ.ସି.ପି. ଏବେ ଆଉ ବନ୍ଧୁ ହୋଇ ରହିବେ କି ନା ସନ୍ଦେହ। ବିଶ୍ୱାସ ମତ ପୂର୍ବରୁ ହଠାତ୍ ଏକାଠି ହୋଇ ବନ୍ଧୁ ହୋଇଯାଇଥିବା ସମାଜବାଦୀ ପାର୍ଟି ଏବଂ ଭାରତୀୟ ଜାତୀୟ କଂଗ୍ରେସ ନିଜର ଯାତ୍ରା ପାଇଁ ଭିନ୍ନ ଭିନ୍ନ ରାସ୍ତା ଦେଖିଲେଣି। ପଶ୍ଚିମ ବଙ୍ଗ ମମତା ଏବଂ ସୋନିଆ ଆଉ ଏକ ହୋଇ ନାହାନ୍ତି। ପ୍ରଶ୍ନ କଲେ ସେଇ ପ୍ରାକୃତିକ ବନ୍ଧୁ କଥା ଉତ୍ତରରେ ଆସୁଛି।

ସତକଥା ହେଲା ନୂଆ ରାଜନୈତିକ ମେଣ୍ଟ କରିବା ଏବଂ ମେଣ୍ଟ ଭାଙ୍ଗିବାରେ ଏହି 'ପ୍ରାକୃତିକ ବନ୍ଧୁତ୍ୱ' ତତ୍ତ୍ୱର ସେମିତି କିଛି ଖାସ୍ ଅର୍ଥ ନାହିଁ। ମିଶିବା ଏବଂ ପୃଥକ ହେବା ଏହା କେବଳ ଏକ ବାହାନା ମାତ୍ର। ରାଜନୈତିକ ସମୀକରଣ ପାଇଁ ଯେଉଁ ଗୋଟିଏ ପ୍ରଧାନ କଥାର ଆବଶ୍ୟକତା ଅଛି ସେ ହେଉଛି ବ୍ୟକ୍ତିଗତ ବା କିଛି ଦଳୀୟ ସ୍ୱାର୍ଥ। ରାଜନୀତିରେ ପ୍ରକୃତରେ କେହି ଚିରନ୍ତନ ଶତ୍ରୁ ନଥାଏ କିମ୍ବା ମିତ୍ର ନଥାଏ। ଯାହା ଚିରନ୍ତନ ତାହା ହେଉଛି ନିଜର ରାଜନୈତିକ ସ୍ଥିତିକୁ ସୁରକ୍ଷିତ ରଖିବାର ଉପାୟ। ଏହି କ୍ରିୟାକୁ ବିଶ୍ଳେଷକମାନେ ରାଜନୀତିରେ 'ସ୍ଥିତିବାଦ' ବୋଲି କୁହନ୍ତି। ସ୍ଥିତିବାଦର ଅର୍ଥ ହେଲା ଯେଉଁଠି ବଞ୍ଚିବା ପାଇଁ ପାପ କରିବା ପାପ ନୁହେଁ।

ସମୀକରଣ ପାଇଁ ଅନ୍ୟ ଏକ ସ୍ୱାର୍ଥଟିଏ ବି ରହିଛି। ସେ ହେଉଛି ରାଜନୈତିକ

କ୍ଷମତାକୁ ବାଣ୍ଟିବା ଏବଂ ଏହାକୁ ଉପଭୋଗ କରିବା। ଗଣତନ୍ତ୍ରରେ ଜାତୀୟ ସମ୍ପତ୍ତିକୁ ବାଣ୍ଟି ଉପଭୋଗ କରିବାର ଅଧିକାର ସମସ୍ତଙ୍କର ଅଛି ଏବଂ ଯେତେବେଳେ କ୍ଷମତାକୁ ବି ଏକ ସମ୍ପତ୍ତି ବୋଲି ଧରାଯାଏ, କ୍ଷମତା ଦଖଲ ପାଇଁ କ୍ଷୁଦ୍ର ଆଞ୍ଚଳିକ ଦଳମାନେ ଶତ୍ରୁକୁ ବନ୍ଧୁ ବୋଲି କହି ଏକାଠି ମିଶିବାକୁ  ବାସ୍ତବତା ବୋଲି କୁହାଯାଇଛି। ରାଜ୍ୟ ତଥା ଗୋଷ୍ଠୀର ସ୍ୱାର୍ଥ ପାଇଁ ସମୀକରଣ କରିବା କଥା ଏକ ଆଳ ହୋଇପାରେ।

ଗତ ଦୁଇ ଦଶନ୍ଧି ଧରି ଭାରତୀୟ ରାଜନୀତିରେ କେନ୍ଦ୍ର ଶାସନ ନିମନ୍ତେ କୌଣସି ଗୋଟିଏ ରାରଜନୈତିକ ଦଳକୁ ନିର୍ଣ୍ଣାୟକ ଜନାଦେଶ ମିଳୁନି। ସରକାର ଗଠନ ପାଇଁ ମେଣ୍ଟ କରିବାର ଆବଶ୍ୟକତା ଆସିବା ବେଳେ ଭାରତର କ୍ଷୁଦ୍ର ଆଞ୍ଚଳିକ ଦଳମାନେ ଏହାର ସୁଯୋଗ ନେଉଛନ୍ତି। ସରକାରରେ ଏମାନେ ମିଶୁଛନ୍ତି; କ୍ଷମତା ଉପଭୋଗ କରୁଛନ୍ତି ଏବଂ ଅଧିକ ସୁବିଧା ପାଇଁ ସରକାରରେ ଥିବା ମୁଖ୍ୟ ଦଳକୁ ବ୍ଲାକମେଲିଙ୍ଗ କରୁଛନ୍ତି। ଖାସ ଏଇଥିପାଇଁ ୧୯୮୯ରେ ଭି.ପି. ସିଂଙ୍କ ସରକାର ଅବେଳରେ ଭାଙ୍ଗି ଯାଇଥିଲା ଏବଂ ୧୯୯୬ରୁ ୧୯୯୯ ଭିତରେ ଭାରତରେ ଲୋକସଭା ପାଇଁ ତିନି ତିନି ଥର ନିର୍ବାଚନ ହୋଇଥିଲା।

ସୁତରାଂ ଭାବନା କିମ୍ବା ମୂଲ୍ୟବୋଧ ସମାନ ନଥିଲେ ବନ୍ଧୁତ୍ୱ ସ୍ୱାଭାବିକ ହୁଏନାହିଁ। ଏହା ରାଜାନୀତି ହେଉ ବା ବ୍ୟକ୍ତିଗତ ସମ୍ପର୍କ।

ଏଇ ସମ୍ପର୍କରେ ଏଇଠି ଓଡ଼ିଶା କଥା ବି ଆଲୋଚନାକୁ ଅଣା ଯାଇପାରେ। ପୋସ୍କୋ, କଳିଙ୍ଗ ନଗର ଏବଂ ବେଦାନ୍ତକୁ ଏ ପର୍ଯ୍ୟନ୍ତ ବିରୁଦ୍ଧ କରି ଆସିଥିବା କମ୍ୟୁନିଷ୍ଟମାନେ ଯେ କିପରି ବିଜେଡ଼ି ସହ ବନ୍ଧୁ ହୋଇ ମିଶି ରହିବେ ଏବଂ ଓଡ଼ିଶାର କିଛି ଅଂଶ ଝାଡ଼ଖଣ୍ଡରେ ମିଶିଯିବାକୁ ଏକଦା  ଦାବୀ କରିଥିବା ଜେ.ଏମ୍.ଏମ୍. ଯେ କିପରି ନବୀନ ବାବୁଙ୍କ ସାଥୀ ହେବେ ଏହା କେବଳ ଦେଖିବାର କଥା।

ଏ ଶେଷ କଥା - ପ୍ରାକୃତିକ ବନ୍ଧୁତ୍ୱର ସବୁ ଉପାଦାନକୁ ବିଶ୍ଳେଷଣ କଲେ ଏହା ଗ୍ରହଣ ଯୋଗ୍ୟ ଯେ, ଉଭୟ ବିଜୁ ଜନତା ଦଳ ଏବଂ ଭାରତୀୟ ଜାତୀୟ କଂଗ୍ରେସ ଓଡ଼ିଶାରେ ଭଲ ବନ୍ଧୁ ହୋଇ ପାରିବେ। କାରଣ ଏ ଦୁହେଁ ଧର୍ମ ନିରପେକ୍ଷ ଉପରେ ବିଶ୍ୱାସ ରଖନ୍ତି; 'ଆମ୍ ଆଦମୀ'ର କଥା କହନ୍ତି; ମାନବିକ ମୁହଁ ଥିବା ଆର୍ଥିକ ସଂସ୍କାର ତଥା ଶିଳ୍ପାୟନର ସ୍ଲୋଗାନ ଦିଅନ୍ତି; ଏବଂ ଏ ଦୁଇ ଦଳରେ ଥିବା ରାଜନୈତିକ ନେତୃତ୍ୱର ପୃଷ୍ଠ ଭୂମି ବି ଏକା।

ଏମାନେ ତେଣୁ ପ୍ରାକୃତିକ ବନ୍ଧୁ ହେଲେ କ୍ଷତି କ'ଣ? ବିତର୍କର ଆବଶ୍ୟକତା ରହିଛି।



# ମିଷ୍ଟର ମିନିଷ୍ଟର

ସଦ୍ୟ ଗଠିତ କେନ୍ଦ୍ରୀୟ ମନ୍ତ୍ରୀ ମଣ୍ଡଳରେ ଓଡ଼ିଶାରେ ପ୍ରତିନିଧିତ୍ୱ ନେଇ ଏବେ ଚର୍ଚ୍ଚା ସବୁଠି। ଓଡ଼ିଶାରୁ କାହିଁକି ଗୋଟିଏ ମନ୍ତ୍ରୀ ହେଲେ, କ୍ୟାବିନେଟ୍ ମନ୍ତ୍ରୀ ପଦ କାହାକୁ କାହିଁକି ଏଠି ମିଳିଲାନି, ଏଥିନେଇ ବି ଅନେକ ପ୍ରତିକ୍ରିୟା। ଓଡ଼ିଶା ପ୍ରତି ଯେ କେନ୍ଦ୍ରର ଏହା ଆହୁରି ଏକ ଅବହେଳା, ଉଭୟ ବିରୋଧି ତଥା ବୁଦ୍ଧିଜୀବୀଙ୍କ ପାଇଁ ଏହା ଆଲୋଚନାର କଥାବସ୍ତୁଟିଏ ହୋଇଛି।

କେନ୍ଦ୍ର ଏବଂ ରାଜ୍ୟରେ କେତେ ଜଣ ମନ୍ତ୍ରୀ ରହିବେ ତା'ର ଏକ ନିର୍ଦ୍ଦିଷ୍ଟ ସୀମା ଅଛି। ଏପର୍ଯ୍ୟନ୍ତ କେନ୍ଦ୍ରରେ ମନ୍ତ୍ରୀଙ୍କ ସଂଖ୍ୟା ସଂସଦର ସମୁଦାୟ ସଭ୍ୟ ସଂଖ୍ୟାର ୧୦ ପ୍ରତିଶତରୁ ଅଧିକ ହେଉନାହିଁ ଏବଂ ରାଜ୍ୟରେ ଏଇ ସଂଖ୍ୟା ୧୫ ପ୍ରତିଶତରେ ସୀମିତ ରହିଛି।

କେନ୍ଦ୍ରରେ ମନ୍ତ୍ରୀ ବାଛିବା ପ୍ରଧାନମନ୍ତ୍ରୀଙ୍କ କାମ। ପ୍ରଧାନମନ୍ତ୍ରୀଙ୍କ ଏହା ଏକ ବ୍ୟକ୍ତିଗତ ସ୍ୱତନ୍ତ୍ର ଅଧିକାର। ଦକ୍ଷତା, ଅଭିଜ୍ଞତା ସହ ବିଭିନ୍ନ ଅଞ୍ଚଳ, ସମ୍ପ୍ରଦାୟ ଏବଂ ରାଜ୍ୟରୁ ପଠାଯାଇଥିବା ନିର୍ବାଚିତ ପ୍ରତିନିଧିଙ୍କ ସଂଖ୍ୟା ମନ୍ତ୍ରୀ ପରିଷଦ ଗଠନ ବେଳେ ନିଜ ବିଚାରକୁ ନିଆଯାଇଥାଏ। ଏହା ଏକ ପୁରାତନ ଅଲିଖିତ ଅଭ୍ୟାସ। ସୁତରାଂ ସୀମିତ ସୀମା ଭିତରେ ମନ୍ତ୍ରୀ ପରିଷଦ ଗଠନ ବେଳେ କୌଣସି ଅଞ୍ଚଳ ବା ଗୋଷ୍ଠୀ ବାଦ୍ ପଡ଼ିଯିବା ସ୍ୱାଭାବିକ ଏବଂ ବର୍ତ୍ତମାନର ମିଳିତ ସରକାର ବ୍ୟବସ୍ଥା ବି ପ୍ରଧାନମନ୍ତ୍ରୀଙ୍କ ଏଇ ମନ୍ତ୍ରୀ ପରିଷଦ ନିଯୁକ୍ତି କାର୍ଯ୍ୟକୁ ଆହୁରି କଠିନ କରିଦେଇଛି।

ଭାରତ ସମ୍ବିଧାନରେ କ୍ୟାବିନେଟ ରାଷ୍ଟ୍ରମନ୍ତ୍ରୀ, ଉପମନ୍ତ୍ରୀ ଏପରି ସେମିତି କିଛି ବର୍ଣ୍ଣନା ନାହିଁ। ସମ୍ବିଧାନର ୭୪ ଧାରାରେ ଲେଖା ଅଛି, ଭାରତର ମାନ୍ୟବର ରାଷ୍ଟ୍ରପତିଙ୍କୁ ସାହାଯ୍ୟ ତଥା ଉପଦେଶ ଦେବାକୁ ଏଠି ଏକ "ମନ୍ତ୍ରୀ ପରିଷଦ" ରହିବ ଯାହାର ମୁଖ୍ୟ ହେବେ ପ୍ରଧାନମନ୍ତ୍ରୀ। କ୍ୟାବିନେଟ ତେଣୁ ଏକ ବ୍ରିଟିଶ ପାରମ୍ପରିକ ବ୍ୟବସ୍ଥା, ଯାହାକୁ ଏଠି ଚଳଣିରେ ରଖାଯାଇଛି।

କନ୍‌ସାଇଜ୍ ଅକ୍‌ସ୍‌ଫୋର୍ଡ ଇଂଲିଶ ଡିକ୍‌ସ୍‌ନାରୀ ଅନୁସାରେ କ୍ୟାବିନେଟ୍ ଅର୍ଥ ହେଉଛି ମିଟିଂ ପାଇଁ ପ୍ରସ୍ତୁତ ଥିବା ଏକ ଛୋଟ ପ୍ରାଇଭେଟ କୋଠରୀ। ଭାରତରେ ଯେଉଁ କ୍ୟାବିନେଟ ତଥା ମନ୍ତ୍ରୀ ପରିଷଦ ଗଠିତ ହେଉଛି, ପ୍ରକୃତରେ ଏଥିପାଇଁ ଏକ

ଛୋଟ କୋଠରୀଟି ଯଥେଷ୍ଟ ନୁହେଁ।

ବର୍ତ୍ତମାନର ଡକ୍ଟର ମନମୋହନ ସିଂହଙ୍କ ମନ୍ତ୍ରୀ ପରିଷଦରେ ୩୩ ଜଣ କ୍ୟାବିନେଟ ମନ୍ତ୍ରୀ, ୩୮ ଜଣ ରାଷ୍ଟ୍ରମନ୍ତ୍ରୀ ଏବଂ ୭ ଜଣ ସ୍ୱାଧୀନ ରାଷ୍ଟ୍ରମନ୍ତ୍ରୀ ରହିଛନ୍ତି। ଏମାନଙ୍କର ସମୁଦାୟ ସଂଖ୍ୟା ହେଉଛି ୭୮। ପ୍ରାୟ ଅନେକ ବର୍ଷ ଧରି ଭାରତରେ ମନ୍ତ୍ରୀ ମଣ୍ଡଳରେ ଆଉ ଉପମନ୍ତ୍ରୀ ରହୁ ନାହାଁନ୍ତି। କେନ୍ଦ୍ରୀୟ ମନ୍ତ୍ରୀ ପରିଷଦ ସମ୍ପ୍ରତି ଦୁଇ ସ୍ତରୀୟ।

ଦରମା ଏବଂ ଭତ୍ତାରେ ଯଦିଓ କ୍ୟାବିନେଟ ମନ୍ତ୍ରୀ ଏବଂ ରାଷ୍ଟ୍ରମନ୍ତ୍ରୀଙ୍କ ଭିତରେ ସେମିତି କିଛି ପ୍ରାର୍ଥକ୍ୟ ନାହିଁ, କ୍ଷମତା ଜାହିର କରିବାରେ କିନ୍ତୁ ପ୍ରାର୍ଥକ୍ୟ ରହିଛି। କ୍ୟାବିନେଟ ମିଟିଂକୁ କେବଳ କ୍ୟାବିନେଟ ପାହ୍ୟାର ମନ୍ତ୍ରୀମାନେ ଯାଇ ପାରିବେ। ରାଷ୍ଟ୍ରମନ୍ତ୍ରୀମାନେ କ୍ୟାବିନେଟର ଏହି କ୍ଷମତା ପୂର୍ଣ୍ଣ କୋଠରୀକୁ ଯିବାର ଅନୁମତି ମିଳି ନଥାଏ। ଅବଶ୍ୟ ସ୍ୱାଧୀନ ଦାୟିତ୍ୱରେ ଥିବା ରାଷ୍ଟ୍ରମନ୍ତ୍ରୀମାନେ କ୍ୟାବିନେଟ ମିଟିଂକୁ ଯାଇପାରିବେ। ଏଥିରେ କିନ୍ତୁ ସାମାନ୍ୟ କଟକଣା ରହିଛି। ଯେଉଁ କ୍ୟାବିନେଟ ମିଟିଂରେ ସ୍ୱାଧୀନ ରାଷ୍ଟ୍ରମନ୍ତ୍ରୀଙ୍କ ବିଭାଗ ନେଇ କିଛି ବିଷୟ କାର୍ଯ୍ୟସୂଚୀ ବା ଏଜେଣ୍ଡାରେ ଥାଏ ଏଇ ସ୍ୱାଧୀନ ରାଷ୍ଟ୍ରମନ୍ତ୍ରୀମାନେ କ୍ୟାବିନେଟ ମିଟିଂକୁ ଯିବାକୁ ଅନୁମତି ପାଇଥାନ୍ତି।

ମନ୍ତ୍ରୀମାନେ ସୁବିଧା ଏବଂ ସୁଯୋଗ ଉପଭୋଗ କରିବାରେ ବି କିଛି ତାରତମ୍ୟ ରହିଛି। କ୍ୟାବିନେଟ ମନ୍ତ୍ରୀମାନେ ନିଜ ପାଇଁ ଜଣେ ଆଇ.ଏ.ଏସ୍. ଅଫିସରଙ୍କୁ ନିଜର ବ୍ୟକ୍ତିଗତ ସଚିବ ଭାବେ ରଖି ପାରିବେ। ଏ ବ୍ୟବସ୍ଥା ଏକ ପରମ୍ପରା ନା ଏଥିପାଇଁ କିଛି ନିୟମ ଅଛି, ଏହା ସ୍ପଷ୍ଟ ନୁହେଁ। ରାଷ୍ଟ୍ରମନ୍ତ୍ରୀମାନେ କିନ୍ତୁ ଜଣେ ଅଫିସର ଅନ ସ୍ପେସିଆଲ ଡ୍ୟୁଟିଙ୍କୁ ନିଜର ବ୍ୟକ୍ତିଗତ ସଚିବ କରି ନିଯୁକ୍ତି ଦେଇ ପାରିବେ। କ୍ୟାବିନେଟ ମନ୍ତ୍ରୀଙ୍କର ୧୬ଜଣ ଷ୍ଟାଫ୍ ରହୁଥିବା ବେଳେ ଜଣେ ରାଷ୍ଟ୍ରମନ୍ତ୍ରୀଙ୍କ ପାଇଁ ୧୩ ଜଣ ଷ୍ଟାଫ୍ ରହିବାର ବ୍ୟବସ୍ଥା ରହିଛି।

ଭତ୍ତା, ଦରମା ଏବଂ ଅନ୍ୟ କିଛି ସୁବିଧା ପାଇବାରେ ଉଭୟ କ୍ୟାବିନେଟ ଏବଂ ରାଷ୍ଟ୍ରମନ୍ତ୍ରୀ ସମାନ ଥାଆନ୍ତି। ଉଭୟଙ୍କ ପାଇଁ ଯେଉଁ ବସାଘର ଯୋଗାଇ ଦିଆଯାଏ, ତାହା ଆଠ ହଜାର ଏକଶହ ବର୍ଗ ଫୁଟ ବିଶିଷ୍ଟ ହୋଇଥାଏ। ଏଥିରେ ୬ କିମ୍ବା ୭ ଷ୍ଟାଫ କ୍ୱାଟର ଥାଏ। ଉଭୟ ପାହ୍ୟାର ମନ୍ତ୍ରୀ ମାସିକ ଏକ ଲକ୍ଷ ଟଙ୍କାର ଦରମା ତଥା ଭତ୍ତା ପାଆନ୍ତି। ପ୍ରତି ମନ୍ତ୍ରୀଙ୍କ ଘରେ ତିନୋଟି ଟେଲିଫୋନ ଥାଏ ଏବଂ ସେଥିରୁ ଗୋଟିଏ ଟେଲିଫୋନରେ ମାଗଣାରେ ଆଇ.ଏସ୍.ଡ଼ି., ଏସ୍.ଟି.ଡି.ର ବ୍ୟବସ୍ଥା ରହିଥାଏ। ଗାଡ଼ି, ପେଟ୍ରୋଲ ପ୍ରତି ମନ୍ତ୍ରୀଙ୍କୁ ମାଗଣାରେ ମିଳେ।

ପ୍ରତି ମନ୍ତ୍ରୀଙ୍କ ଘରେ ଅଢ଼େଇ ଲକ୍ଷ ଟଙ୍କାର ଆସବାବପତ୍ର ରହିଥାଏ ଏବଂ ପ୍ରତି ମନ୍ତ୍ରୀଙ୍କୁ ମାଗଣାରେ ୪୮ଟି ବିଜିନେସ୍ କ୍ଲାସ ପ୍ଲେନ୍ ଟିକେଟ ମିଳିଥାଏ। ଉଭୟ

କ୍ୟାବିନେଟ ତଥା ରାଷ୍ଟ୍ରମନ୍ତ୍ରୀଙ୍କ ବିଦେଶ ଗ୍ରସ୍ତ କାର୍ଯ୍ୟକ୍ରମ କେବଳ ପ୍ରଧାନମନ୍ତ୍ରୀ ହିଁ ଅନୁମୋଦନ କରନ୍ତି ଏବଂ ଅସଲ କଥା ହେଲା ପ୍ରଧାନମନ୍ତ୍ରୀ ଇସ୍ତଫା ଦେଲେ ସମୁଦାୟ ମନ୍ତ୍ରୀ ପରିଷଦ ଭାଙ୍ଗିଯାଏ ଏବଂ ଜଣେ ମନ୍ତ୍ରୀଙ୍କର ଭୁଲ୍ ପାଇଁ ମନ୍ତ୍ରୀ ପରିଷଦ ସାମଗ୍ରିକ ଭାବେ ଦାୟୀ ରହନ୍ତି।

ସ୍ପଷ୍ଟ କହିଲେ ଭାରତର ମନ୍ତ୍ରୀ ପରିଷଦ ଏକ ଶକ୍ତ କ୍ଷମତାଧାରୀ ଦେଶ ପରିଚାଳନା କମିଟି। ଏଇ କମିଟିରେ ଦେଶ ପାଇଁ ନୀତି ନିର୍ଦ୍ଧାରଣ କରାଯାଏ ଏବଂ ସାଧାରଣ ଜନତାର ସ୍ୱପ୍ନକୁ ବାସ୍ତବତାର ରୂପ ଦିଆଯାଏ। ଏ ଦେଶକୁ ଏକ ଭୟଶୂନ୍ୟ ପ୍ରଗତି ପଥରେ ଆଗେଇ ନେବାକୁ ପ୍ରଧାନମନ୍ତ୍ରୀଙ୍କ ନେତୃତ୍ୱରେ ଗଠିତ ହେଉଥିବା ମନ୍ତ୍ରୀ ପରିଷଦ ହିଁ ଦାୟୀ ରହେ। ସେଥିରେ କ୍ୟାବିନେଟ କିମ୍ବା ରାଷ୍ଟ୍ରମନ୍ତ୍ରୀର ବାଛ ବିଚାର ନଥାଏ।

ପ୍ରଧାନମନ୍ତ୍ରୀ ମନମୋହନ ସିଂଙ୍କର ସମ୍ପ୍ରତି ମନ୍ତ୍ରୀ ମଣ୍ଡଳ ପ୍ରକୃତରେ ଏକ ନିଆରା ମନ୍ତ୍ରୀ ମଣ୍ଡଳ। ଏଠି ଅଭିଜ୍ଞ ତଥା ଯୁବ ଶକ୍ତିର ଏକ ଚମତ୍କାର ସମନ୍ୱୟ ହୋଇଛି। ସତସ୍ତରୀ ବର୍ଷିୟ ପ୍ରଧାନମନ୍ତ୍ରୀଙ୍କର ଅଠେଇଶି ବର୍ଷୀୟା "ଆଗଥା ସାଙ୍ଗମା" ଏବେ ସହକର୍ମୀ। ଏକାଠି ଏମାନେ କାମ କରିବେ। ଦେଶକୁ ଦିଗ୍ ଦର୍ଶନ ଦେବେ।

ଭାରତୀୟମାନେ ଏ ମନ୍ତ୍ରୀ ପରିଷଦରୁ ଅନେକ ଆଶା ରଖିଛନ୍ତି। ସେ ଆଶା ହେଉଛି କଂଗ୍ରେସ ଏବଂ ୟୁପିଏର ସହଯୋଗୀମାନେ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି ତାହା ପାଳନ କରିବେ ଏବଂ ସାରା ପୃଥିବୀକୁ ଜାବୁଡ଼ି ଧରିଥିବା ଆର୍ଥିକ ମାନ୍ଦାବସ୍ଥାରେ ଭାରତ ଯେପରି କ୍ଷତିଗ୍ରସ୍ତ ନ ହେବ ତାହା ଦେଖିବେ।

ପ୍ରଧାନମନ୍ତ୍ରୀ ତାଙ୍କ ମନ୍ତ୍ରୀ ପରିଷଦକୁ ଏବେ ଯଥାର୍ଥରେ କହୁଥିଲେ - *'କାମ କର ଏବଂ କାମ କରି ଦେଖାଅ। ୱାର୍କ ଆଣ୍ଡ ଡେଲିଭର, ମିଷ୍ଟର ମିନିଷ୍ଟର।'*



# ପୁରୁଣା ଅମଲାତନ୍ତ୍ର

ଭାରତୀୟ ଅମଲାତନ୍ତ୍ର ବିରୁଦ୍ଧରେ ଏପରି ଅଭିଯୋଗ ଆସେ ଯେ, ଏ ଅମଲାତନ୍ତ୍ର ବୁଢ଼ା ହୋଇଗଲାଣି। ପୁରାପୁରି ମନ୍ଥର, ଚିଡ଼୍‌ଚିଡ଼ା ଏବଂ ସ୍ଲୋ। ନୂଆ କଳ୍ପନା, ନୂଆ ସ୍ୱପ୍ନ ଏମାନଙ୍କର ନାହିଁ। ଏମାନେ ଗତାନୁଗତିକ ଢ଼ଙ୍ଗରେ ଚାଲନ୍ତି।

ଅମଲାତନ୍ତ୍ର କହିଲେ ସମସ୍ତ ସରକାରୀ କର୍ମଚାରୀଙ୍କୁ ହିଁ ବୁଝାଏ। ଏମାନେ ଚତୁର୍ଥ ଶ୍ରେଣୀ କର୍ମଚାରୀରୁ ମୁଖ୍ୟ ବା କ୍ୟାବିନେଟ ସଚୀବଙ୍କ ପର୍ଯ୍ୟନ୍ତ। ଏମାନେ ଏକ ନିର୍ଦ୍ଦିଷ୍ଟ ସରକାରୀ ପଦ୍ଧତି ତଥା ନିୟମ ଭିତରେ କାମ କରନ୍ତି, ଦେଶ ଚଳାନ୍ତି ଏବଂ ଲୋକଙ୍କ ସମସ୍ୟା ବୁଝନ୍ତି।

ଅମଲାତନ୍ତ୍ରର ତାତ୍ତ୍ୱିକ ସିଦ୍ଧାନ୍ତ ହେଲା, ସଂସଦୀୟ ଗଣତନ୍ତ୍ରର ପରିଧି ଭିତରେ ଏହା ଚାଲେ ଏବଂ ଗତିଶୀଳ ହୁଏ। ଅମଲାତନ୍ତ୍ର ଶକ୍ତ ଏବଂ ସୃଜନଶୀଳ ନ ହେଲେ ଗଣତନ୍ତ୍ର ଦୁର୍ବଳ ହୋଇଯାଏ।

ଏବେ କେନ୍ଦ୍ର ତଥା ରାଜ୍ୟରେ ନୂଆ ସରକାର ଗଠିତ ହେବା ପରେ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂ ଏବଂ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କର ବରିଷ୍ଠ ଶାସନ ପଦାଧିକାରୀମାନଙ୍କୁ ତାଗିଦ୍ କରି ଦେଇଛନ୍ତି। ପ୍ରଧାନମନ୍ତ୍ରୀଙ୍କ ତାଗିଦ୍ ହେଉଛି, ଅଫିସରମାନେ ସ୍ୱପ୍ନ ବିଳାସୀ ହୁଅ, ସ୍ୱପ୍ନର ରୂପାୟନ ପାଇଁ ନୂଆ ଯୋଜନା ଗଢ଼। ଯେଉଁ ପ୍ରଶାସନରେ ନୂଆ ସୃଜନଶୀଳ ଚିନ୍ତା ନାହିଁ ସେ ପ୍ରଶାସନରେ ସୁଶାସନ ଆସିବା କଷ୍ଟ।

ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ବି ସେଇ ଅନୁରୂପ ନିର୍ଦ୍ଦେଶ - ସଚୀବମାନେ ଗାଁକୁ ଯାଅ। କେବଳ ରିଭ୍ୟୁ ମିଟିଙ୍ଗ୍‌ରେ ସମୟ କାଟନି। ସାଧାରଣ ଲୋକଙ୍କ ସମସ୍ୟା ସହ ସଂଶ୍ଳିଷ୍ଟ ଥିବା ମୂଳ ବାସ୍ତବତାକୁ ସିଧାସଳଖ ଦେଖ ଏବଂ ତାକୁ ନେଇ ଯୋଜନା କର। ମୂଳ କଥା କ'ଣ ନ ଜାଣି ସଚୀବାଳୟର ଶୀତତାପ ନିୟନ୍ତ୍ରିତ କୋଠରୀରେ ବସି ଓଡ଼ିଶାର ଉତ୍‌ଥାନ କଥା ଚିନ୍ତା କରିବାରେ କିଛି ମାନେ ନଥାଏ।

ଗତ କିଛି ମାସ ତଳେ କଂଗ୍ରେସର ଯୁବନେତା ରାହୁଲ ଗାନ୍ଧୀ ଦଳିତ ମହିଳା କଳାବତୀର କୁଡିଆ ଘରେ ରାତ୍ରି ଭୋଜନ କଲାବେଳେ ଅନେକ ସମାଲୋଚକଙ୍କ ମତରେ ଥିଲା ଏହା ରାହୁଲଙ୍କ ଏକ ରାଜନୈତିକ ଭେଳିକି। ଏଥିରେ ମୂଳ ବାସ୍ତବତା

ଜାଣିବାର ଇଛା ଅପେକ୍ଷା ପ୍ରଦର୍ଶନ ଭାବ ବେଶି । ତେବେ ଭେଳିକି ହେଉ ବା ବାସ୍ତବତା, କଳାବତୀମାନଙ୍କ ଅବସ୍ଥା କଥା ତାଙ୍କ ନିଜ ଘରମାନଙ୍କୁ ଯାଇ ଶାସକଟିଏ ନିଜ ଆଖିରେ ଦେଖି ଆସିବାର ଉଦ୍ୟମ ଯେ ଏକ ସ୍ୱାଗତଯୋଗ୍ୟ ଉଦ୍ୟମ ଏହାକୁ ଗ୍ରହଣ କରିନେବା ଭଲ ।

ଭାରତୀୟ ଅମଲାତନ୍ତ୍ରର ବଡ଼ ଦୁର୍ବଳତା ହେଲା, ଏହାର ଅନେକ ପଦାଧିକାରୀ ତୃଣମୂଳର ଚିତ୍ର ନିଜେ ନ ଜାଣି ଯୋଜନା ପାଇଁ ନୋଟ୍ ଲେଖନ୍ତି । ପେଜ, ଆମ୍ବକୋଇଲି, ବିରି ଡାଉ, ଧାନ ଫୁଲ କ'ଣ ନ ଦେଖି ଖାଦ୍ୟ ସୁରକ୍ଷା ଏବଂ କୃଷି ନୀତି ନେଇ ବ୍ଲୁ ପ୍ରିଣ୍ଟ ତିଆରି କରି ଦିଅନ୍ତି । ଆଜକୁ ପ୍ରାୟ ଚାଳିଶି ବର୍ଷ ତଳେ କଲେଜରେ ପାଠ ପଢୁଥିବା ବେଳେ ମୋର ଜଣେ ସହରୀ ବନ୍ଧୁ ଧାନ ଫୁଲ ଏବଂ ତା'ର ରଙ୍ଗ କେମିତି ଦେଖିବାକୁ ମୋ ସାଙ୍ଗରେ ସେ ମୋ ଗାଁକୁ ଯାଇଥିଲା । ସେ ଜଣେ ଏବେ ବଡ଼ ପ୍ରଶାସନିକ ଅଫିସର । ଏବେ ଗାଁକୁ ଯାଇ ଧାନଫୁଲ ଦେଖିବାର ଇଚ୍ଛା ତା'ପାଖରେ ଆଉ ଅଛି କି ନା, ଜାଣେନା ।

ପ୍ରଶାସନିକ ଅଧିକାରୀଙ୍କୁ ଆମ ମାନ୍ୟବର ପ୍ରଧାନମନ୍ତ୍ରୀ ଏବଂ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶର ଅନ୍ତର୍ନିହିତ ସଂଦେଶ ହେଉଛି, ସେ ପୁରୁଣା ଅମଲାତନ୍ତ୍ରର ଗତାନୁଗତିକତାର ଧାରା ବର୍ତ୍ତମାନ ଭାଙ୍ଗିବା ଦରକାର । ମନ୍ଥର ହୋଇ ପଡ଼ିଥିବା ପ୍ରଶାସନରେ କ୍ଷିପ୍ରତା ଆସିବା ଉଚିତ । ପ୍ରଶାସନିକ ଗତି ଧୀର ହୋଇଗଲେ ଏହା ପ୍ରତ୍ୟାଖ୍ୟାନ ବୋଲି ଗଣାଯାଏ ।

ପୂର୍ବ ଏସିଆ ଦେଶମାନଙ୍କରେ ଆର୍ଥିକ ଅଭିବୃଦ୍ଧି ନେଇ ଏବେ ବିଶ୍ୱବ୍ୟାଙ୍କର ରିପୋର୍ଟଟିଏ ପ୍ରକାଶ ପାଇଛି । ଏଥିରେ ଅଛି, ପୂର୍ବ ଏସିଆ ରାଷ୍ଟ୍ର ଅର୍ଥାତ ସିଙ୍ଗାପୁର, ହଂକଂ, ମାଲଏସିଆ, ଥାଇଲାଣ୍ଡରେ ଯେଉଁ ଆର୍ଥିକ ଅଭିବୃଦ୍ଧି ଘଟିଛି ଏଥିପାଇଁ ଏଠାରେ ଦକ୍ଷ, ସୃଜନଶୀଳ ଅମଲାତନ୍ତ୍ରର ଅବଦାନ ବେଶି । ସମ୍ଭବତଃ ଏ ରିପୋର୍ଟ ଭାରତର ମାନ୍ୟବର ପ୍ରଧାନମନ୍ତ୍ରୀ ତଥା ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ପଦାଧିକାରୀଙ୍କୁ ଏପରି ତାଗିଦ୍ କରିବାକୁ ପ୍ରକାରାନ୍ତରେ ପ୍ରେରିତ କରିପାରିଥାଏ ।

ଆମ ଏ ଅମଲାତନ୍ତ୍ର ଏତେ ମନ୍ଥର କାହିଁକି ବୋଲି ପ୍ରଶ୍ନ ହେଲେ ଉତ୍ତରରେ ଏହାର ଦୁଇଟି କାରଣ ଆସେ । ଏଇ କାରଣ ଭାରତୀୟ ଅମଲାତନ୍ତ୍ରର ପ୍ରକ୍ରିୟା ଏବଂ ଗଠନକୁ ନେଇ । ପ୍ରାୟ ଅଢ଼େଇ ଶହ ବର୍ଷ ତଳେ ବ୍ରିଟିଶ ଶାସକମାନେ ତାଙ୍କ ଶାସନର ଦୃଢ଼ତା ପାଇଁ ଏଠି ଯେଉଁ ଅମଲାତାନ୍ତ୍ରିକ ଢ଼ାଞ୍ଚା ଏବଂ ଏହାର ପଦ୍ଧତି ତଥା ସ୍ୱରୂପ ଠିକ କରିଥିଲେ ଏହା ଏବେ ବି ଚାଲିଛି ।

ପ୍ରଥମେ ପ୍ରକ୍ରିୟା କଥା ଆଲୋଚନାକୁ ଅଣାଯାଇ ପାରେ । ପ୍ରକ୍ରିୟା ଅର୍ଥ ଇଂରାଜୀରେ ପ୍ରୋସେଡ୍ୟୁୟର । ଭାରତର ସମସ୍ତ ପ୍ରଶାସନିକ ନିଷ୍ପତ୍ତି ସେଇ ପୁରୁଣା

ପ୍ରୋସେଡ୍ୟୁୟରରେ ଏଠି ଚାଲୁଛି । ଏଇ ଯେମିତି - ଦରଖାସ୍ତଟିଏ ପାଇଲା ପରେ ବଡ଼ ହାକିମ ଏଥିରେ 'ପ୍ଲିଜ୍ ପୁଟ ଅପ୍' ଲେଖି ତଳକୁ ପଠାନ୍ତି । ତଳେ ସହକାରୀ କିରାଣୀ ବାବୁ ଏଥିନେଇ ନୋଟ୍ ଲେଖି ଏବଂ ଏ ସମ୍ପର୍କିତ ପୂର୍ବ କାଗଜ ପତ୍ର ଯୋଡି ଦେଇ ଏହାକୁ ପୁଣି ଉପରକୁ ପଠାଇ ଦିଅନ୍ତି । ଯେଉଁ ପାହାଚ ଦେଇ ବଡ଼ ହାକିମଙ୍କ ଠାରୁ କାଗଜଟି ତଳକୁ ଆସିଥାଏ , ପୁଣି ସେଇ ବାଟ ଦେଇ ଉପରକୁ ଚାଲିଯାଏ । ଅନେକ ସମୟରେ ବଡ଼ ହାକିମ ଏଥିରେ କିଛି ନ ଲେଖି 'ଆଜ୍ ପ୍ରପୋଜଡ୍'ରେ ନିଜ ଦସ୍ତଖତ କରି ଦିଅନ୍ତି । ଏଇ ନିଷ୍ପତ୍ତି ପାଇଁ ବି ମାସ ମାସ ସମୟ ଲାଗେ । କାରଣ, ବଡ଼ ହାକିମଙ୍କ ଅନେକ ମିଟିଂ ଏବଂ ସେମିନାର ଥାଏ ।

ଦ୍ୱିତୀୟ କାରଣଟି ହେଉଛି, ଅମଲାତନ୍ତ୍ରର ଗଠନ ବା ଷ୍ଟ୍ରକ୍‌ଚର । ସେଇ ଅଫିସ୍ ଗୃହ, ଅଫିସର ବଡ଼ବାବୁ, କିରାଣୀ, ଗଦାଗଦା ଧୂଳିଜମା ଫାଇଲ ଏବଂ କିରାଣୀ ବସିବାକୁ ଭଙ୍ଗା ଚୌକି ଏବଂ ଟେବୁଲ । ଏ ଆମର ଅମଲାତନ୍ତ୍ରର ରୂପ । ଧୀର ମନ୍ଥର ଗତିରେ ବୁଲୁଥିବା ସିଲିଂ ଫ୍ୟାନ ତଳେ ଭାରତର ଲକ୍ଷ ଲକ୍ଷ କର୍ମଚାରୀ ଏପରି କାମ କରନ୍ତି ।

ପୃଥିବୀର ପ୍ରାୟ ସମସ୍ତ ଉନ୍ନତ ରାଷ୍ଟ୍ରରେ ଅମଲାତାନ୍ତ୍ରିକ ପ୍ରକ୍ରିୟା ଏବଂ ଗଠନରେ ଆମୂଳଚୂଳ ପରିବର୍ତ୍ତନ ଆସିଲାଣି । ସବୁଠି ଏବେ 'ଇ-ଅଫିସ' । ପଦାଧିକାରୀମାନେ ଏକଦମ୍ ପ୍ରଫେସନାଲ । ଭାରତୀୟ ଅମଲାତନ୍ତ୍ରରେ କିନ୍ତୁ ସେଇ ନୋଟ୍, ପ୍ଲିଜ ପୁଟ ଅପ୍, ଅର୍ଜେଣ୍ଟ ପରି କିଛି ପୁରୁଣା ଶବ୍ଦକୁ ଆମେ ଏବେ ବି ଜାବୁଡ଼ି ରଖିଛୁ । ଏଥିରେ ତେଣୁ ପରିବର୍ତ୍ତନ ଆସିବା ଦରକାର ।

ପରିବର୍ତ୍ତନ ପାଇଁ ଯେ ଏଠି ଚିନ୍ତା ନାହିଁ ତାହା ନୁହେଁ । ପ୍ରଶାସନିକ ସଂସ୍କାର ନେଇ ଏଠି ଅନେକ କମିଟି ବସିଛି । କମିଟି ରିପୋର୍ଟ ଆସିଛି । ଏ ରିପୋର୍ଟ କିନ୍ତୁ କାର୍ଯ୍ୟକାରୀ ହେଉନାହିଁ । ସରକାରୀ ଲାଇବ୍ରେରୀ ମାନଙ୍କରେ ଏ ରିପୋର୍ଟ ଉପରେ ଏବେ ଧୂଳି ବି ଲାଗିଯିବଣି ।

ଏ ଆଲୋଚନାର ଶେଷ କଥା ହେଲା, ଭାରତୀୟ ଅମଲାତନ୍ତ୍ରର ମନ୍ଥରତା ପାଇଁ ଦରମା ଆଉ ପ୍ରସଙ୍ଗ ନୁହେଁ । ଏକ ଚଳଚଞ୍ଚଳ ପ୍ରଶାସନ ପାଇଁ ମାନସିକତା ଦରକାର ହେଉଛି । ସୁତରାଂ, ଆମ ଅମଲାତନ୍ତ୍ର ସଂବେଦନଶୀଳ, ଦୁର୍ନୀତି ମୁକ୍ତ ଏବଂ 'ଇନୋଭେଟିଭ୍' ହେଉ, ଏ କଥା ସାଧାରଣ ଜନତା ବି ଚାହେଁ ଯେଉଁ କଥା ଭାରତର ପ୍ରଧାନମନ୍ତ୍ରୀ ଏବଂ ଓଡ଼ିଶା ମୁଖ୍ୟମନ୍ତ୍ରୀ ଚାହାଁନ୍ତି ।



# ସମଲିଙ୍ଗୀ ଅଧିକାର

ସମଲିଙ୍ଗୀ ଅଧିକାର ନେଇ ଏବେ ଚର୍ଚ୍ଚା ସବୁଠି। ଏ ଦେଶର ଖୋଦ୍ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ତଥା ଆଇନ ମନ୍ତ୍ରୀ ଏ ସମ୍ପର୍କରେ ସାଧାରଣରେ ବିତର୍କ ପାଇଁ ଆହ୍ୱାନ ଦେଲେଣି। ଭାରତୀୟ ପିଙ୍ଗଳ କୋର୍ଡର ୩୭୭ ଧାରାର ଉଚ୍ଛେଦ ପାଇଁ ଏ ଆହ୍ୱାନରେ ଆସିଛି।

ସମଲିଙ୍ଗୀ ଅଧିକାର ଦାବି କରିବା ଦିନେ ଏଠି ଏକ ଫେସନ ଥିଲା। ପରେ ଏହା ଏକ ଆନ୍ଦୋଳନରେ ରୂପାନ୍ତରିତ ହେଲା ଏବଂ ଏବେ ଏହା ଏକ ଆଶ୍ଚର୍ଯ୍ୟ ଯେ, ସମଲିଙ୍ଗୀ ଅଧିକାର ଦାବି ସମ୍ପ୍ରତି ସର୍ବୋଚ୍ଚ ରାଜନୈତିକ ସ୍ତରରେ ପହଞ୍ଚି ସାରିଛି।

ପିଙ୍ଗଳ କୋର୍ଡର ତିନିଶହ ସତସ୍ତରୀ ଧାରା ଉଚ୍ଛେଦ ନେଇ ଏକ ସମ୍ଭାବ୍ୟ ଆଶା ସୃଷ୍ଟି ହେବା ପରେ ସମଲିଙ୍ଗୀମାନେ ରାଜରାସ୍ତାକୁ ଆସି ଉତ୍ସବ ବନେଇଲେଣି। ଏବଂ ଯୁକ୍ତି କଲେଣି ଏଇ ସମ୍ପର୍କକୁ ଆଇନଗତ ସ୍ୱୀକୃତି ମିଳିଗଲେ ସମଲିଙ୍ଗୀମାନେ ପରସ୍ପର ସହ ବିବାହ କରି ପାରିବେ ଏବଂ ଏଡ୍‌ସ୍ ତଥା ଏଚ୍.ଆଇ.ଭି. ରୋକିବାକୁ ଏ ଅଧିକାର ବେଶ୍ ସହାୟକ ହେବ।

ଭାରତୀୟ ପିଙ୍ଗଳ କୋର୍ଡର ସବୁ ସେକ୍‌ସନ ଅପରାଧ ସମ୍ପର୍କିତ ନ୍ୟାୟ ଦେବା ନିମନ୍ତେ ଉଦ୍ଦିଷ୍ଟ। ଏଇ କୋର୍ଡର ୩୭୭ ଧାରା କିନ୍ତୁ ଅନନ୍ୟ। ଏଇ ଧାରା ଅନୁସାରେ ଯେ କୌଣସି ଅପ୍ରାକୃତିକ ଯୌନ ସମ୍ପର୍କ ଏଠି ମନା। ଏହା ଏକ ଧର୍ତ୍ତବ୍ୟ ଅପରାଧ। ଏ ସମ୍ପର୍କ ପୁରୁଷ ପୁରୁଷ ଭିତରେ ହେଉ, ବା ସ୍ତ୍ରୀ ସ୍ତ୍ରୀ ଭିତରେ ହେଉ କିମ୍ବା ମଣିଷ ତଥା ପଶୁ ଭିତରେ ହେଉ। ଆଜୀବନ କାରାଦଣ୍ଡର ଏଥିନେଇ ବ୍ୟବସ୍ଥା ରହିଛି। ଏ ଲେଖକ ଆଇନର ଛାତ୍ର ଥିବାବେଳେ ଏ ଧାରାର ତର୍ଜମା ଉପରେ ବିଶେଷ ରୁଚି ବି ରଖିଥିଲା।

ଏବେ ପ୍ରଶ୍ନ ଆସିବଣି ଏ ସମଲିଙ୍ଗୀ ସମ୍ପର୍କ ପ୍ରକୃତରେ କ'ଣ? ଉତ୍ତର ହେଲା, ଏ ସମ୍ପର୍କ ସାଧାରଣତଃ ଦୁଇ ପ୍ରକାରର। ପୁରୁଷ ପୁରୁଷ ଭିତରେ ଯୌନ ସମ୍ପର୍କ ଥିଲେ ଏମାନଙ୍କୁ ପୁରୁଷ ସମଲିଙ୍ଗୀ ବା 'ଗେ' କୁହାଯାଏ। ଏଇ ସମ୍ପର୍କ ସ୍ତ୍ରୀ ଏବଂ ସ୍ତ୍ରୀ ଭିତରେ ରହିଲେ ଏମାନଙ୍କୁ ସ୍ତ୍ରୀ ସମଲିଙ୍ଗୀ ବା 'ଲେସ୍‌ବିଆନ୍' କୁହାଯାଏ। ପୃଥିବୀର ପ୍ରାୟ ସବୁ ସମାଜରେ ଏପରି ସମଲିଙ୍ଗୀ ଅଛନ୍ତି। ଅତୀତରେ ମଧ୍ୟ ଥିଲେ। ଭାରତରେ ବି ଏମାନେ ଅତୀତରେ ଥିଲେ ଏବଂ ବର୍ତ୍ତମାନ ଅଛନ୍ତି। ଏକ ସର୍ଭେକ୍ଷଣ ଅନୁଯାୟୀ ଭାରତରେ

ସମଲିଙ୍ଗିଙ୍କ ସଂଖ୍ୟା ପ୍ରାୟ ୨୫ ନିୟୁତ ଏବଂ ଭାରତୀୟ ଗ୍ରାମାଞ୍ଚଳରେ ଅପ୍ରାକୃତିକ ଯୌନ ସମ୍ପର୍କରେ ଲିପ୍ତ ଥିବା ବ୍ୟକ୍ତିଙ୍କ ସଂଖ୍ୟା ଅଧିକ। ଏ କଥା ବି ସତ ଯେ, ପୃଥିବୀରେ ସବୁ ସମାଜ ଏଇ ସମଲିଙ୍ଗୀ ସମ୍ପର୍କକୁ ଏକ ପାପ ତଥା ସାମାଜିକ କଳଙ୍କ ଭାବେ ଦେଖେ।

ଅନେକ ପାଶ୍ଚାତ୍ୟରାଷ୍ଟ୍ର ସମ୍ପ୍ରତି ଏଇ ସମଲିଙ୍ଗୀମାନଙ୍କୁ ଏକ ସାମାଜିକ ଗୋଷ୍ଠୀ ଭାବେ ଗ୍ରହଣ କଲେଣି। ଏମାନଙ୍କର ଏକ ସାମାଜିକ ପରିଚୟକୁ କିଛି ଦେଶ ଆଇନଗତ ସ୍ୱୀକୃତି ଦେଲେଣି। ସୁତରାଂ ଭାରତରେ ଏ ସମ୍ପର୍କରେ ଯେଉଁ ଆନ୍ଦୋଳନ ରହିଛି ଏହା ପାଶ୍ଚାତ୍ୟରୁ ଧାର୍ କରି ଆଣିଥିବା ଚିନ୍ତାର ଏକ ପ୍ରତିଫଳନ ମାତ୍ର। ଏହା ଜଗତିକରଣର ପ୍ରଭାବ ବି ହୋଇପାରେ।

ସମଲିଙ୍ଗୀ ଅଧିକାର ନେଇ ଭାରତରେ ଏବେ ଦୁଇଟି ଗୋଷ୍ଠୀ। ଏମାନଙ୍କ ମତ ସପକ୍ଷରେ ଆସେ; ବିପକ୍ଷରେ ମଧ୍ୟ ଆସେ। ପ୍ରଥମେ ସପକ୍ଷବାଦୀଙ୍କ କଥା ଆଲୋଚନାକୁ ଏଇଠି ଅଣା ଯାଇପାରେ।

ସମଲିଙ୍ଗୀ ସମର୍ଥକମାନେ କହନ୍ତି, ସମଲିଙ୍ଗୀ ଯୌନ ସମ୍ପର୍କ, ସ୍ୱଭାବିକ ଯୌନ ସମ୍ପର୍କର ଏକ ବିକଳ୍ପ ପନ୍ଥା। ସୁଖପାଇଁ ବିକଳ୍ପ ପନ୍ଥା ବି ରହିବା ଉଚିତ। ଏମାନଙ୍କ ଦ୍ୱିତୀୟ ଯୁକ୍ତି ହେଲା, ଭାରତରେ ଏଡ୍‌ସ୍ ରୋଗୀଙ୍କ ବୃଦ୍ଧି ନିମନ୍ତେ ଏଇ ସମଲିଙ୍ଗୀମାନେ ଦାୟୀ। କାରଣ ହେଉଛି ଏମାନଙ୍କୁ ଚିହ୍ନଟ କରିବା କଷ୍ଟ। ସାମାଜିକ କଳଙ୍କର ଭୟ ଏବଂ ଆଇନର ଚାପ ହେତୁ ଏମାନେ ଲୁଚି ରହୁଛନ୍ତି। ସମଲିଙ୍ଗୀକୁ ତେଣୁ ଚିକିତ୍ସା କରିବା ସମ୍ଭବ ହେଉନାହିଁ। ଏଡ଼ସ୍ ବଢ଼ିଛି।

ସମଲିଙ୍ଗୀ ଅଧିକାର ସମ୍ପର୍କରେ ସିନେମା କରୁଥିବା ଲେଖକ ଲେଖିକାମାନେ ଆଉ ଟିକିଏ ଆଗେଇ ଯାଇ ଅଧିକ କିଛି ଯୁକ୍ତି ଦିଅନ୍ତି। କୁହନ୍ତି- କୌଣସି ଯୌନ ସଂଭୋଗ ପାଇଁ ପ୍ରାକୃତିକ ଏବଂ ଅପ୍ରାକୃତିକର କିଛି ବାଛ ବିଚାର ରହିବା ଉଚିତ ନୁହେଁ। ଯୌନ ସୁଖପାଇଁ ଏହା ଏକ ପସନ୍ଦର କଥା। ମାନବୀୟ ରୁଚିକୁ ତେଣୁ ଆଇନ ସ୍ୱିକୃତି ମିଳିବା ଦରକାର।

ଏ ଯୁକ୍ତିରେ ପ୍ରକୃତରେ ଅବଶ୍ୟ ସେମିତି କିଛି ପ୍ରଗତିଶୀଳତା କଥା ଥିବାର ଜଣାଯାଏନାହିଁ। ଏହା ବାସ୍ତବରେ ଏକ ପ୍ରାକ୍ ସାମାଜିକ ଏବଂ ପ୍ରାକ ସଭ୍ୟତାର ଅବସ୍ଥାର ଚିନ୍ତା - ଯେଉଁ ଅବସ୍ଥାରେ ଯୌନ ସମ୍ପର୍କ ନେଇ ପଶୁ ଆଉ ମଣିଷ ଭିତରେ କିଛି ପ୍ରଭେଦ ନଥିଲା। ଦାର୍ଶନିକ ହବ୍‌ସ୍ ଏହାକୁ ଏକ ନାଁ ଦେଇଛନ୍ତି - 'ଷ୍ଟେଟ୍ ଅଫ୍ ନେଚର'।

ସମଲିଙ୍ଗୀ ସମ୍ପର୍କ ଆଇନତଃ ସିଦ୍ଧ ହୋଇଗଲେ ଏହା ଯେ ଭାରତୀୟ ସମାଜ ପ୍ରତି ମୋଟେ ଶୁଭଙ୍କର ହେବନି, ଅନ୍ୟ ଏକ ଗୋଷ୍ଠୀ ମତ ଦିଏ। ଏମାନେ ସମଲିଙ୍ଗୀ

ଅଧିକାରର ବିରୋଧି ଗୋଷ୍ଠୀ। ବିରୁଦ୍ଧ ମତ ଦେଉଥିବା ଗୋଷ୍ଠୀ ଭିତରେ ଏ ଲେଖକ ବି ସାମିଲ। ଏମାନେ ତାଙ୍କ ଯୁକ୍ତି ନେଇ କିଛି କାରଣ ବି ଦିଅନ୍ତି।

ପ୍ରଥମ କାରଣଟି ହେଉଛି - ହଜାର ହଜାର ବର୍ଷ ଧରି ଏଠି ତିଷ୍ଠି ରହିଥିବା ଭାରତୀୟ ନୈତିକ ମୂଲ୍ୟବୋଧ। ଏଇ ମୂଲ୍ୟବୋଧକୁ ଭାରତର ସବୁ ଧର୍ମ ସମର୍ଥନ ବି ଦିଏ। ଯେଉଁ ମୂଲ୍ୟବୋଧରେ ଏଠି ଯୌନ ସମ୍ପର୍କ ପାଇଁ କେବଳ ପୁରୁଷ ଏବଂ ସ୍ତ୍ରୀ ସମ୍ପର୍କକୁ ସ୍ୱିକୃତି ଦିଆଯାଇଛି ଏବଂ ସୃଷ୍ଟି ତଥା ସଂସାର ପାଇଁ ଏହାର ଆବଶ୍ୟକତାକୁ ଗ୍ରହଣ କରିଛି।

ଦ୍ୱିତୀୟ କାରଣଟି କିନ୍ତୁ ବେଶ ଗୁରୁତ୍ୱପୂର୍ଣ୍ଣ। ଏ ହେଉଛି ଯେଉଁଠି ଦାରିଦ୍ର୍ୟ ଯୋଗୁଁ ମା' ତା'ର ଶିଶୁକୁ ବିକି ଦିଏ, ଏବଂ ନିଜର ଅପ୍ରାପ୍ତ ବୟସ୍କା ଝିଅକୁ କୌଣସି ଏକ ଅମିରର 'ହେରାମ'ରେ ରହିବାକୁ ଅଳ୍ପ କିଛି ଟଙ୍କାରେ ଦଲାଲ ହାତକୁ ଟେକି ଦିଏ, ସେ ଯେ କାହିଁକି ନିଜର ଶିଶୁ ପୁତ୍ରକୁ କୌଣସି ଏକ ଯୌନ ପାଗଳ ସମଲିଙ୍ଗୀକୁ ବିକ୍ରି କରି ନଦେବ, ଏହି ଆଶଙ୍କା ଆସେ।

ତୃତୀୟ କାରଣଟି ବେଶ୍ ଜଘନ୍ୟ। ଯୌନ ସମ୍ପର୍କ ପାଇଁ ପୁରୁଷ ଆଉ ସ୍ତ୍ରୀର ଆବଶ୍ୟକତା ନ ରହିଲେ ପରିବାରର ଆଉ ଆବଶ୍ୟକତା ରହିବନି। ପରିବାର ଭାଙ୍ଗିଯିବ। ହୋମୋସେକ୍ସୁଆଲ ଡ଼ାଡ଼୍‌ମାନେ ଏଠି ସୃଷ୍ଟି ହେବେ।

ଏବଂ ଚତୁର୍ଥ କାରଣଟି ହେଲା ସମଲିଙ୍ଗୀ ଅଧିକାରକୁ ସ୍ୱୀକୃତି ମିଳିଗଲେ ଏଡସ୍ କମିବନି ବରଂ ମୁକ୍ତ ଅବାଧ ଅପ୍ରାକୃତିକ ଯୌନ ସମ୍ପର୍କରେ ଏ ରୋଗୀଙ୍କ ସଂଖ୍ୟା ବଢ଼ିବ।

ସୁତରାଂ ଭାରତୀୟ ସମାଜ ପାଇଁ ଏଇ ସମଲିଙ୍ଗୀ ସମ୍ପର୍କର କଥା ଏକ ସମ୍ବେଦନଶୀଳ ପ୍ରଶ୍ନ। ଏ ସମାଜକୁ ଏହା ଗଢ଼ିବା ଏବଂ ଭାଙ୍ଗିବାର ପ୍ରଶ୍ନ। ତେଣୁ ଏ ସମ୍ପର୍କରେ ନୀତିଗତ ନିଷ୍ପତ୍ତି ନେବା ପୂର୍ବରୁ ଏକ ବ୍ୟାପକ ବିତର୍କର ଆବଶ୍ୟକତା ରହିଛି।

ଭାରତରେ ଏଇ ଅଧିକାରର ଆଇନଗତ ସ୍ୱୀକୃତି ନେଇ ଏଠାର ବୁଦ୍ଧିଜୀବୀମାନେ ଏତେ ବ୍ୟସ୍ତ କାହିଁକି ? କେବଳ କ'ଣ ଜଗତିକରଣ ?



# ଗାନ୍ଧୀଙ୍କ ସହ ରାତ୍ର ଭୋଜନ

ଭାରତର ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ସହ ଏକ ରାତ୍ର ଭୋଜନରେ ସାମିଲ ହେବାକୁ ଏବେ ଇଚ୍ଛା ପ୍ରକାଶ କରିଛନ୍ତି ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ବାରାକ ଓବାମା। ଓବାମା ଗତ ସେପ୍ଟମ୍ବର ମାସରେ ଭର୍ଜନିଆର ଆଲିଂଗଟନ ହାଇସ୍କୁଲ ପରିଦର୍ଶନରେ ଯାଇଥିଲେ। ସେଠାରେ ଜଣେ ଛାତ୍ରୀ ତାଙ୍କୁ ପ୍ରଶ୍ନ କଲା - "ହାଏ ପ୍ରେସିଡେଣ୍ଟ, ମୁଁ ଲିଲି। ମୋର ଆପଣଙ୍କୁ ପ୍ରଶ୍ନ, ପୃଥିବୀର ଜୀବିତ ହେଉ ବା ମୃତ, କେଉଁ ବ୍ୟକ୍ତି ସହ ଆପଣ ବର୍ତ୍ତମାନ ରାତ୍ର ଭୋଜନ କରିବାକୁ ପସନ୍ଦ କରିବେ ?" ଓବାମା ଆଶ୍ଚର୍ଯ୍ୟ ହେଲେ। ଉତ୍ତର ଦେଲେ- "ଜୀବିତ କିମ୍ବା ମୃତ ବ୍ୟକ୍ତିଙ୍କର ତାଲିକା କରି ବସିଲେ ଦୀର୍ଘ ହୋଇଯିବ। ତେବେ ଜଣେ ମାତ୍ର ବ୍ୟକ୍ତି ଯାହାଙ୍କ ସହ ମୁଁ ନୈଶ୍ୟ ଭୋଜନ କରିବାକୁ ଚାହିଁବି, ସେ ହେଉଛନ୍ତି ମହାତ୍ମା ଗାନ୍ଧୀ। ଗାନ୍ଧୀ ମୋର ଆଦର୍ଶ। ମୁଁ ତାଙ୍କ ଠାରୁ ପ୍ରେରଣା ପାଇଛି। ଭାରତରେ ଅହିଂସା ଆନ୍ଦୋଳନ ସଫଳ ହୋଇ ନ ଥିଲେ, ଡ଼କ୍ଟର କିଙ୍ଗ (ମାର୍ଟିନ ଲୁଥର କିଙ୍ଗ ଜୁନିୟର) ଗାନ୍ଧୀଙ୍କ ଦ୍ୱାରା ଅନୁପ୍ରାଣୀତ ହୋଇ ନଥାନ୍ତେ ଏବଂ ଆମେରିକାରେ ଡ଼କ୍ଟର କିଙ୍ଗଙ୍କ ନେତୃତ୍ୱରେ ନାଗରିକ ଅଧିକାର ପାଇଁ ଯେଉଁ ଅହିଂସା ଆନ୍ଦୋଳନ ସଫଳ ହେଲା, ତାହା ହୋଇ ନଥାନ୍ତା।"

ସବୁଠାରୁ ବଡ଼ କଥା ହେଲା, ଓବାମା ପୁଣି ଉତ୍ତର ଦେଲେ - "ଗାନ୍ଧୀ ପୃଥିବୀ ବ୍ୟାପୀ ଯେଉଁ ପରିବର୍ତ୍ତନ ଆଣିଲେ ସେ ପରିବର୍ତ୍ତନ କୌଣସି କ୍ଷମତା ବଳରେ ନଥିଲା। ସେ ପରିବର୍ତ୍ତନ, ସେ ନିଜର ବ୍ୟକ୍ତିତ୍ୱ ତଥା ନୈତିକତା ବଳରେ ହିଁ ଆଣି ପାରିଥିଲେ। ଯେଉଁମାନେ ଶକ୍ତିହୀନ ଥିଲେ, ଗାନ୍ଧୀ ତାଙ୍କୁ ଶକ୍ତିବାନ୍‌ରେ ରୂପାନ୍ତରିତ କରିପାରିଲେ ଏବଂ ଯେଉଁମାନେ ଶକ୍ତିବାନ୍ ଥିଲେ, ସେମାନେ ତାଙ୍କ ଶକ୍ତି ବଳରେ ଦୁର୍ବଳ ଉପରେ ଅତ୍ୟାଚାର କରି ନିଜ କ୍ଷମତାର ଅପବ୍ୟବହାର କରୁଛନ୍ତି ବୋଲି ବୁଝି ଯାଇଥିଲେ।"

"ଗାନ୍ଧୀ ପରିବର୍ତ୍ତନର ପ୍ରତୀକ ଥିଲେ। ଶାନ୍ତିର ପ୍ରତୀକ ଥିଲେ। ପରିବର୍ତ୍ତନ ତଥା ଶାନ୍ତି ପାଇଁ ଗାନ୍ଧୀ ଯେଉଁ ସଂଘର୍ଷ କରିଥିଲେ ସେ ସଂଘର୍ଷ କୌଣସି ହିଂସା, କ୍ଷମତା କିମ୍ବା ଅର୍ଥକୁ ପାଥେୟ କରି ହୋଇନଥିଲା। ସେମିତି ଏକ ପ୍ରଚଣ୍ଡ ବ୍ୟକ୍ତିତ୍ୱ ଏବଂ ନୈତିକତାର ଅଧିକାରୀ ଗାନ୍ଧୀଙ୍କ ସହ ମୁଁ ବସିବାକୁ ଚାହେଁ; କଥା ହେବାକୁ ଚାହେଁ; ଏବଂ ଏକାଠି ବସି ଖାଇବାକୁ ଚହେଁ।" ଇଏ ଥିଲା ସେଦିନ ଆଲିଙ୍ଗଟନ ହାଇସ୍କୁଲରେ ବାରାକ ଓବାମାଙ୍କ ଉଦ୍‌ବୋଧନ।

ତେବେ ଏ ପ୍ରଶ୍ନ ବାରମ୍ବାର ଆସେ ପ୍ରତ୍ୟାଶା ଏବଂ ପ୍ରେରଣାର ନିରନ୍ତର ଉତ୍ସ ଥିବା ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କୁ ଶାନ୍ତି ପାଇଁ ନୋବେଲ ପୁରସ୍କାର ମିଳିଲାନି କାହିଁକି ? ଗାନ୍ଧୀ ଜୀବିତ ଥିବାବେଳେ ଏଠି ଏ ପ୍ରଶ୍ନ ଥିଲା ଏବଂ ଗାନ୍ଧୀ ମୃତ୍ୟୁର ଏକଷଠି ବର୍ଷ ପରେ ବି ଏ ପ୍ରଶ୍ନ ପଚରା ଚାଲିଛି । ଉତ୍ତର କିନ୍ତୁ ମିଳୁନାହିଁ ।

କ୍ୟୁବିନ୍ଦ ଟେନିସନ ନୋବେଲ ଫାଉଣ୍ଡେସନର ଜଣେ ସଭ୍ୟ । ସେ ସଂପ୍ରତି ପ୍ରବନ୍ଧଟିଏ ଲେଖିଛନ୍ତି - 'ମହାତ୍ମା ଗାନ୍ଧୀ- ଦି ମିସିଙ୍ଗ ଲରେଟ' । ଟେନିସନ ତାଙ୍କ ପ୍ରବନ୍ଧରେ କହନ୍ତି - ଶାନ୍ତି ଦୂତ ଗାନ୍ଧୀଙ୍କୁ ନୋବେଲ ପୁରସ୍କାର ଦେବାକୁ ୧୯୩୭, ୧୯୩୮, ୧୯୩୯, ୧୯୪୭ ଏବଂ ଏପରିକି ଗାନ୍ଧୀଙ୍କ ମୃତ୍ୟୁର ମାତ୍ର କିଛି ଦିନ ପୂର୍ବରୁ ଅର୍ଥାତ ୧୯୪୮ ମସିହା ଜାନୁଆରୀ ମାସରେ ତାଙ୍କ ନାଁ ନୋବେଲ କମିଟିକୁ ମନୋନୀତ ହୋଇଥିଲା । କିନ୍ତୁ ପୁରସ୍କାର ମିଳିଲାନି କାହିଁକି, ଇଏ କୁହେଳିକା ପୂର୍ଣ୍ଣ ।

ଟେନିସନଙ୍କ ଏ ଲେଖା ପୂର୍ବରୁ ଗାନ୍ଧୀଙ୍କ ନୋବେଲ ପୁରସ୍କାର ନେଇ ଅନେକ ତଥ୍ୟ ପ୍ରକାଶ ପାଇଛି । ୧୯୪୬ ମସିହା ମାର୍ଚ୍ଚ ମାସ ୧୫ ତାରିଖରେ ନୋବେଲ ପ୍ରାଇଜ କମିଟିର ଏକ ସୂତ୍ରକୁ ଆଧାର କରି ଏକ ରିପୋର୍ଟ ପ୍ରକାଶ ପାଇଥିଲା । ଏଥିରେ ଉଲ୍ଲେଖ ଥିଲା- ଚଳିତ  ବର୍ଷର ନୋବେଲ ପୁରସ୍କାର ପାଇଁ ବିଶ୍ୱର କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ନାମ ସହ ମହାତ୍ମା ଗାନ୍ଧୀଙ୍କ ନାଁ ରହିଛି । ଏଥିପାଇଁ ଡ଼କ୍ଟର କେ.ଏମ୍. କ୍ରିଷ୍ଣନଙ୍କ କାର୍ଯ୍ୟ ପ୍ରଶଂସନୀୟ । ସି. ରାଜଗୋପାଳଚାରୀ ଏବଂ ମୋରେସ ଆଲେକଜାଣ୍ଡରଙ୍କ ସହ ମିଶି ଗାନ୍ଧୀଙ୍କ ସମ୍ପର୍କରେ ଏକ ଚମତ୍କାର ରିପୋର୍ଟ ଡ଼କ୍ଟର କ୍ରିଷ୍ଣନ ନୋବେଲ କମିଟିରେ ଥିବା ତାଙ୍କର ଜଣେ ବନ୍ଧୁଙ୍କ ନିକଟକୁ ପଠାଇ ଦେଇଥିବାର ଖବର ମିଳିଥିଲା ।

୧୯୦୧ ମସିହାରେ ନୋବେଲ ପ୍ରାଇଜ ଫାଉଣ୍ଡେସନ ଡିନାମାଇଟର ଉଦ୍‌ଭାବକ ତଥା ବିଶିଷ୍ଟ ଶିଳ୍ପପତି ଆଲଫର୍ଡ ନୋବେଲଙ୍କ ନାଁରେ ସାହିତ୍ୟ, ଶାନ୍ତି, ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ମେଡ଼ିସିନ ଏବଂ ଅର୍ଥନୀତିରେ ଅସାଧାରଣ କୃତିତ୍ୱ ପାଇଁ ପୃଥିବୀର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ପୁରସ୍କାର ଦେବାକୁ ପ୍ରଥା ଆରମ୍ଭ ହୋଇଛି । ପ୍ରତିବର୍ଷ ଡିସେମ୍ବର ଦଶ ତାରିଖରେ ପୁରସ୍କାର ବିତରଣ ଉତ୍ସବ ଅନୁଷ୍ଠିତ ହୁଏ । କାରଣ ଏ ଦିବସଟି ହେଉଛି ଆଲଫର୍ଡ ନୋବେଲଙ୍କର ଶ୍ରାଦ୍ଧ ଦିବସ ।

ଗାନ୍ଧୀଙ୍କ ଅସାଧାରଣ ବ୍ୟକ୍ତିତ୍ୱକୁ ୧୯୪୭ରେ ନୋବେଲ କମିଟି କିନ୍ତୁ ଦେଖି ପାରିନଥିଲେ । ଯେଉଁ ବ୍ୟକ୍ତିତ୍ୱ କଥା ଗାନ୍ଧୀଙ୍କ ମୃତ୍ୟୁପରେ ବି ଆମେରିକାର ରାଷ୍ଟ୍ରପତି ଓବାମା କହନ୍ତି । ୧୯୪୮ ମସିହାରେ ମଧ୍ୟ ନୋବେଲ କମିଟି ଦୁଃଖର ସହ ଘୋଷଣା କରିଦେଲେ, ସେ ବର୍ଷ ଶାନ୍ତିରେ ନୋବେଲ ପାଇବା ପାଇଁ ପୃଥିବୀର କୌଣସି ଯୋଗ୍ୟ ଜୀବିତ ବ୍ୟକ୍ତି ନଥିଲେ ।

ପ୍ରଶ୍ନ ମଧ୍ୟ ସେତେବେଳେ ଥିଲା । ଗାନ୍ଧୀଙ୍କୁ ମରଣୋତ୍ତର ପୁରସ୍କାର ଦେବାରେ

ଅସୁବିଧା କ'ଣ ଥିଲା ? ପୃଥିବୀର କାହାକୁ କ'ଣ ମରଣୋତ୍ତର ନୋବେଲ ପୁରସ୍କାର ଦିଆଯାଇ ନାହିଁ ?

୧୯୩୧ ମସିହାରେ ସାହିତ୍ୟ ପାଇଁ ସ୍ୱିଡେନ ସାହିତ୍ୟ ଏକାଡେମୀର ସମ୍ପାଦକ ଏରିକ୍ ଆଲେକ୍‌ସର କାର୍ଲି ଫିଲଡଙ୍କୁ ମରଣୋତ୍ତର ପୁରସ୍କାର ଦିଆଯାଇଥିଲା । ଖାଲି ସେତିକି ନୁହେଁ, ଏରିକ୍‌ଙ୍କୁ ୧୯୧୮ ମସିହାରେ ନୋବେଲ ପାଇଁ ନିର୍ବାଚିତ କରାଯାଇଥିଲେ ବି ତାଙ୍କୁ ଏଇ ପୁରସ୍କାର ୧୩ ବର୍ଷ ପରେ ମିଳିଥିଲା ।

ଗାନ୍ଧୀଙ୍କୁ ନୋବେଲ ପୁରସ୍କାର ନ ମିଳିବା ପାଇଁ କିଛି ସମ୍ଭାବିତ କାରଣ ଆସେ । ଅନେକ ଗାନ୍ଧୀଙ୍କୁ ନୋବେଲ ନ ଦେବା ପାଇଁ ଉଇନଷ୍ଟନ ଚର୍ଚ୍ଚିଲ ଏବଂ ଆମେରେଙ୍କ ଚକ୍ରାନ୍ତ ଥିବା କଥା କହନ୍ତି ଏବଂ ଗାନ୍ଧୀଙ୍କୁ ଶାନ୍ତି ପାଇଁ ନୋବେଲ ପୁରସ୍କାର ମିଳିଗଲେ କାଳେ ବ୍ରିଟିଶ ରାଜ ପ୍ରାସାଦରେ ଆଲୋଡ଼ନ ସୃଷ୍ଟି ହୋଇଯିବ, ଏ ଆଶଙ୍କା ଥିବା କଥା ଉଠାନ୍ତି । ପ୍ରକଶଥାଉ କି, ନରୱେ ଏବଂ ବ୍ରିଟିଶ ରାଜ ପ୍ରାସାଦ ଭିତରେ ସମ୍ପର୍କ ସେବେ ଭଲ ଥିଲା । ଏବେ ବି ଅଛି । ବ୍ରିଟିଶ ରାଜ ପ୍ରାସାଦରୁ ହୁଏ ତ ନରୱେ ଉପରେ ଚାପ ପଡ଼ିଥାଇ ପାରେ ।

ଗାନ୍ଧୀଙ୍କୁ ନୋବେଲ ପୁରସ୍କାର ନ ମିଳିବାରେ ଅବଶ୍ୟ ଅନେକ ଏଠି ଅସୁଖୀ ନାହାଁନ୍ତି । ଗାନ୍ଧୀଙ୍କ ସମସାମୟିକ ଆଲଫର୍ଡ ନୋବେଲଙ୍କ ନାଁରେ ହୋଇଥିବା ଏ ପୁରସ୍କାର ପାଇଁ ଏଠି ଏତେ ଆଗ୍ରହ କାହିଁକି ବୋଲି ଏମାନେ ପ୍ରଶ୍ନ କରନ୍ତି । ୧୯୧୭ ମସିହାରେ ଯେତେବେଳେ ରୁଷିଆର ଲେନିନ୍‌ଙ୍କୁ ନୋବେଲ ପୁରସ୍କାର ମିଳିନଥିଲା, ରୁଷବାସୀଙ୍କର ସେବେ ଦୁଃଖ କିଛି ନଥିଲା । ବରଂ ଲେନିନ୍‌ଙ୍କ ନାଁରେ ଏକ ଆନ୍ତର୍ଜାତିକ ଶାନ୍ତି ପୁରସ୍କାରର ବ୍ୟବସ୍ଥା ହୋଇଥିଲା । ଏ ପୁରସ୍କାର ଭାରତର ସି.ଭି. ରମଣ ଏବଂ ଅରୁଣା ଆସିଫ ଅଲିଙ୍କୁ ମିଳି ସାରିଛି ।

ସତକଥା ହେଲା ଗାନ୍ଧୀଙ୍କୁ ନୋବେଲ ପୁରସ୍କାର ଏକ ଉତ୍ତରହୀନ ପ୍ରଶ୍ନ । କିନ୍ତୁ ସ୍ୱର୍ଗତ ଗାନ୍ଧୀଙ୍କ ସହ ରାତ୍ର ଭୋଜନ ପାଇଁ ଇଛା ଏହା ଏକ ଉଚ୍ଚ ମାନର ଇଛା । ଗାନ୍ଧୀ ତେଣୁ ଏକ ପୁରସ୍କାର ପାଇଁ ନୁହଁନ୍ତି । ସେ ତ ଯୁଗରୁ ଯୁଗ ପାଇଁ ।



# ରିୟଲିଟି ସୋ

ଭାରତର ସବୁ ଟିଭି ଚ୍ୟାନେଲରେ ଏବେ ରିୟଲିଟି ସୋ'। ସମସ୍ତ ଭାଷାରେ ମଧ୍ୟ ଏଇ ସୋ ଚାଲିଛି। ରିୟଲିଟି ସୋ' ମନୋରଞ୍ଜନର ସଂପ୍ରତି ନୂଆ ମାଧ୍ୟମ। ପୁରୁଣା ସେ ଶାଶୁ ବୋହୁ ପାରମ୍ପରିକ ସିରିୟଲରେ ଲୋକଙ୍କର ଆଉ ଏତେ ରୁଚି ନାହିଁ।

ରିୟଲିଟି ସୋ'ରେ ମଧ୍ୟ ପଇସା ବେଶି। ହଠାତ୍ ଭାଗ୍ୟ ପରିବର୍ତ୍ତନ ହୋଇଯିବାର ଏଥିରେ ସୁଯୋଗ ରହିଛି ଏବଂ ସଫଳତା ମିଳିଗଲେ କୋଟିପତି ହେବା ସହଜ ବି ହୋଇଯାଏ। 'କୌନ ବନେଗା କରୋଡ଼ପତି' ସୋ'ରେ ଅନେକ ଅନାମଧେୟ ତୁରନ୍ତ କୋଟିପତି ହୋଇଯାଉଛନ୍ତି।

ଥରେ ଏକ କମେଡ଼ି ସୋରେ ବାବା ଜଣକ ତାଙ୍କ ଶିଷ୍ୟଙ୍କୁ ଉପଦେଶ ଦେଲେ - "ଧନୀ ହେବାକୁ ଚାହୁଁଛୁ ତ ରିୟଲିଟି ସୋ'ରେ ଭାଗ ନିଅ। ସଙ୍କୁ ସାମନା କର। ଭଲ ହେଉ ବା ମନ୍ଦ, କୃତକାର୍ଯ୍ୟ ହୋଇଗଲେ ଅର୍ଥର ଅଭାବ ରହିବନାହିଁ। ଏବଂ ବିବାଦୀୟ ହୋଇଗଲେ ତ ପୁରା ମାଲାମାଲ୍"।

ହଁ, ଏହା ସତ ଯେ, ରିୟଲିଟି ସୋ'ରେ ଭାଗ ନେଉଥିବା କିଛି ଅଂଶ ଗ୍ରହଣକାରୀ ଜାଣି ଜାଣି ନିଜକୁ ବିବାଦୀୟ କରିବାକୁ ଚାହାନ୍ତି। ବିବାଦୀୟ ହେବାକୁ ସୁନିଶ୍ଚିତ ଯୋଜନା ବି କରିଥାଆନ୍ତି। ସେମିତି ମନ୍ତବ୍ୟ ମଧ୍ୟ ଜାଣି ଜାଣି ଦିଆଯାଏ। ସୋ'ରେ ବସିଥିବା ବିଚାରକମାନେ ବି ଅନେକ ସମୟରେ ଅଂଶଗ୍ରହଣକାରୀଙ୍କ ଜାତି, ଶ୍ରେଣୀ ଏବଂ ପ୍ରତିଭାକୁ ନେଇ କିଛି ଅରୁଚିକର ମନ୍ତବ୍ୟ ଦେଇ ସୋ'କୁ ବିବାଦୀୟ କରିଦିଅନ୍ତି ଏବଂ ସୋ'ର ଟି.ଭି. ରେଟିଙ୍ଗ ବଢ଼ାନ୍ତି।

ଏଇ ଯେମିତି ଗତ କିଛି ବର୍ଷ ତଳେ ଶିଲ୍ପା ସେଠୀଙ୍କୁ ନେଇ ଘଟିଲା। ଶିଲ୍ପା ରିୟଲିଟି ସୋ' 'ବିଗ ବସ୍'ରେ ଭାଗ ନେବାକୁ ଲଣ୍ଡନ ଯାଇଥିଲେ। ସୋ'ରେ ଅନ୍ୟ ଏକ ଅଂଶଗ୍ରହଣକାରୀ 'ଗୁଡ଼ି' ଶିଲ୍ପାଙ୍କ ଭାରତୀୟତା ଏବଂ ବର୍ଣ୍ଣକୁ ନେଇ କିଛି ଅଶ୍ଳୀଳ ମନ୍ତବ୍ୟ ଦେଲା। ଶିଲ୍ପା ଏହାକୁ ବର୍ଣ୍ଣ ବୈଷମ୍ୟର ରୂପ ଦେଇଦେଲେ। ଟି.ଭି. ଆଗରେ ଛିଡ଼ାହୋଇ ବହୁତ କାନ୍ଦିଲେ। ଏ କାନ୍ଦଣା ଏତେ ଗଭୀର ଏବଂ ପ୍ରଭାବପୂର୍ଣ୍ଣ ଥିଲା ଯେ, ଭାରତ ସରକାର 'ବିଗ୍ ବସ୍ ରିୟଲିଟି ସୋ'ର ବର୍ଣ୍ଣ ବୈଷମ୍ୟ ଚିତ୍ରକୁ ନେଇ ବ୍ରିଟିସ ସରକାରଙ୍କ ପାଖରେ ଅଭିଯୋଗ କଲେ। ସୋ'ର ଗତି କିପରି ବଦଳିଗଲା କେଜାଣି,

ଶିଳ୍ପା ଏଇ ସୋ'ରେ ପ୍ରଥମ ହେଲେ ଏବଂ ଖବର ଯାହା, ଶିଳ୍ପା କୁଆଡ଼େ ଏଇ ରିୟଲିଟି ସୋ'ରୁ ପ୍ରାୟ ଏକ ହଜାର କୋଟି ଟଙ୍କା ପାଇଲେ।

ସଂକ୍ଷିପ୍ତରେ କହିଲେ, ଯେହେତୁ ଜୀବନ ଏବଂ ବାସ୍ତବତା ବଡ଼, ଏହାକୁ ନେଇ ବଜାର ସୃଷ୍ଟି କରିପାରିଲେ ଲାଭ ମିଳିବା ସ୍ୱାଭାବିକ। ଅବଶ୍ୟ ନୀତି ଅନୀତି ଏବଂ ଭଲ ମନ୍ଦର ପ୍ରାର୍ଥକ୍ୟରେ ବିଚଳିତ ନ ହୋଇ ସୋ' କଲେ ଲାଭର ମାତ୍ରା ଅଧିକ ହୋଇଯାଏ।

ବିଦେଶରେ କୌଣସି ଏକ ରିୟଲିଟି ସୋ'ରେ ହତ୍ୟାକୁ ନେଇ ଟି.ଭି. ଚ୍ୟାନେଲ ସୋ' କରୁଥିଲା। ପୋଲିସ ହତ୍ୟାକାରୀକୁ ଧରିବା ପୂର୍ବରୁ ଟି.ଭି. ଚ୍ୟାନେଲ୍‌ର କ୍ୟାମେରାମ୍ୟାନ୍ ପ୍ରଥମେ ଯାଇ ହତ୍ୟାକାରୀକୁ ଧରିପାରୁଥିଲା। ଶେଷରେ ଜଣାଗଲା, ସୋ'ର ନିର୍ଦ୍ଦେଶକ ନିଜେ ହତ୍ୟାକରି ହତ୍ୟା ଘଟଣାର ପ୍ରଥମ ପର୍ଦ୍ଦାଫାଶ କରୁଛି ବୋଲି ଦାବୀ କରୁଥିଲା। କାରଣ ସୋ'ର ଟି.ଆର୍.ପି. ବଢ଼େଇବାକୁ ଏସବୁ ସେ କରୁଥିଲା ବୋଲି ନିଜେ ସେ ସ୍ୱୀକାର ବି କଲା। ଟି.ଆର୍.ପି ବଢ଼ିଲେ ବିଜ୍ଞାପନ ଭଲ ବଢ଼ିବ।

ସଂଗୀତକୁ ନେଇ ସିରିଏଲ୍ କରିବା ଭାରତର ପ୍ରଥମ ରିୟଲିଟି ସୋ'। ନୂଆ ନୂଆ ଗାୟକ ଗାୟିକାଙ୍କ ଭିତରେ ପ୍ରତିଯୋଗୀତା କରି ପ୍ରତିଭାପୂର୍ଣ୍ଣ 'ସିଙ୍ଗର୍' ଖୋଜାଯାଉଥିଲା। ସଂଗୀତ ଅନ୍ୱେଷଣର ବାସ୍ତବରେ ଏହା ବେଶ୍ ଚମତ୍କାର କାର୍ଯ୍ୟକ୍ରମ ଥିଲା। ବର୍ତ୍ତମାନର ସଫଳ ଗାୟିକା ସୁନିଧି ଚୌହାନ୍ ଏଇ ସଂଗୀତ ରିୟଲିଟି ସୋ'ରୁ ଆବିଷ୍କୃତ ହୋଇଥିଲେ।

କିନ୍ତୁ, ଏଇ ସଂଗୀତ ରିୟଲିଟି ସୋ' ଭାରତ ବର୍ଷର ପ୍ରାୟ ସବୁ ଟି.ଭି.ଚ୍ୟାନେଲ୍ ଏବଂ ସବୁ ଭାଷାରେ ଏବେ ଚାଲିଛି। ବିଭିନ୍ନ ବୟସକୁ ନେଇ ଏ ପ୍ରତିଯୋଗୀତା ହେଉଛି। ଯାହା ମନେ ହୁଏ, ଦିନେ ହୁଏତ ଏ ଦେଶ ଗାୟକ ଗାୟିକାରେ ପୂର୍ଣ୍ଣ ହୋଇଯିବ।

କିଛିଦିନ ଧରି ଏଠି କମେଡ଼ି ରିୟଲିଟି ସୋ' ବେଶ୍ ଭଲ ଜନପ୍ରିୟତା ହାସଲ କରିଥିଲା। ଟି.ଭି. ପରଦାରେ କମେଡ଼ି ଏବଂ ଜୋକ୍ କରିବାରେ ରାଜୁ ଶ୍ରୀବାସ୍ତବକୁ ଦେଖିବାକୁ ଲୋକେ କାମ ବନ୍ଦ କରି ଅଟକି ଯାଉଥିଲେ। କ୍ରିକେଟ ତାରକା ନବଜୋତ୍ ସିଂ ସିଧୁ ବି ହଠାତ୍ କମେଡ଼ିଆନ୍ ହୋଇଗଲେ। ନିର୍ବାଚନ ବେଳେ ଓଡ଼ିଶାରେ ଓ' ଟିଭିରେ ଆରମ୍ଭ ହୋଇଥିବା 'ଦି ପଲିଟିକାଲି ସର୍କସ୍' ଏବେ ବି ଚାଲିଛି। ପ୍ରକୃତରେ କିନ୍ତୁ ଏ କମେଡ଼ି ସୋ'ମାନଙ୍କରେ ଏତେ ଆଉ ଦମ୍ ନାହିଁ। ଜନପ୍ରିୟତା ଏମାନଙ୍କର କମିଲାଣି। କାରଣ ହେଉଛି, ବିଭିନ୍ନ କମେଡ଼ଆନ୍ ଗୋଟିଏ ମାତ୍ର ଲଘୁକଥା ବା ଜୋକ୍‌କୁ ନେଇ ବିଭିନ୍ନ ଯାଗାରେ କହୁଛନ୍ତି। କଥା ପୁରୁଣା ହେଲେ କଥା ସରେ। ଗୋଟିଏ କଥା ବାରମ୍ବାର ଶୁଣିଲେ ବିରକ୍ତି ଆସେ।

ଅନେକ ଟି.ଭି.ଚ୍ୟାନେଲ୍ ସଂପ୍ରତି ଦୁଃସାହାସିକ ପଦକ୍ଷେପକୁ ନେଇ ସୋ'

କରୁଛନ୍ତି। କୌଣସି ଏକ ଆସନ୍ନ ବିପଦକୁ ନେଇ କେଉଁ ବ୍ୟକ୍ତି କିପରି ସମ୍ମୁଖୀନ ହେଉଛି ଏବଂ ତା'ର ପ୍ରତିକ୍ରୀୟା କ'ଣ ହେଉଛି, ଏହାକୁ ସୋ'ରେ ପ୍ରଦର୍ଶିତ କରାଯାଉଛି। ଜଙ୍ଗଲ କିମ୍ବା ମଣିଷ ଶୂନ୍ୟ ଦ୍ୱିପରେ ପ୍ରତିଯୋଗୀକୁ ଛାଡ଼ି ଦିଆଯାଇ ସେ ସେଠି ବିପଦକୁ କିପରି ସାମନା କରୁଛି ତାକୁ ନେଇ ବ୍ୟବସାୟ ହେଉଛି।

ପ୍ରକୃତରେ ଭାରତରେ ହେଉଥିବା ରିୟଲିଟି ସୋ' ବିଦେଶରେ ହେଉଥିବା ରିୟଲିଟି ସୋ'ରୁ କାର୍ବନ୍ କପି ହେଉଛି କିମ୍ବା ତା'ର ଅନୁକରଣରେ ହେଉଛି। ସଚ୍ କା ସାମନା ତା'ର ଉଦାହରଣ। ସଚ୍ କା ସାମନା ରିୟଲିଟି ସୋ'ରେ ପ୍ରତିଯୋଗୀମାନଙ୍କୁ ସେମାନଙ୍କର ସମସ୍ତ ପରିବାର ସମ୍ମୁଖରେ ଜୀବନରେ ଲୁଚାଇ ରଖିଥିବା ସତକୁ କହିବାକୁ ଅର୍ଥ ଦିଆଯାଏ। ଅନେକ ଏବେ ପ୍ରଶ୍ନ କଲେଣି ଏଇ 'ସିଟ୍ ଅଫ୍ ଟ୍ରୁଥ'ରେ ରାଜନେତାମାନଙ୍କୁ ବସେଇଲେ କେମିତି ହୁଅନ୍ତା ?

ଏଇମାତ୍ର ସମାପ୍ତ ହୋଇଥିବା 'ଇଣ୍ଡିଆସ୍ ଗଟ୍ ଟାଲେଣ୍ଟ୍' ରିୟଲିଟି ସୋ' ଥିଲା କିନ୍ତୁ ଅନନ୍ୟ। ଲଘୁ ପ୍ରତିଭାମାନଙ୍କୁ ବିସ୍ତୃତ ପ୍ଲାଟଫର୍ମ ଦେଇ ସେମାନଙ୍କୁ ଜାତୀୟ ସ୍ରୋତରେ ସାମିଲ କରି ସେମାନଙ୍କର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାରେ ଏଇ ସୋ'ସଫଳ ହୋଇଥିଲା। ଦିନ ମଜୁରୀଆଙ୍କୁ ନେଇ ଓଡ଼ିଶାର ବ୍ରହ୍ମପୁରର ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ ଦଶାବତାର ପ୍ରଦର୍ଶନ କରି ଯେତେବେଳେ ଫାଇନାଲରେ ପ୍ରଥମ ହୋଇଗଲା, ସାରା ପୃଥିବୀ ସେତେବେଳେ ଆଶ୍ଚର୍ଯ୍ୟ ହୋଇଯାଇଥିଲା। ଇଛାଶକ୍ତି ଦୃଢ଼ଥିଲେ ଜୀବନରେ ଅସମ୍ଭବ କିଛି ନଥାଏ- ଏହାଥିଲା ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ର ସନ୍ଦେଶ।

ଅନେକ ସମୟରେ ପ୍ରତିଭା ଚୟନ ପ୍ରକ୍ରୀୟକୁ ନେଇ ପ୍ରଶ୍ନ ଏବଂ ସନ୍ଦେହ ଆସୁଛି। ଏସ୍.ଏମ୍.ଏସ୍ ମାଧମରେ ଭୋଟଦେଇ ପ୍ରତିଭା ବାଛିବା କେତେ ଯଥାର୍ଥ, ଏହା ପ୍ରଶ୍ନ ଭିତରେ ରହୁଛି। ଏପରି ପ୍ରଶ୍ନ ହେବା ବି ସ୍ୱାଭାବିକ୍। କାରଣ ସ୍ୱାଧୀନତାର ଏଠି ୬୬ ବର୍ଷ ପରେ ଯେତେବେଳେ ଧର୍ମ, ଜାତି, ଭାଷା, ଅଞ୍ଚଳକୁ ନେଇ ରାଜନୀତି କରାଯାଏ ଏବଂ ଭୋଟ ଦିଆଯାଏ, ପ୍ରତିଭା ବାଛିବାରେ ଯେ, ଏସ୍.ଏମ୍.ଏସ୍. ପ୍ରଭାବିତ ହେବ ନାହିଁ, ଏପରି ପ୍ରଶ୍ନ କରିବା ଅଯୁକ୍ତିକର ନୁହେଁ।

ହଁ, ଆଲୋଚନାର ଶେଷକଥା- ସବୁକଥା ଅତି ହୋଇଗଲେ ଖରାପ। ଭାରତର ରିୟଲିଟି ସୋ'ର ଅବସ୍ଥା ସେଇ ଅବସ୍ଥାରେ ପହଞ୍ଚିଲାଣି କିମ୍ବା ଯେ କୌଣସି ସମୟରେ ପହଞ୍ଚିପାରେ। ସୁତରାଂ ରିୟଲିଟି ସୋ'ରେ ନୂଆନୂଆ ସୃଜନଶୀଳତା ନ ରହିଲେ ଶାଶୁ ବୋହୁ କାହାଣୀକୁ ନେଇ ଚାଲିଥିବା ସିରିଏଲ ସବୁ ବନ୍ଦ ହେବା ପରି ଏହା ବି ଦିନେ ବନ୍ଦ ହୋଇଯାଇପାରେ।



# ମାନବ ଢ଼ାଲ- ଶ୍ରୀଖଣ୍ଡିରୁ ବର୍ତ୍ତମାନ

ଏଇ କିଛି ବର୍ଷ ଧରି ପୃଥିବୀସାରା ଆତଙ୍କବାଦୀ ଏବଂ ମାଓବାଦୀମାନେ ଆକ୍ରମଣ କଲାବେଳେ କିମ୍ବା ଆକ୍ରମଣର ପ୍ରତିହତ କଲାବେଳେ ନୂଆ ଫର୍ମୁଲାଟିଏ ବ୍ୟବହାର କରୁଛନ୍ତି। ଏ ହେଉଛି ମାନବ ଢ଼ାଲ ବା ହ୍ୟୁମାନ୍ ସିଲ୍ଡ। ସମ୍ମୁଖରେ ସାଧାରଣ ନିରୀହ ଲୋକମାନଙ୍କୁ ଛିଡ଼ା କରାଇ ଦେଉଛନ୍ତି ଏବଂ ଲୋକଙ୍କ ପଛରୁ ଥାଇ ଶତ୍ରୁ ଉପରେ ଏମାନେ ଆକ୍ରମଣ କରୁଛନ୍ତି। ଏପରି ଆକ୍ରମଣର ନୀତି ଏବଂ ବୈଧତା ସମ୍ପର୍କରେ ପ୍ରଶ୍ନ କଲେ ଉତ୍ତର ଆସୁଛି- ଯୁଦ୍ଧ ଆଉ ପ୍ରେମରେ ପୁଣି ନୀତି କ'ଣ ?

ଗତ କିଛି ବର୍ଷ ତଳେ ପଶ୍ଚିମବଙ୍ଗର ଲାଲଗଡ଼ ଅଞ୍ଚଳକୁ ମାଓବାଦୀମାନେ ଦଖଲ କରି ନେଇ ଯାଇଥିଲେ। ଏଠାରେ ସେମାନଙ୍କର ଶାସନ ଚାଲୁଥିଲା। ଏହାକୁ ମୁକ୍ତ କରିବାକୁ କେନ୍ଦ୍ରୀୟ ସୁରକ୍ଷା ବାହିନୀ ଗଲାବେଳେ ବାଟରେ ଶିଶୁ ଏବଂ ମହିଳାମାନଙ୍କର ଏ ଢ଼ାଲ ସୃଷ୍ଟି କରି ସୁରକ୍ଷା ବଳକୁ ମାଓବାଦୀମାନେ ପ୍ରତିରୋଧ କରିଥିଲେ। ଏଇ ଢ଼ାଲ ତ୍ରିସ୍ତରୀୟ ଥିଲା। ପ୍ରଥମେ ଶିଶୁମାନେ ଥିଲେ, ଦ୍ୱିତୀୟରେ ମହିଳାମାନେ ଥିଲେ ଏବଂ ତୃତୀୟ ସ୍ତରରେ ଆଦିବାସୀମାନେ ପାରମ୍ପରିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ପ୍ରତିରୋଧର ଏକ ଢ଼ାଲ ସୃଷ୍ଟି କରିଦେଇଥିଲେ। ସୁରକ୍ଷାବଳ ନିରିହ ଲୋକଙ୍କୁ ହତ୍ୟା କଲେ ଯେ ଏହା ବିରୁଦ୍ଧରେ ଆନ୍ତର୍ଜାତିକ ପ୍ରତିକ୍ରିୟା ହେବ ଏକଥା ମାଓବାଦୀମାନେ ଜାଣିଥିଲେ।

ଶତ୍ରୁକୁ ପରାସ୍ତ ପାଇଁ ମାନବ ଢ଼ାଲ ସୃଷ୍ଟି କରିବା ଅବଶ୍ୟ ଆଜିର ବ୍ୟବସ୍ଥା ନୁହେଁ। ଏହା ପୁରାଣ ଯୁଗରୁ ରହିଛି। ମହାଭାରତ ଯୁଦ୍ଧରେ ଭୀଷ୍ମଙ୍କୁ ପରାସ୍ତ କରିବାକୁ ଅର୍ଜୁନ ଶ୍ରୀଖଣ୍ଡିଙ୍କୁ ଢ଼ାଲ ଭାବେ ପ୍ରୟୋଗ କରିଥିଲେ। ଯେହେତୁ ଶ୍ରୀଖଣ୍ଡି ପୂର୍ଣ୍ଣ ପୁରୁଷ ନଥିଲେ; ସେ ଏକ ଅଧା ନାରୀ ଥିଲେ ଏବଂ ନାରୀ ଉପରେ ଆକ୍ରମଣ କରିବେ ନାହିଁ ବୋଲି ଭୀଷ୍ମ ପ୍ରତିଜ୍ଞା କରିଥିଲେ, ଭୀଷ୍ମ ଯୁଦ୍ଧରେ ତେଣୁ ଅସ୍ତ୍ର ତ୍ୟାଗ କରିଦେଇଥିଲେ। ଶ୍ରୀଖଣ୍ଡିଙ୍କୁ ଆଢୁଆଳ କରି ଅର୍ଜୁନ ପଛରୁ ଥାଇ ଶର ନିକ୍ଷେପ କରି ନଥିଲେ ଭୀଷ୍ମ ହାରି ନଥାନ୍ତେ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ହିଟ୍ଲର ନିୟମିତ ଭାବେ ଆକ୍ରମଣ ବେଳେ ମାନବ ଢ଼ାଲ ବ୍ୟବହାର କରୁଥିଲେ। ଏପରିକି ସୋଭିଏତ୍ ଋଷର ବୋମା ଆକ୍ରମଣର ପ୍ରତିହତ ପାଇଁ ସେ ଜର୍ମାନୀର ବିଭିନ୍ନ ସହରରେ ବିଦେଶୀ ଯୁଦ୍ଧ ବନ୍ଦୀମାନଙ୍କୁ ଧାଡ଼ିକରି

ଛିଡ଼ା କରାଇ ଦେଉଥିଲେ। ୧୯୯୧ ଇରାକ୍ ଉପସାଗରୀୟ ଯୁଦ୍ଧ ବେଳେ ସଦ୍ଦାମ ହୁସେନ୍ ବି କିଛି ପାଶ୍ଚାତ୍ୟ ଲୋକଙ୍କୁ ନେଇ ନିଜ ଚାରିପଟେ ଏକ ସୁରକ୍ଷାର ବଳୟ ସୃଷ୍ଟି କରିଥିଲେ।

ପାଲେଷ୍ଟାଇନ୍‌ର 'ହମାସ୍' ସନ୍ତ୍ରାସବାଦୀମାନେ ମାନବ ଢ଼ାଲ ବ୍ୟବହାର କରି ଇସ୍ରାଏଲ ସେନାଙ୍କ ଉପରେ ଆକ୍ରମଣ କରନ୍ତି। ଗାଜା ଷ୍ଟ୍ରିପ୍‌ର ଏକ ବାଳିକା ବିଦ୍ୟାଳୟକୁ ଆଢୁଆଳ କରି ଏହି ହମାସ୍ ଗୋଷ୍ଠୀ ଥରେ ଇସ୍ରାଏଲ ସୈନ୍ୟଙ୍କୁ ମୃତାହତ କରିଥିଲେ ଏବଂ ଏବେ ଗାଜା ମସ୍‌ଜିଦ୍‌ରେ ଲୁଚିଥିବା ସନ୍ତ୍ରାସବାଦୀଙ୍କୁ ଇସ୍ରାଏଲ ସେନା ଘେରବନ୍ଦୀ କଲାବେଳେ ଏଇ ସନ୍ତ୍ରାସବାଦୀମାନେ ଏକ କୃତ୍ରିମ ମାନବ ବଳୟ ସୃଷ୍ଟି କରି ମହିଳା ବେଶରେ ସେଠାରୁ ଖସି ଯାଇଥିଲେ।

ମାନବ ଢ଼ାଲ ବ୍ୟବହାର କରି ଆକ୍ରମଣ କରିବାରେ ବେଶି ସିଦ୍ଧହସ୍ତ ଥିଲେ ଶ୍ରୀଲଙ୍କାର ଏଲ୍.ଟି.ଟି.ଇ. ମାନେ ଏବଂ ଏକଥା ବି କୁହାଯାଏ ୧୯୮୪ ମସିହାରେ ଭାରତରେ ବ୍ଲୁଷ୍ଟାର ଅପରେସନ୍ ବେଳେ ଖଲିସ୍ତାନ ସନ୍ତ୍ରାସବାଦୀମାନେ ସ୍ୱର୍ଣ୍ଣ ମନ୍ଦିର ଭିତରେ ଭାରତୀୟ ସେନାଙ୍କୁ ପ୍ରତିହତ କରିବାକୁ କିଛି ମହିଳା ଏବଂ ଶିଶୁ ମାନଙ୍କୁ ସଜେଇ ରଖିଥିଲେ।

ମାନବ ଢ଼ାଲ ତିଆରି ଉଭୟ ବଳ ପୂର୍ବକ ଏବଂ ସ୍ୱଚ୍ଛାକୃତ ବି ହୋଇଥାଏ। ଗତ ନଭେମ୍ବର ୨୬ ତାରିଖ ମୁମ୍ବାଇ ଆକ୍ରମଣ ସମୟରେ ପାକିସ୍ତାନ ଆତଙ୍କବାଦୀମାନେ ବଳ ପୂର୍ବକ କିଛି ପର୍ଯ୍ୟଟକଙ୍କୁ ଢ଼ାଲ କରି ସେଠାରୁ ଖସିଯିବାର ଯୋଜନା କରିଥିବାର କଥା ରିପୋର୍ଟରେ ଆସିଥିଲା। ଚୀନ ବିପ୍ଲବ ବେଳେ ଚୀନର ଲାଲ ବାହିନୀ ସାଧାରଣ ନୀରିହ ଲୋକଙ୍କୁ ନେଇ ଢ଼ାଲ ସୃଷ୍ଟି କରି ବିପ୍ଲବରେ ସାମିଲ କରୁଥିବା ତଥ୍ୟ ଇତିହାସରେ ଅଛି ଏବଂ ସବୁଠାରୁ ବଡ଼ କଥା ହେଲା, ବର୍ତ୍ତମାନର ଆତଙ୍କବାଦୀ ଏବଂ ମାଓବାଦୀମାନେ ମାନବ ଢ଼ାଲରେ ରହୁଥିବା ବ୍ୟକ୍ତିମାନଙ୍କୁ ପ୍ରଶିକ୍ଷଣ ବି ଦେଉଛନ୍ତି। ପ୍ରକୃତ ଗୁଳି ଏବଂ ରବର ଗୁଳି ଭିତରେ ପାର୍ଥକ୍ୟ କ'ଣ ଶିଖାଇ ଦିଆଯାଉଛି ଏବଂ ଆକ୍ରମଣ ଶେଷ ପର୍ଯ୍ୟନ୍ତ କିପରି ଉପରକୁ ହାତ ଟେକି ରହି ସୁରକ୍ଷାର ପ୍ରାର୍ଥନା କରୁଛ ବୋଲି ଅଭିନୟ କରିହେବ ଏକଥା ଶିକ୍ଷାରେ ଅଛି।

ମାନବ ଢ଼ାଲକୁ କିନ୍ତୁ ଆନ୍ତର୍ଜାତିକ ସ୍ୱୀକୃତି ନାହିଁ। ୧୯୪୯ ମସିହାରେ ଚତୁର୍ଥ ଜେନେଭା କନ୍‌ଭେନ୍‌ସନ୍‌ରେ ମାନବ ଢ଼ାଲ ବ୍ୟବସ୍ଥାକୁ ଏକ ବେଆଇନ୍ ବ୍ୟବସ୍ଥା କହି ଏକ ରାଜିନାମା ସ୍ୱାକ୍ଷରିତ ହୋଇଥିଲା। ଏଇ ରାଜିନାମାରେ ପୃଥିବୀର ସମସ୍ତ ରାଷ୍ଟ୍ର ଦସ୍ତଖତ କରିଥିଲେ। କିନ୍ତୁ ଆତଙ୍କବାଦୀଙ୍କ ପାଇଁ ଏ ରାଜିନାମାର କିଛି ଅର୍ଥ ନଥାଏ ବୋଲି ଆତଙ୍କବାଦୀମାନେ ସଫେଇ ଦିଅନ୍ତି।

ମାନବିକ ଅଧିକାର ନେଇ ଆନ୍ଦୋଳନ କରୁଥିବା କିଛି ନିରପେକ୍ଷ

ସ୍ୱେଚ୍ଛାସେବୀମାନେ ମଧ୍ୟ ବେଳେବେଳେ ମାନବ ଢ଼ାଲ ସୃଷ୍ଟି କରି ଯୁଦ୍ଧ ବନ୍ଦ ପାଇଁ ଆନ୍ଦୋଳନ କରିଥାଆନ୍ତି। ବୁଶ୍‌ଙ୍କର ଏଇ ଗତ ଇରାକ୍ ଯୁଦ୍ଧବେଳେ କିଛି ପାଶ୍ଚାତ୍ୟ ଯୁଦ୍ଧ ବିରୋଧି କାର୍ଯ୍ୟକର୍ତ୍ତା ଇରାକ୍‌ରେ ମାନବ ଶୃଙ୍ଖଳ ସୃଷ୍ଟିକରି ଯୁଦ୍ଧର ବିରୁଦ୍ଧ କରିଥିଲେ। କିନ୍ତୁ ଆମେରିକାର ଆକ୍ରମଣ ଏତେ ଭୟଙ୍କର ଥିଲା ଯେ, ଏଇ ଯୁଦ୍ଧ ବିରୋଧି ସ୍ୱେଚ୍ଛାସେବୀମାନେ ଭୟରେ ଇରାକ୍ ଛାଡ଼ି ପଳାଇ ଯାଇଥିଲେ।

ନିରୀହ ଲୋକଙ୍କୁ ସାମ୍ନାରେ ରଖି ସବୁ ସମୟରେ ପଛରୁ ଥାଇ ଯେ ଯୁଦ୍ଧ କରିହେବ, ଏହାର ଆଉ ଗ୍ୟାରେଣ୍ଟି ନାହିଁ। ଏକଥା ଏବେ ସୁନ୍ଦରଗଡ଼ରେ ଘଟିଛି, ଯେଉଁଠି ସାଧାରଣ ଲୋକେ ମାଓବାଦୀଙ୍କୁ ଧରାଇ ଦେବାକୁ ପୋଲିସକୁ ବାଟ କଢ଼େଇ ଜଙ୍ଗଲକୁ ନେଇ ଯାଉଛନ୍ତି।

ସତ କଥା ହେଲା, ମାଓବାଦୀଙ୍କ ଉଦ୍ଦେଶ୍ୟ ଭଲ। ସେମାନେ ଏପରି ଏକ ସମାଜ ଚାହାଁନ୍ତି ଯେଉଁଠି ଶୋଷଣ, ଭ୍ରଷ୍ଟାଚାର ଏବଂ ଶ୍ରେଣୀ ନଥିବ। ଧନୀ ଏବଂ ଗରିବ ଭିତରେ ପାର୍ଥକ୍ୟ ନଥିବ। କିନ୍ତୁ ଏପରି ଏକ ସମାଜ ପ୍ରତିଷ୍ଠା ପାଇଁ ଯେଉଁ ବାଟ ସେମାନେ ବାଛି ନେଇଛନ୍ତି ସେ ବାଟ ଠିକ୍ ନୁହେଁ ବୋଲି ଅନେକଙ୍କର ଧାରଣା। କାରଣ ବର୍ତ୍ତମାନର ଜଗତିକରଣ ଯୁଗରେ ହିଂସାତ୍ମକ ବିପ୍ଳବ ଏକ ମଇଳା ଶବ୍ଦ। କାଁ ଭାଁ ହିଂସା ଘଟାଇ ଏବଂ କିଛି ପୋଲିସ କର୍ମଚାରୀଙ୍କୁ ହତ୍ୟା କରିଦେଲେ ଯେ ବିପ୍ଳବ ସଫଳ ହୋଇଯିବ ଏହା ଏବେ ଏକ ବଡ଼ ପ୍ରଶ୍ନ।

ପ୍ରକୃତରେ ୧୯୭୦ ଦଶକରେ ଭାରତ ସମେତ ପୃଥିବୀର ଯୁବପିଢ଼ୀ ମାର୍କସୀୟ ବିପ୍ଳବକୁ ନେଇ ଯେଉଁ ରୋମାଞ୍ଚକର ସ୍ୱପ୍ନ ଦେଖୁଥିଲେ ସେ ସ୍ୱପ୍ନ ବର୍ତ୍ତମାନ ଆଉ ନାହିଁ। ବ୍ୟାଲଟ ଏବଂ ବୁଲେଟ୍ ଭିତରେ ପାର୍ଥକ୍ୟ ବାଛିବାକୁ କହିଲେ ଅଧିକାଂଶ ତେଣୁ ବ୍ୟାଲଟକୁ ହିଁ ପସନ୍ଦ କରନ୍ତି। ବିରୁଦ୍ଧ ସତ୍ୱେ ପାରସ୍ପରିକ ବୁଝାମଣା ଏବଂ ଡାଇଲଗ୍‌ରେ ବିଶ୍ୱାସ ରଖିଥିବା ଗଣତନ୍ତ୍ର ବ୍ୟବସ୍ଥାକୁ ଶ୍ରେଷ୍ଠ ବ୍ୟବସ୍ଥାଟିଏ ବୋଲି ଭାବନ୍ତି। ମାନବ ଢ଼ାଲ ଯେ ଆତଙ୍କବାଦୀଙ୍କ ପାଇଁ ସେତେ ଆଉ କାମ ଦେବନି ଏଇଟା ବୋଧେ ସ୍ପଷ୍ଟ ହୋଇଯାଉଛି।

ମାନବ ଢ଼ାଲ କିନ୍ତୁ ମାନବୀୟ ନୁହେଁ। ଏହା ମହାଭାରତୀୟ ଶ୍ରୀଖଣ୍ଡି ହୁଅନ୍ତୁ କିମ୍ବା ଲାଲଗଡ଼ ବା ନାରାୟଣ ପାଟଣା କିମ୍ବା ପୋସ୍କୋ ଅଞ୍ଚଳର ଶିଶୁ ଏବଂ ମହିଳା ହୁଅନ୍ତୁ।



# ଶିକ୍ଷା ଓ ନିଯୁକ୍ତି

ଚଳିତ ବର୍ଷ ପୁରୀ ପୁସ୍ତକ ମେଳାରେ 'ଛାତ୍ର-ଶିକ୍ଷକ-ଅଭିଭାବକ ସମନ୍ୱୟ ସମିତି' ଏକ ସୁନ୍ଦର ଆଲୋଚନାଚକ୍ର ଆୟୋଜନ କରିଥିଲେ। ଆଲୋଚନାର ଏକ ବିଷୟ ଥିଲା 'ବର୍ତ୍ତମାନର ଶିକ୍ଷା ବ୍ୟବସ୍ଥା'। ଏ ଲେଖକ ସେଥିରେ ଏକ ସମ୍ମାନିତ ବକ୍ତା ଭାବେ ଯୋଗ ଦେଇଥିଲା ଏବଂ ସାମ୍ପ୍ରତିକ ଶିକ୍ଷାରେ ଚାକିରୀର ଗ୍ୟାରେଣ୍ଟି ନଥିବା ହେତୁ ଯେ ଏଠି ଅନେକ ଅଘଟଣ ଘଟୁଛି ଏପରି ଏକ ପ୍ରତିବେଦନ ଉପରେ ଜୋର ଦେଇଥିଲା।

ଏହା ସତ ଯେ, ଉଚ୍ଚ ଶିକ୍ଷାୟତନର କ୍ୟାମ୍ପସ ଏବେ ଆଉ ଅଶାନ୍ତି ମୁକ୍ତ ନୁହେଁ। ଏହା ଖାଲି ଓଡ଼ିଶା ଘଟଣା ନୁହେଁ। ଭାରତର ପ୍ରାୟ ସବୁ କ୍ୟାମ୍ପସରେ ଏପରି ଦୃଶ୍ୟ ଦେଖିବାକୁ ମିଳୁଛି। ପିଲାଙ୍କର ଆଉ ପାଠ ପଢ଼ିବାକୁ ଆଗ୍ରହ ନାହିଁ। ଶିକ୍ଷାନୁଷ୍ଠାନ ପ୍ରତି ଏମାନଙ୍କର ଆନୁଗତ୍ୟ ନାହିଁ। ପିଲାଏ କେବଳ ସାର୍ଟିଫିକେଟ ଖୋଜୁଛନ୍ତି। ଡିଗ୍ରୀଟିଏ ଚାହାଁନ୍ତି। ଭଲ ପାଠପଢ଼ି ଭଲ ନମ୍ବର ରଖିଦେଲେ ଯେ, ଚାକିରୀ ମିଳିବା ନିଶ୍ଚିତ, ଏବେ ଏହା ସନ୍ଦେହ।

ଏଇ କିଛି ମାସ ତଳେ ଓଡ଼ିଶାର ଇଞ୍ଜିନିୟରିଂ ପିଲାମାନେ ପରୀକ୍ଷାରେ ଆଉ ଫେଲ୍ ହେବେ ନାହିଁ କହି ଧର୍ମଘଟ କଲେ। ବାଣୀବିହାର ତ ଏବେ ଜଳୁଛି। ପ୍ରତିଷ୍ଠା ପରାକାଷ୍ଠା ପ୍ରଦର୍ଶନର କେନ୍ଦ୍ର ଭାବେ ଏକଦା ଖ୍ୟାତି ପାଇଥିବା ଏଇ ବାଣୀବିହାର ସମ୍ପ୍ରତି ଶିକ୍ଷା ପାଇଁ ଆଉ ଉପଯୁକ୍ତ ନୁହେଁ ବୋଲି ଅଭିଯୋଗ ଆସିଲାଣି।

ଆଜକୁ ପ୍ରାୟ ୩୯ ବର୍ଷ ତଳେ ଏ ଲେଖକ ବାଣୀବିହାରର ଛାତ୍ର ଥିଲା। ବାଣୀବିହାରର ଛାତ୍ର କହିଲେ ଯେପରି ସବୁ ପିଲାଙ୍କର ଆନ୍ତଗର୍ବ ଥାଏ। ଏ ଲେଖକର ବି ଏହା ଥିଲା। ୧୯୭୫ ମସିହାର କଥା। ବାଣୀବିହାରର ନାଟ୍ୟ ସଂସଦ ତରଫରୁ ସିନ୍ଦୁରବିନ୍ଦୁ ଚଳଚ୍ଚିତ୍ରର କଳାକାରମାନଙ୍କୁ ସେଦିନ ଅଭ୍ୟର୍ଥନା ଦିଆଯାଉଥାଏ। ଜଣେ କଳାକାର ଅନ୍ୟ ଜଣେ ଅଭିନେତାଙ୍କ ପରିଚୟ ଦେଲାବେଳେ ଯେତେବେଳେ କହି ଦିଅନ୍ତି, ସେ ବ୍ରହ୍ମପୁର ବିଶବିଦ୍ୟାଳୟରେ ବି.ଏ. ଅନର୍ସ ପଢ଼ନ୍ତି ଏବଂ ଆଇ.ଏ.ଏସ୍. ପାଇଁ ଆଶାୟୀ, ସେତେବେଳେ ଅଡିଟରିୟମରେ ହା ହୋଲା ଆରମ୍ଭ ହୋଇଯାଏ। ବାଣୀବିହାରର ପିଲାଙ୍କୁ ଛାଡ଼ି ଦେଇ ଅନ୍ୟ କେଉଁ ବିଶ୍ୱବିଦ୍ୟାଳୟର ପିଲାଏ ଆଇ.ଏ.ଏସ୍. କଥା ଚିନ୍ତା କରନ୍ତି, ଏହା ଯେପରି ସେଦିନ ବାଣୀବିହାର ଛାତ୍ରଛାତ୍ରୀମାନେ ସହ୍ୟ କରିପାରୁନଥାନ୍ତି। ଭାରତୀୟ ପ୍ରଶାସନିକ ସେବା କିମ୍ବା ଯେ କୌଣସି ଉଚ୍ଚ ପଦବୀ ପାଇଁ

ପରୀକ୍ଷା ଦେଇ କୃତକାର୍ଯ୍ୟ ହେବା ଯେପରି ବାଣୀବିହାର ପିଲାଙ୍କ ମନୋପଲି ଥାଏ।

ଆଜି ଏ ଅବସ୍ଥା ବାଣୀବିହାରରେ ନାହିଁ। ଏଠାରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଶ୍ କଲେ ବି ଚାକିରୀ ମିଳିବାର ସେମିତି କିଛି ନିଶ୍ଚିତତା ନାହିଁ। ଖାଲି ବାଣୀବିହାରର କଥା ନୁହେଁ ଭାରତର ସବୁଠି ସେଇ ଏକା ଅବସ୍ଥା। କାରଣ ହେଉଛି ଆଜିର ଶିକ୍ଷା ଚାକିରୀ ଯୋଗ୍ୟ ନୁହେଁ। ଅନ୍ୟ କଥାରେ କହିଲେ ଏମ୍ପ୍ଲୋଏବ୍ଲ ନୁହେଁ।

ଏକ ପରିସଂଖ୍ୟାନ ଅନୁସାରେ ଭାରତରେ ସ୍ନାତକ ପଢୁଥିବା ପିଲାଙ୍କ ସଂଖ୍ୟା ପ୍ରାୟ ୩୨ ଲକ୍ଷ। ସେଥିରୁ ପ୍ରାୟ ୬ ଲକ୍ଷ ପଚାଶ ହଜାର ହେଉଛନ୍ତି ବୈଷୟିକ ଶିକ୍ଷା ପାଉଥିବା ଛାତ୍ରଛାତ୍ରୀ। ସାଧାରଣ ସ୍ନାତକ ଡିଗ୍ରୀ ହାସଲ କରିଥିବା ପିଲାଙ୍କ ମଧ୍ୟରୁ ମାତ୍ର ୧୦ ପ୍ରତିଶତ ପିଲା ଚାକିରୀ ଯୋଗ୍ୟ ଏବଂ ବୈଷୟିକ ଶିକ୍ଷା କ୍ଷେତ୍ରରେ ଚାକିରୀ ଯୋଗ୍ୟତା ଥିବା ପିଲାଙ୍କ ହାର ମାତ୍ର ୨୫ ପ୍ରତିଶତ। ନିଯୁକ୍ତିଦାତା ଏବଂ ଚାକିରୀ ଆଶାୟୀ ପ୍ରାର୍ଥୀଙ୍କ ଭିତରେ ନିଯୁକ୍ତି ତଥା ଦକ୍ଷତାକୁ ନେଇ ଅଭିଯୋଗ ଏବଂ ପ୍ରତିଅଭିଯୋଗ ଆସେ।

ଊଣେଇଶ ନବେ ଦଶକ ପର୍ଯ୍ୟନ୍ତ ରାଷ୍ଟ୍ର ଏଠି ସବୁଠାରୁ ବଡ଼ ନିଯୁକ୍ତି ଦାତା ଥିଲା। ହଜାର ହଜାର ପିଲା ପ୍ରତିବର୍ଷ ସରକାରୀ ଚାକିରୀ ପାଉଥିଲେ। ଆର୍ଥିକ ଉଦାରୀକରଣ ଯୁଗ ଆରମ୍ଭ ହେବା ପରେ ରାଷ୍ଟ୍ର ଆଉ ନିଯୁକ୍ତି ଦାୟିତ୍ୱ ନେଲା ନାହିଁ। ବରଂ ସରକାର ନୀତି ଘୋଷଣା କରି କହିଦେଲେ ଯେ, ସରକାର ଏପରି ଏକ ପରିବେଶ ସୃଷ୍ଟି କରିବେ ଯେଉଁଥିରେ ଘରୋଇ କମ୍ପାନୀମାନେ ଚାକିରୀ ଯୋଗାଇ ଦେବେ। ସ୍ପଷ୍ଟ କହିଲେ ରାଷ୍ଟ୍ର ଆଉ ବେଶି ଚାକିରୀ ଯୋଗାଉ ନାହାଁନ୍ତି। ଅନେକ ସରକାରୀ କ୍ଷେତ୍ର ମଧ୍ୟ ଘରୋଇ କମ୍ପାନୀମାନଙ୍କୁ ସରକାର ହସ୍ତାନ୍ତର କରିଦେଉଛନ୍ତି।

ଏବଂ ଏ କଥା ସ୍ୱୀକାର୍ଯ୍ୟ ଯେ, ୧୯୯୦ ଦଶକ ପରେ ଭାରତ ବର୍ଷରେ ଅନେକ ଦେଶୀ ତଥା ବିଦେଶୀ ଘରୋଇ କମ୍ପାନୀମାନେ ଲକ୍ଷ ଲକ୍ଷ ପିଲାଙ୍କୁ ଚାକିରୀ ଦେଇଛନ୍ତି। କିନ୍ତୁ ପ୍ରତି ଜିନିଷର ଯେପରି ଧାରଣ କରିବାର ଶକ୍ତି ସୀମିତ ଥାଏ, ଭାରତର ଘରୋଇ କମ୍ପାନୀମାନେ ଏବେ ସେଇ ଅବସ୍ଥାରେ ପହଞ୍ଚି ସାରଛନ୍ତି। କମ୍ପାନୀରେ ବାସ୍ତବରେ ଆଉ ଚାକିରୀ ନାହିଁ। କିନ୍ତୁ କମ୍ପାନୀମାନେ ନିଜ ସ୍ଥିତିର ସ୍ଥାୟିତ୍ୱ ପାଇଁ କିଛି କାରଣ ଦିଅନ୍ତି। ଏମାନେ ପ୍ରଥମ କାରଣରେ କହନ୍ତି ବିଶ୍ୱ ଆର୍ଥିକ ମାନ୍ଦାବସ୍ଥା ଚାକିରୀ ଖାଇ ସାରିଲାଣି। ଅଭିବୃଦ୍ଧି ହାର ବିଶ୍ୱବ୍ୟାପୀ କମିଛି। ଏହାର ପ୍ରଭାବ ମଧ୍ୟ ଭାରତରେ ଦେଖା ଦେଇଛି ଏବଂ ଦ୍ୱିତୀୟ କାରଣରେ ସେମାନେ ଯାହା କୁହନ୍ତି, ତାହା ବେଶ୍ ବିପଦ ପୂର୍ଣ୍ଣ। ସେମାନେ କହନ୍ତି, ଭାରତରେ ଯେଉଁ ଶିକ୍ଷା ଦିଆଯାଉଛି ସେଥିରେ ଚାକିରୀ ପାଇବା ପାଇଁ ଯେଉଁ ଆବଶ୍ୟକ ଦକ୍ଷତା ଦରକାର, ତାହା ନାହିଁ। ଅନେକ କର୍ପୋରେଟ୍ କଂପାନୀରେ ଚାକିରୀ ଥିଲେ ବି ଦକ୍ଷ ପ୍ରାର୍ଥୀ ଅଭାବରୁ ତାହା ପୂରଣ ହୋଇପାରୁନାହିଁ ବୋଲି ସଫେଇ ଆସେ। କେବଳ ସାର୍ଟିଫିକେଟ ଏବଂ ଡିଗ୍ରୀ ପାଇଗଲେ ଯେ ନିଶ୍ଚିତ

କର୍ମ ନିଯୁକ୍ତି ମିଳିଯିବ ଏପରି ଭାବିବା ଏବେ ଭୂଲ।

ସଂକ୍ଷେପରେ କହିଲେ, ଭାରତରେ ଶିକ୍ଷିତଙ୍କ ସଂଖ୍ୟାର ଅଭାବ ନାହିଁ। କିନ୍ତୁ ଚାକିରୀ ଯୋଗ୍ୟ ଶିକ୍ଷିତଙ୍କର ଅଭାବ ରହିଛି।

ଆମ ଶିକ୍ଷା କାହିଁକି ନିଯୁକ୍ତି ଯୋଗ୍ୟ ହୋଇ ପାରୁନାହିଁ, ଏପରି ପ୍ରଶ୍ନ କଲେ ଏହାର ମଧ୍ୟ କାରଣ ଥାଇ କିଛି ଉତ୍ତର ମିଳେ। କୁହାଯାଏ, ଭାରତରେ ଯେଉଁ ଶିକ୍ଷା ବ୍ୟବସ୍ଥା ଚାଲିଛି ଏହା ବହୁତ ପୁରୁଣା। ଏହା ଗୋରା ସାହେବ 'ମାକ୍‌ଲେ' କରିଥିଲେ। ସିଲାବସ୍ ଏଠି ପୁରୁଣା। ପ୍ରଭାବଶାଳୀ ପରିବର୍ତ୍ତନ ଏଥିରେ ଅନେକ ବର୍ଷ ଧରି ହୋଇନାହିଁ ଏବଂ ଶିକ୍ଷକ ଶିକ୍ଷୟିତ୍ରୀମାନେ ପିଲାଙ୍କ ନୂଆ ଚାହିଦା ସହ ଖାପ ଖୁଆଇବା ଭଳି ନିଜେ ନୂଆ ନୂଆ ଶିକ୍ଷା ପାଉ ନାହାଁନ୍ତି। ଚାକିରୀ ପାଇବା ପୂର୍ବରୁ ସେମାନେ ଯାହା ପଢ଼ିଥିଲେ ସେମାନେ ସେତିକିରେ ଅଟକି ଯାଇଛନ୍ତି।

ଶିକ୍ଷାପରେ ଚାକିରୀ ଦେବାକୁ ଗ୍ୟାରେଣ୍ଟି ଦେଇଥିବା ବୈଷୟିକ ଶିକ୍ଷାନୁଷ୍ଠାନ ମାନଙ୍କରେ ମଧ୍ୟ ସେଇ ଏକା ଅବସ୍ଥା। ପୁରୁଣା ସିଲାବସ୍, ପୁରୁଣା ଅନଭିଜ୍ଞ ଫ୍ୟାକଲଟି ଏବଂ ପାଠ ପଢ଼ା ପାଇଁ ପରିବେଶ ନଥିବା କିଛି ଭିତ୍ତିଭୂମି। ଘରୋଇ କରଣ ପରେ ଘରୋଇ ମାଲିକମାନେ କରିଥିବା ଶିକ୍ଷାନୁଷ୍ଠାନ ମାନଙ୍କରେ କେବଳ ସାର୍ଟିଫିକେଟ ବଣ୍ଟା ଚାଲିଛି। ଦକ୍ଷତା ଉପରେ ଗୁରୁତ୍ୱ ଏଠି ନାହିଁ ଏବଂ ଶିକ୍ଷାର ମାନ ଦେଖିବାକୁ ଥିବା ସରକାରୀ ନିୟନ୍ତ୍ରକ ସଂସ୍ଥା ଅନ୍ୟ କଥାରେ କହିଲେ ଅଖିଳ ଭାରତ ବୈଷୟିକ ପରିଷଦ ପରି ସଂସ୍ଥାର କିଛି ପଦାଧିକାରୀମାନେ ଲାଞ୍ଚ ନେଇ ଅନୁନ୍ନତ ଘରୋଇ ଶିକ୍ଷାନୁଷ୍ଠାନମାନଙ୍କୁ ସ୍ୱୀକୃତି ଦେଇ ଦେଉଛନ୍ତି। ଟଙ୍କା ଲାଞ୍ଚ ଦେଲେ ଯେ କୌଣସି ଠାରେ ଡିମ୍‌ଡ୍ ବିଶ୍ୱବିଦ୍ୟାଳୟଠାରୁ ଆରମ୍ଭ କରି ମେଡିକାଲ କଲେଜ କରିହେବ; ଏପରି ଅଭିଯୋଗ ଆସେ।

ଆଇ.ଆଇ.ଟି. ଶିକ୍ଷା ପ୍ରାପ୍ତ ପିଲାମାନେ ବି ଏବେ ଶହେ ପ୍ରତିଶତ ନିଯୁକ୍ତି ଯୋଗ୍ୟ ନାହାନ୍ତି। ଏ ପିଲାଙ୍କ ଭିତରେ ପୂର୍ବେ ଯେଉଁ ସୃଜନଶୀଳତା ଥିଲା ତାହା ଆଉ ନାହିଁ। କୋଚିଙ୍ଗ୍ ସେଣ୍ଟରରୁ ପାଠ ଘୋଷି ଏବଂ ପ୍ରବେଶିକା ପରୀକ୍ଷାରେ ପାସ୍ କରିବାର କିଛି କୌଶଳ ଶିଖି ଆଇ.ଆଇ.ଟି. ପଢୁଥିବା ପିଲାଙ୍କର ଏଇ ସୃଜନଶୀଳତା କମିଛି ବୋଲି କୁହାଗଲାଣି।

ହଁ, ଏ ଆଲୋଚନାର ଏ ଶେଷ କଥା। ଭାରତୀୟ ଶିକ୍ଷା ବ୍ୟବସ୍ଥାରେ ସଂସ୍କାର ଆସିବା ଏବେ ଜରୁରୀ। ଏହା ଚାକିରୀ ଯୋଗ୍ୟ ହେବା ଦରକାର। ପୃଥିବୀର ସବୁଠାରୁ ବେଶି ଶିକ୍ଷିତ ଯୁବ ମାନବ ସମ୍ବଳ ଭାରତରେ ଅଛି ବୋଲି ଯେଉଁ ଗର୍ବ ଆମେ କରୁଛୁ, ଆଉ କିଛି ବର୍ଷ ପରେ ଏହାର ହୁଏତ କିଛି ଆଉ ମାନେ ନଥିବ। ବରଂ ଅତ୍ୟଧିକ ଶିକ୍ଷିତ ବେକାରଙ୍କ ଯୋଗୁଁ ସାମାଜିକ ଅଘଟଣ ଘଟିଯାଇପାରେ।



# ବାବୁ-ନେତା ସମ୍ପର୍କ

ବାବୁ ଅର୍ଥ ଆମ ସରକାରୀ କର୍ମଚାରୀ । ଅନ୍ୟ କଥାରେ କହିଲେ ଇଏ ଆମ ସିଭିଲ ସର୍ଭାଣ୍ଟ । ଏଇ ବାବୁ ଏବଂ ରାଜନେତାଙ୍କ ଭିତରେ ଯେତେବେଳେ ସମ୍ପର୍କ ଭଲ ରହେ ସେତେବେଳେ ଶାସନ ଭଲ ଚାଲେ । ସୁଶାସନ ପ୍ରତିଷ୍ଠା ହୁଏ । କିନ୍ତୁ ଯେତେବେଳେ ଏ ସମ୍ପର୍କ ଅପବିତ୍ର ତଥା ଉଦ୍ଦେଶ୍ୟ ପ୍ରଣୋଦିତ ହୋଇଯାଏ ସେତେବେଳେ ଦୁର୍ନୀତି ହୁଏ, ଭ୍ରଷ୍ଟାଚାର ବଢ଼େ ।

ଭାରତୀୟ ଗଣତାନ୍ତ୍ରିକ ଶାସନରେ ସମ୍ପ୍ରତି ବାବୁ ନେତାଙ୍କ ସମ୍ପର୍କ ନେଇ ଅନେକ ଆଲୋଚନା ଚାଲୁଛି । କମିଟିମାନ ବସୁଛି । ସବୁ ଆଲୋଚନା ଏବଂ ସବୁ କମିଟିର ନିର୍ଯ୍ୟାସ ହେଲା, ଏ ଦେଶରେ କିଛି  ନେତା ଏବଂ କିଛି ବାବୁଙ୍କ ମଧ୍ୟରେ ଗଢ଼ି ଉଠୁଥିବା ଅପବିତ୍ର ସମ୍ପର୍କ ଯୋଗୁଁ ହିଁ ଶାସନରେ ଏଠି ବିଭ୍ରାଟ ସୃଷ୍ଟି ହେଉଛି । ଜନମଙ୍ଗଳ ରାଷ୍ଟ୍ରର ଲକ୍ଷ୍ୟ ପୂରଣ ହୋଇ ପାରୁନାହିଁ ।

ଏଇତ କିଛିଦିନ ତଳେ ବିଜେଡିରେ ଥିବାବେଳେ ବରିଷ୍ଠ ନେତା ତଥା ଜଣେ ପୂର୍ବତନ ବରିଷ୍ଠ ପ୍ରଶାସନିକ ଅଧିକାରୀ ପ୍ୟାରୀ ମୋହନ ମହାପାତ୍ର ସରକାରଙ୍କୁ ତାଗିଦ କରି କହିଦେଲେ - ଓଡ଼ିଶାରେ ବାବୁମାନେ ଏବେ ବିଶୃଙ୍ଖଳିତ ହୋଇ ଯାଇଛନ୍ତି । ଏମାନଙ୍କୁ ରୋକିବା ଦରକାର । ଏ ବକ୍ତବ୍ୟର ଏ ଅର୍ଥ ହୋଇପାରେ- ସମ୍ଭବତଃ ଏ ରାଜ୍ୟରେ ବାବୁମାନେ ଆଉ ରାଜନୈତିକ ଶାସକମାନଙ୍କୁ ମାନୁ ନାହାଁନ୍ତି କିମ୍ବା ବାବୁମାନଙ୍କୁ ନିୟନ୍ତ୍ରଣରେ ରଖିବାକୁ ମନ୍ତ୍ରୀ ନେତାମାନଙ୍କର ସେମିତି କିଛି ପ୍ରଶାସନିକ ଦକ୍ଷତା କିମ୍ବା ଯୋଗ୍ୟତା  ନାହିଁ ।

ସାଧାରଣ ପ୍ରଶାସନର ସିଦ୍ଧାନ୍ତ ହେଲା, ସଂସଦୀୟ ଗଣତନ୍ତ୍ରର ପରିଧି ଭିତରେ ଅମଲାତନ୍ତ୍ର ଘୁରି ବୁଲେ ଏବଂ ଗତିଶୀଳ ହୁଏ । ଉଭୟ ରାଜନୈତିକ ଶାସକ ଏବଂ ଅମଲାତାନ୍ତ୍ରିକ ପ୍ରଶାସକ ଲୋକଙ୍କ ପାଖରେ ଉତ୍ତରଦାୟୀ ରୁହନ୍ତି । ସମ୍ବିଧାନ ପ୍ରତି ଏମାନଙ୍କର ଅଙ୍ଗିକାର ବଦ୍ଧତା ରହିଥାଏ ।

ସମ୍ବିଧାନ ଅନୁଯାୟୀ ପ୍ରତ୍ୟେକ ରାଜ୍ୟ ଏବଂ କେନ୍ଦ୍ରରେ ମନ୍ତ୍ରୀମଣ୍ଡଳ ରହିଛି । ଶିକ୍ଷାଗତ ଯୋଗ୍ୟତା ତଥା ପ୍ରଶାସନିକ ଦକ୍ଷତାକୁ ନେଇ ମନ୍ତ୍ରୀପଦ ଦିଆଯାଏ । ମନ୍ତ୍ରୀଙ୍କୁ ସାହାଯ୍ୟ ଏବଂ 'ସଠିକ ପରାମର୍ଶ ଦେବାକୁ କିଛି ବରିଷ୍ଠ ପଦାଧିକାରୀ ରହିଥାଆନ୍ତି । ଯେଉଁ ପଦାଧିକାରୀଙ୍କର ସ୍ୱାଧୀନ ଚିନ୍ତା ପ୍ରକଟ କରିବା ଏବଂ ଉପଦେଶ ଦେବାର ଦକ୍ଷତା

ଥାଏ। ଶାସନରେ ଭୁଲ ଠିକ ପାଇଁ ମନ୍ତ୍ରୀମଣ୍ଡଳର ହିଁ ସାମଗ୍ରିକ ଉତ୍ତର ଦାୟିତ୍ୱ ରହିଥାଏ।

ଜଣେ ପ୍ରଶାସକଙ୍କୁ ନିର୍ଭିକ ଏବଂ ସ୍ୱାଧୀନଚେତା ହେବାକୁ ଭାରତୀୟ ସମ୍ବିଧାନ ସୁରକ୍ଷା ଯୋଗାଇ ଦେଇଛି। ସମ୍ବିଧାନର ୩୦୯ ଧାରାରେ ଏ ସୁରକ୍ଷା କଥା ରହିଛି। କୌଣସି କାରଣ ନ ଦର୍ଶାଇ ପ୍ରଶାସନିକ ଅଧିକାରୀଟିଏ ପ୍ରତି କାର୍ଯ୍ୟାନୁଷ୍ଠାନ କରିବା କଷ୍ଟ। ଏହା ମନା ବି। ସାଧାରଣ ପ୍ରଶାସନର ପଢ଼ା ବହିରେ ଏହା ଲେଖାଅଛି।

ସ୍ୱାଧୀନତାର ଠିକ ପ୍ରାରମ୍ଭିକ ଅବସ୍ଥାରେ ଏଠି ଭାରତୀୟ ସମ୍ବିଧାନ ଅନୁସାରେ ବାବୁ ଓ ନେତାଙ୍କ ସଂପର୍କ ଥିଲା ଏବଂ ସରକାରୀ ନୀତି ତଥା କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାକୁ ନେତାମାନେ ବାବୁମାନଙ୍କୁ ଦିଗଦର୍ଶନ ଦେଉଥିଲେ ଏବଂ ଯଦି କାର୍ଯ୍ୟକ୍ରମ ବିଫଳ ହେଉଥିଲା, ନେତାମାନେ ନିଜକୁ ଦାୟୀ ବୋଲି ସ୍ୱିକାର କରୁଥିଲେ।

ଏବେ କିନ୍ତୁ ପରିସ୍ଥିତି ବଦଳିଛି। ରାଜନୀତିରେ ମୂଲ୍ୟବୋଧ କମିଛି। ଧର୍ମ, ଜାତି ଏବଂ ଅଞ୍ଚଳକୁ ଆଧାର କରି ଅନେକ ନେତା ନିର୍ବାଚନ ଲଢୁଛନ୍ତି ଏବଂ ଜିତୁଛନ୍ତି। ଅପରାଧି ପୃଷ୍ଠଭୂମି ଥିବା ଅନେକ ରାଜନେତା ତ ନିର୍ବାଚନ ଜିତି ମନ୍ତ୍ରୀ ବି ହେଉଛନ୍ତି। ଏଇ ନେତାଙ୍କର ତେଣୁ ସାମଗ୍ରିକ ଜନ କଲ୍ୟାଣ ଚିନ୍ତା ନାହିଁ। ନିଜ ସ୍ୱାର୍ଥ ଏବଂ ଗୋଷ୍ଠୀ ଚିନ୍ତାରେ ଏମାନେ ବ୍ୟସ୍ତ। ଏଇଥି ପାଇଁ ସେମାନେ ନିଜ ପାଇଁ ହାଁ ଜୀ ବା 'ୟେସ୍ ମିନିଷ୍ଟର' କହିପାରୁଥିବା ପଦାଧିକାରୀ ଖୋଜୁଛନ୍ତି, ଯେଉଁ ପଦାଧିକାରୀମାନେ ନେତା ଏବଂ ମନ୍ତ୍ରୀଙ୍କର ଇସାରା ଏବଂ ଇଙ୍ଗିତ ବୁଝିପାରି କାମ କରିପାରୁଥିବେ।

ଅସଲ କଥା ହେଲା, ଏପରି ପ୍ରଶାସନିକ ଅଧିକାରୀଙ୍କ ଏ ଦେଶରେ ଆଉ ଅଭାବ ନାହିଁ। ନିଜ କ୍ୟାରିୟର ଏବଂ ସମ୍ପତ୍ତି ବୃଦ୍ଧି ପାଇଁ କିଛି ନେତାଙ୍କର କୁତ୍ସିତ ଇଙ୍ଗିତକୁ ପାଳନ କରିବାକୁ କିଛି ପ୍ରଶାସକ ପ୍ରସ୍ତୁତ ହୋଇଯାଉଛନ୍ତି ଏବଂ ଯେଉଁ ପ୍ରଶାସକ ସ୍ୱାଧୀନ ରହିବାକୁ ଚାହୁଁଛନ୍ତି ନେତାଙ୍କ କୋପ ତାଙ୍କ ଉପରେ ପଡୁଛି। ଅଧିକାରୀଟିଏ ବଦଳି ହେଉଛି କିମ୍ବା ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେଉଛି।

କିଛିଦିନ ତଳେ ପୋଲିସ ଡ଼ି.ଜି. ସମ୍ମିଳନୀରେ ଉଦ୍‌ବୋଧନ ଦେଲାବେଳେ ଭାରତର ତତ୍କାଳୀନ ଗୃହମନ୍ତ୍ରୀ ପି. ଚିଦାମ୍ବରମ୍ କହୁ କହୁ କହିଦେଲେ- ରାଜ୍ୟ ସରକାରମାନେ ନିମ୍ନ କର୍ମଚାରୀମାନଙ୍କୁ ଯେତେବେଳେ ଫୁଟବଲ୍ ପରି କିକ୍ ମାରୁଛନ୍ତି, ବରିଷ୍ଠ ପଦାଧିକାରୀମାନେ ସେତେବେଳେ ନୀରବ ରହୁଛନ୍ତି।

ଓଡ଼ିଶାର ବର୍ତ୍ତମାନର ଏଇ ତଥା କଥିତ ମେଘା ଖଣି ଦୁର୍ନୀତି, ବାବୁ-ନେତାଙ୍କ ସମ୍ପର୍କ ନେଇ ସମ୍ପ୍ରତି ଅନେକ କଥା କହେ। ଅନେକ ଇସରା ବି ଦିଏ। ଏ ଲେଖକ ଏ ଦୁର୍ନୀତି ସମ୍ପର୍କରେ କୌଣସି ମନ୍ତବ୍ୟ ଦେବାକୁ ଚାହେଁ ନାହିଁ। କାରଣ ଏ ଦୁର୍ନୀତି ନେଇ ଏବେ ଭିଜିଲାନ୍ସ ଅନୁସନ୍ଧାନ ଚାଲିଛି। ତେବେ ଏ କଥା ବୋଧେ ସତ, ଓଡ଼ିଶାର ଖଣି ଦୁର୍ନୀତି ଏବର ଘଟଣା ନୁହେଁ। ଏ ଦୁର୍ନୀତି ସମ୍ଭବତଃ ଅନେକ ସମୟ ଧରି ଏଠି ଚାଲି

ଆସୁଛି । ପ୍ରଶ୍ନ ହୁଏ, ଓଡ଼ିଶାର ଖଣିଜ ସମ୍ପଦ ଲୁଟ୍ ହେଉଥିବା ବେଳେ ଓଡ଼ିଶାର ଗରିବ ଜନସାଧାରଣଙ୍କ ଟିକସର ଦରମା ପାଉଥିବା ବାବୁ ଏବଂ ନେତାମାନେ କରୁଥିଲେ କ'ଣ ?

ଓଡ଼ିଶାର ଖଣି ଦୁର୍ନୀତିରୁ କିଛି ଶିକ୍ଷା ମିଳିଛି । ଏ ଶିକ୍ଷା କଥା ପିଲାଙ୍କ ପାଠ ବହିରେ ନିଶ୍ଚୟ ଲେଖା ହେବ । ପ୍ରଥମ ଶିକ୍ଷା ହେଲା ଶାସନର ବିଫଳତା ପାଇଁ ମନ୍ତ୍ରୀମାନେ ନିଜକୁ ଦାୟୀ କରିବାର ଯେଉଁ ପାରମ୍ପରିକ ଧାରଣା ଥିଲା ଏ ଧାରଣା ଆଉ ରହୁନାହିଁ । ନିଜର ରାଜନୈତିକ ସ୍ଥିତି ଏବଂ ସୁବିଧା ପାଇଁ ମନ୍ତ୍ରୀମାନେ ବାବୁମାନଙ୍କୁ ଯେକୌଣସି ସମୟରେ ବଳି ବି ପକାଇ ଦେଇ ପାରନ୍ତି ଏବଂ ଦ୍ୱିତୀୟ ଶିକ୍ଷା ହେଲା ଯେଉଁ କିଛି ଅସାଧୁ ବାବୁ ଯେଉଁ କିଛି ଅସାଧୁ ମନ୍ତ୍ରୀ ତଥା ନେତାଙ୍କ କୁତ୍ସିତ ଇଚ୍ଛାକୁ ପୂରଣ କରି କିଛି ସୁବିଧା ପାଇଛନ୍ତି ସେ ସୁବିଧା କିନ୍ତୁ ଦୀର୍ଘକାଳୀନ ନୁହେଁ । ଯାହା ଦିର୍ଘକାଳୀନ ତାହା ହେଲା ନେତାଙ୍କ ସହ ଅସାଧୁ ମେଣ୍ଟ କଲେ କେବଳ ଶେଷରେ ଜେଲ ଯିବାକୁ ହୁଏ । ସାମାଜିକ ପ୍ରତିଷ୍ଠା ହରାଇବାକୁ ପଡ଼େ ।

ହଁ, ଏ ଆଲୋଚନାର ଶେଷ କଥା । ଭାରତୀୟ ଗଣତାନ୍ତ୍ରିକ ତଥା ସଂସଦୀୟ ଶାସନ କେବଳ ନେତା ଏବଂ ବାବୁମାନଙ୍କର ନୁହେଁ । ସାଧାରଣ ଜନତା ବି ଗଣତନ୍ତ୍ରର ପ୍ରମୁଖ ଭାଗୀଦାର । ଗଣତାନ୍ତ୍ରର ମାନେ ନୁହେଁ ଯେ, କେବଳ ନେତା ନିର୍ବାଚନ କରିବା । ସାଧାରଣ ଜନତା ପାଇଁ ଗଣତନ୍ତ୍ରର ଅର୍ଥ ହେଲା, ଦକ୍ଷ, ଯୋଗ୍ୟ ତଥା ଚାରିତ୍ରିକ ସଂହତି ଥିବା ନେତା ନିର୍ବାଚନ କରିବା ଏବଂ ପ୍ରଶାସନିକ ପ୍ରଦାଧିକାରୀର କାର୍ଯ୍ୟକଳାପ ପ୍ରତି ସଚେତନ ରହିବା ।

ନଚେତ୍ ବାବୁ ଏବଂ ନେତାମାନେ ନିଜ ଭିତରେ ଏପରି ଅନେକ ଅସାଧୁ ଫୁଟବଲ୍ ଖେଳୁଥିବେ ଏବଂ ଆମେ ସମସ୍ତେ ସାଧାରଣ ଜନତା ନୀରବରେ ଏ ଖେଳ ଦେଖୁଥିବା ।

ସୁତରାଂ ଜାଗ ଜନତା ଜାଗ । ସମୟ ଡ଼େରି ହୋଇଯାଉଛି ।



# ଶିଶୁ ଯୌନ ନିର୍ଯ୍ୟାତନା : ପ୍ରସଙ୍ଗ ନୁହେଁ ସମସ୍ୟା

ଶିଶୁ ଯୌନ ନିର୍ଯ୍ୟାତନା ଖବର ପ୍ରତିଦିନ ଏଠି ଗଣମାଧ୍ୟମରେ ପ୍ରକାଶ ପାଏ। ସରଳ ଶିଶୁମାନଙ୍କୁ ଏପରି ଯନ୍ତ୍ରଣା ଦେବା ଭାରତ ବର୍ଷର ଯେପରି ଏବେ ଏକ ନିତିଦିନିଆ ଘଟଣା। ଏ ଖାଲି ଭାରତର ଘଟଣା ନୁହେଁ। ପୃଥିବୀର ପ୍ରାୟ ସବୁ ଦେଶରେ କଅଁଳ ନିଷ୍ପାପ ଶିଶୁମାନେ ଯୌନ ନିର୍ଯ୍ୟାତନାର ଶୀକାର ହୁଅନ୍ତି।

ଶିଶୁଙ୍କ ପ୍ରତି ଯୌନ ଅତ୍ୟାଚାର ଏବର କଥା ନୁହେଁ। ପ୍ରାୟ ଅନେକ ବର୍ଷ ଧରି ଏ ଅଘଟଣା ଘଟୁଛି। ଯଦିଓ ପ୍ରତିବର୍ଷ ନଭେମ୍ବର ୧୬ ତାରିଖକୁ ବିଶ୍ୱ ଶିଶୁ ଯୌନ ନିର୍ଯ୍ୟାତନା ପ୍ରତିରୋଧ ଦିବସ ରୂପେ ପାଳନ କରାଯାଏ, ଏହାର ଯେ ଏଠି କିଛି ପ୍ରଭାବ ପଡ଼େ, ଏ ସମ୍ପର୍କରେ ସ୍ପଷ୍ଟ କହିବା ଅବଶ୍ୟ କଷ୍ଟ।

ଛ'ବର୍ଷୀୟ ଝିଅଟିକୁ ଅଟୋ ଡ୍ରାଇଭରଟିଏ ଧର୍ଷଣ କରିବା କଥା ଏବେ ଖବରରେ ଆସିଥିଲା। ଅଟୋ ଚାଳକ ସେ ଝିଅର ଅଜଣା ନଥିଲା। ପ୍ରତିଦିନ ସେ ଝିଅ ସେ ଅଟୋରେ ତା' ସ୍କୁଲକୁ ଯାଏ।

ସବୁଠରୁ ବଡ଼ ସମ୍ବାଦ ହେଲା ଜଣେ କିଶୋରୀ ଝିଅକୁ ତା'ର ଉପପିତା ବାରମ୍ବାର ଧର୍ଷଣ କରିବା କଥା। ଅଭିଯୋଗ ମିଳିବା ପରେ ଉପପିତା ଏବେ ଜେଲରେ ଏବଂ ପୀଡିତ କିଶୋରୀ ଝିଅଟି କୌଣସି ଏକ ସେବା କୁଟୀରରେ ରହିଛି।

ଏବଂ ସିନେମା ତଥା ଆଲ୍‌ବମ୍‌ରେ ଅଭିନୟ କରିବାର ଲୋଭ ଦେଖାଇ ଛୋଟ ପିଲାଙ୍କୁ ଯୌନ ନିର୍ଯ୍ୟାତନା ଖବର ଶୁଣିଲେ ସେତେ ଆଉ ଏବେ ଆଶ୍ଚର୍ଯ୍ୟ ବି ଲାଗୁନାହିଁ।

ହଁ ପାଠକ ବନ୍ଧୁ! ଶିଶୁ ଯୌନ ନିର୍ଯ୍ୟାତନା ନେଇ ଏଠି ସମ୍ପ୍ରତି ଅହରହ ଅନେକ ଘଟଣା ଘଟୁଛି। ଖବର କାଗଜରୁ ଉଦାହରଣର ତାଲିକା କରି ବସିଲେ ତାଲିକା ନିଶ୍ଚୟ ଦୀର୍ଘ ହୋଇଯିବ।

ସତକଥା ହେଲା, ଶିଶୁ ଯୌନ ଅତ୍ୟାଚାର ଭାରତ ବର୍ଷର ଅନେକ ପ୍ରସଙ୍ଗ ଭିତରୁ କେବଳ ପ୍ରସଙ୍ଗଟିଏ ନୁହେଁ। ଇଏ ଏବେ ଏକ ବଡ଼ ସମସ୍ୟା। ଦୁଃଖର କଥା,

ଏଇ ସମସ୍ୟା ସମାଧାନ ପ୍ରତି ସମାଜର ସବୁ ସ୍ତରରେ ଯେପରି ଗୁରୁତ୍ୱ ଦେବା କଥା ତାହା ଦିଆଯାଉ ନାହିଁ ଏବଂ ଭାରତୀୟଙ୍କର ବଡ଼ ଦୁର୍ଗୁଣ ହେଲା, ସବୁ ଅଘଟଣକୁ ସହ୍ୟ କରିଯିବା। ଏହାକୁ ଏମାନେ ସହିଷ୍ଣୁତା ବୋଲି କହନ୍ତି। ପ୍ରକୃତରେ କିନ୍ତୁ ଏହା ସହିଷ୍ଣୁତା ନୁହେଁ, ଉଦାସୀନତା। ଉଦାସୀନତା ହିଁ ସବୁ କୁପ୍ରଥାକୁ ପ୍ରୋତ୍ସାହନ ଦିଏ। ଦେଉଛି।

ଏ ଲେଖକ ଏବେ ଭାରତ ସରକାରଙ୍କର ୱେବ୍‌ସାଇଟ୍‌ରେ ଶିଶୁ ଯୌନ ନିର୍ଯ୍ୟାତନା ଉପରେ ଭାରତର ମହିଳା ତଥା ଶିଶୁ ବିକାଶ ମନ୍ତ୍ରାଳୟ କରିଥିବା ଏକ ଅଧ୍ୟୟନ ରିପୋର୍ଟ ଦେଖିଥିଲା। ଏ ରିପୋର୍ଟରେ ୨୦୦୭ ମସିହାରୁ ଆଜି ପର୍ଯ୍ୟନ୍ତ ଏ ଦେଶରେ ଘଟିଥିବା ଶିଶୁ ଯୌନ ନିର୍ଯ୍ୟାତନା ନେଇ ବିବରଣୀ ରହିଛି। ନିର୍ଯ୍ୟାତନାର କାରକ ଏବଂ କାରଣ ସମ୍ପର୍କରେ ଉଲ୍ଲେଖ ଅଛି।

ଏ ରିପୋର୍ଟ କହେ, ଭାରତ ବର୍ଷର ପ୍ରାୟ ୫୩ ପ୍ରତିଶତ ପିଲାଙ୍କୁ ଯୌନ ନିର୍ଯ୍ୟାତନା ଦିଆଯାଏ। ଏ ଅଘଟଣ ଏଠି ପ୍ରତିଦିନ ଘଟେ। ପ୍ରାୟ ଅଧିକାଂଶ ସ୍ଥାନରେ ଏ ନିର୍ଯ୍ୟାତନା ପିଲାର ଜଣାଶୁଣା ଏବଂ ଆତ୍ମୀୟମାନେ ହିଁ ଦେଇଥାଆନ୍ତି। ଏମାନେ ଦାଦା, କକା, ଉପପିତା, ବଡ଼ ପୁଅପିଲା ହୋଇପାରନ୍ତି କିମ୍ୱା ଅଟୋ ଡ୍ରାଇଭର, ଘରର ଚାକର, ରିକ୍ସା ଚାଳକ ବି ହୋଇଥାଇ ପାରନ୍ତି। କିଛି କ୍ଷେତ୍ରରେ ମଧ୍ୟ ଯୌନ କ୍ଷୁଧାର୍ଥ ବୟସ୍କ ମହିଳାମାନେ ଛୋଟ ପିଲାଙ୍କୁ ଯୌନ ନିର୍ଯ୍ୟାତନା ଦେବା କଥା ଏଥିରେ ରିପୋର୍ଟରେ ଅଛି।

ଶିଶୁଙ୍କ ଯୌନ ଅତ୍ୟାଚାରର ଏ ସବୁ ଜଣାଶୁଣା କାରକ; କର୍ତ୍ତା। କାରଣ କିନ୍ତୁ ସହଜ। କାରଣ ହେଉଛି ଶିଶୁମାନଙ୍କର ସରଳତା, ସବୁ କଥାକୁ ହଁ କହି କରିଦେବାର ପ୍ରବୃତ୍ତି ଏବଂ ନିଜକୁ ସୁରକ୍ଷା ଦେବାର ଶାରିରୀକ ଦୁର୍ବଳତା। ଚକୋଲେଟ ଦେଇ ସରଳ ଶିଶୁଟିକୁ ଯୌନ ନିର୍ଯ୍ୟାତନା ଦେଇଥିବା ଅପରାଧୀକୁ କେଉଁ ପ୍ରକାର ଅପରାଧ ତାଲିକାରେ ଅନ୍ତର୍ଭୁକ୍ତ କରାଯିବା ଦରକାର, ଏଥିନେଇ ପୁନଃ ତର୍ଜମା ହେବା ଉଚିତ।

ଶିଶୁଙ୍କ ଯୌନ ନିର୍ଯ୍ୟାତନା କେବଳ ଦୈହିକ ହୋଇନଥାଏ। ଏହା ମନସ୍ତତିକ ହୋଇଥାଏ। ମୌଖିକ ବି ହୋଇଥାଏ। କିନ୍ତୁ ସବୁ ଯୌନ ନିର୍ଯ୍ୟାତନାର ସ୍ମୃତି ଯେ ଭୟଙ୍କର ଏଥିନେଇ ଗବେଷଣା କରୁଥିବା ମନସ୍ତତ୍ୱବିତ୍‌ମାନେ ଏହାକୁ ସ୍ୱୀକାର କରନ୍ତି।

ପିଲାବେଳେ ଯୌନ ନିର୍ଯ୍ୟାତିତ ହୋଇ ବଡ଼ ହୋଇଥିବା କିଛି ପୀଡିତମାନଙ୍କର ଅନୁଭୂତି ଉପରେ ଏକ ସଂଦର୍ଭ ପ୍ରକାଶ ପାଇଛି। 'ଆଡ଼ଲ୍‌ଟ ସର୍ଭାଇଭର ଅଫ୍ ଚାଇଲଡ଼୍ ସେକ୍‌ସୁଆଲ ଆବ୍ୟୁଜ୍'। ସେମାନଙ୍କର ଆତ୍ମ ବେଦନାର କିଛି ଅଂଶ ଏ ଲେଖକ ଏଠି ଏ ଆଲୋଚନାରେ ଅବତାରଣା କରିବାକୁ ଚାହେଁ।

ଅତି ପିଲାବେଳେ ଯୌନ ନିର୍ଯ୍ୟାତନା ପାଇଥିବା କିଛି ପୀଡିତଙ୍କ ଭିତରୁ ଅନେକ ଥାଆନ୍ତି, ଯେଉଁମାନେ ଏ ଘଟଣା ପୁରା ଭୁଲି ଯାଇଥାଆନ୍ତି। ସେମାନେ ବଡ଼ ହୁଅନ୍ତି;

ବିବାହ କରନ୍ତି; ସମ୍ପର୍କୀୟଙ୍କ ସହ ସମ୍ପର୍କ ରଖନ୍ତି।

କିନ୍ତୁ ଯୌନ ପୀଡିତ ଶିଶୁମାନଙ୍କ ଭିତରୁ ଅନେକ ଥାଆନ୍ତି ଯେଉଁମାନଙ୍କର ପିଲାବେଳର ଏ ଅଘଟଣ ମନେ ଥାଏ। ଏ ସ୍ମୃତି ବି ମନେ ପଡ଼େ। ସେ ସ୍ମୃତିକୁ ଏମାନେ ନିଜ ବନ୍ଧୁଙ୍କ ସହ ବାଣ୍ଟନ୍ତି। ସମ୍ପର୍କୀୟଙ୍କୁ କହନ୍ତି। ଏପରିକି ନିଜ ଜୀବନସାଥୀଙ୍କ ଠାରୁ ଏ କଥା ଲୁଚାଇ ରଖିବାକୁ ଏମାନେ ପସନ୍ଦ ବି କରନ୍ତି ନାହିଁ।

ଏ ପିଡ଼ୀତମାନେ ସବୁ ସମ୍ପର୍କୀୟଙ୍କୁ ସନ୍ଦେହ କରି ବସନ୍ତି। ଗୁରୁଜନ କହୁଥିବା ବ୍ୟକ୍ତିଙ୍କ ପ୍ରତି ସମ୍ମାନ ହରାଇ ଥାଆନ୍ତି। ବିଶ୍ୱାସ ଏମାନଙ୍କର ତୁଟି ଯାଇଥାଏ। ନିଜ ପିଲାଙ୍କୁ ଅନ୍ୟଜଣେ ଗୁରୁଜନ ଚକେଲେଟ୍ ଦେଉଥିବା କିମ୍ବା ଗେଲ କରୁଥିବା ଦୃଶ୍ୟ ସେ ଦେଖି ସହ୍ୟ କରିପାରନ୍ତି ନାହିଁ।

ସୁତରାଂ, ଶିଶୁ ଯୌନ ନିର୍ଯ୍ୟାତନା ପରି ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟାକୁ ସାମାନ୍ୟ ପ୍ରସଙ୍ଗଟିଏ କହି ନଜର ଅନ୍ଦାଜ କରିଦେବାର ସମୟ ଏବେ ଆଉ ନାହିଁ। ଏହା ବିରୁଦ୍ଧରେ ସାମାଜିକ ସଚେତନତା ସୃଷ୍ଟି ହେବା ଏବେ ଦରକାର। ଅବଶ୍ୟ ଏହା ସ୍ୱୀକାରଯୋଗ୍ୟ ଯେ ଏ ସମ୍ପର୍କରେ ଅନେକ ଲେଖକ ଏଠି ଲେଖୁଛନ୍ତି। ସାମାଜିକ କର୍ମକର୍ତ୍ତା ତଥା ସ୍ୱେଚ୍ଛାସେବୀ ସଂସ୍ଥାମାନେ ତୃଣମୂଳ ସ୍ତରରେ କାମ କରୁଛନ୍ତି। ତଥାପି କାହିଁକି ଏହା ଯଥେଷ୍ଟ ଲାଗୁନାହିଁ। ଏ ଦେଶରେ ଯେଉଠି ସରକାରୀ ରିପୋର୍ଟ ଅନୁଯାୟୀ ପ୍ରାୟ ଅଧାରୁ ଅଧିକ ଶିଶୁ ଯୌନ ନିର୍ଯ୍ୟାତିତ ହେଉଛନ୍ତି, ଭାରତ ବର୍ଷର ଶିଶୁମାନେ ଯେ ବାଲ୍ୟାବସ୍ଥା ବେଳେ ସମ୍ପୂର୍ଣ୍ଣ ସୁରକ୍ଷିତ ଏକଥା କୁହାଯିବ ବା କେମିତି ?

ଉପସଂହାରରେ ଏ ଲେଖକ ଏକଥା କହିବାକୁ ବି ଚାହେଁ ଯେ, ବାପ, ମା ଏବଂ ଶିକ୍ଷକ, ଶିକ୍ଷୟତ୍ରୀ ଦାୟିତ୍ୱବାନ ହେଲେ ଶିଶୁ ଯୌନ ନିର୍ଯ୍ୟାତନା ପ୍ରାୟ କମି ଯାଆନ୍ତା। ଯୌନ ନିର୍ଯ୍ୟାତନାକୁ ଏକ ସାମାଜିକ କଳଙ୍କ କହି ଲୁଚାଇ ରଖିଲେ ଏ କଳଙ୍କ ଧୋଇ ଯାଏନି। ବରଂ ଏହା ବେଶି କଳା ଦେଖାଯାଏ। ଏକଥା ଅଭିଭାବକ ଏବଂ ଶିକ୍ଷକମାନେ ବୁଝିବା ଉଚିତ।

ଶିଶୁ ଯୌନ ନିର୍ଯ୍ୟାତନାମୁକ୍ତ ଭାରତ ବର୍ଷଟିଏ କେବେ ଆସିବ, ଏ ଅପେକ୍ଷାରେ ଆମେ ଅଛୁ।



# ବିଜ୍ଞାପନ

ଏବେ ଟି.ଭି. ଚାନେଲ୍‌ମାନଙ୍କରେ ପ୍ରସାରିତ ହେଉଥିବା ଅନେକ ବିଜ୍ଞାପନ ଘରେ ପରିବାର ସହ ଏକାଠି ବସି ଆଉ ଦେଖି ହେଉନାହିଁ। ସେକ୍ସ, ଅଶ୍ଳୀଳତାରେ ଏ ସବୁ ଭରପୁର। କିଛି ବିଜ୍ଞାପନ ତ ଅଛି ତାର ଅର୍ଥ କ'ଣ ଏବଂ କି ସନ୍ଦେଶ ଏମାନେ ଦେବାକୁ ଚାହାଁନ୍ତି ତାହା ଜଣା ପଡ଼େନାହିଁ। ଏଇ ଯେମିତି ଓ୍ୱାଇଲ୍‌ଡ୍ ଷ୍ଟୋନ୍ ନାମକ ଏକ ବାସ୍ନା ତେଲ ବା ପରଫ୍ୟୁମ୍‌ର ବିଜ୍ଞାପନ। ଅଭିଯୋଗ ଆସିଲାଣି, ଏ ବିଜ୍ଞାପନ ଘରେ ଦେଖିବା କଷ୍ଟ। ଅରୁଚିକର ଏବଂ ବିବାହ ବହିର୍ଭୁତ ଯୌନ ସମ୍ପର୍କକୁ ଏହା ପ୍ରୋତ୍ସାହନ ଦେଉଛି। ଭାରତର ସେନ୍‌ସର୍ ବୋର୍ଡ ଏ ସବୁକୁ ନିୟନ୍ତ୍ରଣ କରୁନାହିଁ କାହିଁକି, ଏପରି ପ୍ରଶ୍ନ ମଧ୍ୟ ହେଲାଣି।

ଏମିତି ଅଭିଯୋଗର ଏ ଦେଶର ବିଜ୍ଞାପନ ଗୁରୁମାନେ ଉତ୍ତର ବି ରଖୁଛନ୍ତି। କହନ୍ତି- ବିଜ୍ଞାପନ ହେଉଛି ଉପଭୋକ୍ତା ସଂସ୍କୃତିର ଏକ ଅଂଶ। ଏ ସଂସ୍କୃତିର ଦାର୍ଶନିକ ନାଁ ହେଉଛି ଉପଭୋକ୍ତାବାଦ। କଞ୍ଜୁମରଜିମ୍। ଲୋକଙ୍କ ଉପଭୋଗ ପାଇଁ ଜିନିଷ ତିଆରି କରିବା ଏବଂ ଏହାର ବିଜ୍ଞାପନ ମାଧ୍ୟମରେ ପ୍ରଦର୍ଶନ କରିବା ଏହା ମଧ୍ୟ ପଦାର୍ଥ ପ୍ରସ୍ତୁତ କର୍ତ୍ତାଙ୍କର ଏକ ମୌଳିକ ଅଧିକାର। ଯୌନ ଉଦ୍ଦିପନା ଜାଗ୍ରତ ନିମନ୍ତେ ଖାଉଟି ଦ୍ରବ୍ୟ ପ୍ରସ୍ତୁତ ହେବନି, ଏପରି ଅଭିଯୋଗ ଆଣିବା ପ୍ରକୃତରେ ଏଠି ପୁରୁଣା ଚିନ୍ତାର ହିଁ ପ୍ରତିଫଳନ ଦିଏ।

ଅଭିଯୋଗ ଏବଂ ପ୍ରତି ଅଭିଯୋଗର ଉତ୍ତର ଯାହା ହେଉନା କାହିଁକି, ଅସଲ କଥା ହେଲା, ଗତ ଦୁଇ ଦଶନ୍ଧି ଭିତରେ ଭାରତରେ ମଧ୍ୟବିତ୍ତ ଶ୍ରେଣୀରେ ଥିବା ଲୋକଙ୍କ ସଂଖ୍ୟା ବୃଦ୍ଧି ପାଇଛି। ଆୟ ଏମାନଙ୍କର ଅଧିକ ହୋଇଛି। ମନ ପସନ୍ଦର ଜିନିଷ କିଣିବାକୁ ଭାରତୀୟ ମଧ୍ୟବର୍ଗୀଙ୍କ କ୍ରୟ ଶକ୍ତି ଆଉ ପ୍ରତିବନ୍ଧକ ନୁହେଁ। ଏଠାର ମଧ୍ୟବର୍ଗ ଏକଥା ବି ଚାହେଁ, ତାର ଉପଭୋଗ ପାଇଁ ପ୍ରସ୍ତୁତ ହେଉଥିବା ସମସ୍ତ ଜିନିଷର ଗୁଣବତ୍ତା, ଦାମ୍ ଏବଂ ଉପାଦେୟତା ସମ୍ପର୍କରେ ସମସ୍ତ ବିବରଣୀ ତାର ବନ୍ଦ କୋଠରୀ ଭିତରେ ତାକୁ ମିଳିବା ଦରକାର। ଖାଉଟିର ଏ ମନସ୍ତତ୍ୱକୁ ବୁଝିପାରି ଉପଭୋକ୍ତାବାଦୀମାନେ ବିଜ୍ଞାପନର ପସରା ପୃଥିବୀ ସାରା ତେଣୁ ଖୋଲି ଦେଇଛନ୍ତି। ବ୍ୟବସାୟ କରୁଛନ୍ତି।

ପ୍ରତ୍ୟେକ ବ୍ୟବସାୟର ମଧ୍ୟ ନିର୍ଦ୍ଦିଷ୍ଟ ଅର୍ଥଟିଏ ରହିଛି। ସେ ଅର୍ଥ ହେଉଛି, ପ୍ରତ୍ୟେକ ପଦାର୍ଥ ପାଇଁ ବଜାର ସୃଷ୍ଟି କରିବା। ବଜାର ପାଇଁ ଖାଉଟି ଖୋଜିବା ଏବଂ ଏଇ ଖାଉଟି

ଖୋଜିବାର ଭଲ ପ୍ରକ୍ରିୟା ହେଉଛି ବିଜ୍ଞାପନ।

୧୯୭୦ ଦଶକ ପର୍ଯ୍ୟନ୍ତ ବିଜ୍ଞାପନ ପ୍ରତି ଏଠି ଏତେ ଆଗ୍ରହ ନଥିଲା। କୌଣସି ଖାଉଟି ଜିନିଷର ବିଜ୍ଞାପନକୁ ଏ ଦେଶର ତତ୍କାଳୀନ ଶାସକବର୍ଗ ତଥା ଉପଭୋକ୍ତାମାନେ ବି ବିରୋଧ କରୁଥିଲେ। ବିରୋଧର କାରଣ ଥିଲା, ବିଜ୍ଞାପନ ଯୋଗୁଁ ଜିନିଷର ଦାମ୍ ବଢୁଥିଲା। ବଢ଼ନ୍ତା ଦାମ୍ ଦେଇ ଜିନିଷ କିଣିବାକୁ ଲୋକମାନଙ୍କର ଆର୍ଥିକ ସ୍ୱଚ୍ଛଳତା ନଥିଲା ଏବଂ ବିଜ୍ଞାପନ ଦେଖି ଜିନିଷ କିଣିବାକୁ ଘରେ ପିଲାମାନେ ଜିଦ୍ ଧରି ବସିଲେ ଘରେ ଅଶାନ୍ତି ସୃଷ୍ଟି ହେଉଥିଲା।

ଅବଶ୍ୟ ଭାରତରେ ସେତେବେଳେ ଏତେ ଟେଲିଭିଜନ୍ ନଥିଲା। ବୈଦ୍ୟୁତିକ ଗଣମାଧ୍ୟମର ବହୁଳ ପ୍ରସାର ଘଟିଥିଲେ ତତ୍କାଳୀନ ଶାସକବର୍ଗ ବିଜ୍ଞାପନର ସୁଅକୁ କେତେଦୂର ରୋକି ପାରିଥାଆନ୍ତେ ଏହା ମଧ୍ୟ ପ୍ରଶ୍ନ ଆସେ।

ଏବେ କିନ୍ତୁ ସମୟ ବଦଳିଛି। ସାରା ପୃଥିବୀ ଏକ ସମନ୍ୱିତ ବଜାରଟିଏ ହୋଇ ଯାଇଛି। କୌଣସି ଜିନିଷ ସମ୍ପର୍କରେ ତତ୍କ୍ଷଣାତ୍ ସୂଚନା ପାଇବାରେ ଅସୁବିଧା ନାହିଁ। ବଜାର ଏବଂ ଖାଉଟିଙ୍କ ମଧ୍ୟରେ ତିଷ୍ଠି ରହିବା ପାଇଁ ଦେଶୀ ତଥା ବିଦେଶୀ ପ୍ରସ୍ତୁତ ଦ୍ରବ୍ୟ ଉଭୟ ପରସ୍ପର ସହ ପ୍ରତିଯୋଗିତା କରୁଛନ୍ତି।

ବିଜ୍ଞାପନର ଆବଶ୍ୟକତା କେତେ, ଏପରି ପ୍ରଶ୍ନ ହେଲେ ଏ ସମ୍ପର୍କରେ ଭାରତରେ ପରସ୍ପର ବିରୋଧି ମତ ମଧ୍ୟ ଆସେ। ବିଜ୍ଞାପନର ସପକ୍ଷବାଦୀମାନେ ଯୁକ୍ତି ଦର୍ଶାନ୍ତି-ବିଜ୍ଞାପନ ଏ ଦେଶର ସମ୍ପତ୍ତି ବୃଦ୍ଧି କରେ। ଜିନିଷର ଅଧିକ ବିକ୍ରୀ ହେଲେ ଏଥିରୁ ଅଧିକ ଟିକସ ମିଳେ। ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତା ପରି ସାମାଜିକ କ୍ଷେତ୍ରରେ ଅଧିକ ବିନିଯୋଗ ପାଇଁ ବଜେଟ୍‌ରେ ଅର୍ଥର ଅଭାବ ରହେନି। କ୍ରିଡ଼ା ପାଇଁ ପ୍ରାୟୋଜକ ମିଳିଗଲେ ଏ ଦେଶର କ୍ରିଡ଼ାର ଉନ୍ନତି ହୁଏ ଏବଂ ବିଜ୍ଞାପନ ଜଗତରେ ସମ୍ପ୍ରତି ନିଯୁକ୍ତି ବି ବେଶି। ମଡେଲ ଠାରୁ ଆରମ୍ଭ କରି କାହ୍ନ ଲେଖାଳି ପର୍ଯ୍ୟନ୍ତ ଅନେକଙ୍କୁ ଏଠି ଏକ ସହଜ ଏବଂ ଲୋଭନୀୟ ମଜୁରୀ ବି ମିଳିଯାଏ। ସେଇଥିପାଇଁ ତ ଭାରତରେ ଅନେକ ସେଲିବ୍ରିଟି ବିଜ୍ଞାପନରେ ଆସିବାକୁ ପସନ୍ଦ କଲେଣି। ଅନେକ ମଡେଲ ବିଜ୍ଞାପନରେ ପ୍ରଦର୍ଶନ କରି ଟି.ଭି. ଏବଂ ଚଳଚ୍ଚିତ୍ରର ଜଣାଶୁଣା ତାରକା ହୋଇ ଗଲେଣି।

ବିଜ୍ଞାପନକୁ ବିରୋଧ କରୁଥିବା ଗୋଷ୍ଠୀଙ୍କ ମତ କିନ୍ତୁ ପୁରା ଭିନ୍ନ। ସପକ୍ଷବାଦୀଙ୍କ ସବୁ ଯୁକ୍ତିକୁ ଏମାନେ ସହଜରେ ହଜମ କରିପାରନ୍ତି ନାହିଁ। ବିଜ୍ଞାପନକୁ ଏମାନଙ୍କର ନାପସନ୍ଦର କାରଣ ହେଲା- ବିଜ୍ଞାପନରେ ଏବେ ଅଶ୍ଳୀଳତା ବେଶି। ଅର୍ଦ୍ଧନଗ୍ନ ମହିଳା ତଥା ପୁରୁଷଙ୍କୁ ନେଇ ଖାଉଟି ପଦାର୍ଥର ସୋ' କରିବା ପ୍ରତ୍ୟେକ ବିଜ୍ଞାପନ ପ୍ରସ୍ତୁତ କର୍ତ୍ତାଙ୍କର ଏବେ ଏକ ଧାରାବାହିକ ଫେସନ। ଅନେକ ସମୟରେ ତ ବିଜ୍ଞାପନଟିଏ କି ସନ୍ଦେଶ ଦେବାକୁ ଚାହେଁ ତାହା ସ୍ପଷ୍ଟ ଜଣାଯାଏ ନାହିଁ। କୌଣସି ବୁଝା ପଡୁନଥିବା ଏବଂ ଅଶ୍ଳୀଳତା

ବହନ କରୁଥିବା ବିଜ୍ଞାପନ ଯେ ଭାରତୀୟ ସମାଜର କେଉଁ ସୃଜନଶୀଳତା କଥା କହେ ବାସ୍ତବରେ ଏହା ଜାଣିବା କଷ୍ଟ।

ବିଜ୍ଞାପନର ସପକ୍ଷ ଏବଂ ବିପକ୍ଷରେ ଯୁକ୍ତିର ହିସାବ କରି ବସିଲେ ନିଶ୍ଚୟ ଅବଶ୍ୟ ଏହା ଦୀର୍ଘ ହୋଇଯିବ। ଏହା କିନ୍ତୁ ସ୍ୱିକାର୍ଯ୍ୟ-ଭାରତରେ ଏପରି ଏକ ଖାଉଟି ଗୋଷ୍ଠୀ ଅଛନ୍ତି ଯେଉଁମାନେ ନିର୍ଦ୍ଦିଷ୍ଟ ବ୍ରାଣ୍ଡ୍ ଦେଖି ଜିନିଷ କିଣିବାକୁ ପସନ୍ଦ କରିଥାଆନ୍ତି ଏବଂ କୌଣସି ଏକ ଜନପ୍ରିୟ ବ୍ରାଣ୍ଡ୍‌ର ଜିନିଷ କିଣି, ବାହାରେ ପ୍ରଦର୍ଶନ କରିବାରେ ଏମାନେ ଆତ୍ମ ସନ୍ତୋଷ ବି ପାଇଥାଆନ୍ତି। ନୂଆ ବିଜ୍ଞାପନର ଏମାନଙ୍କ ଉପରେ ସେତେ ପ୍ରଭାବ ନଥାଏ।

ଅନ୍ୟ ଏକ ଖାଉଟି ଗୋଷ୍ଠୀ ଅଛନ୍ତି ଯେଉଁମାନେ ବିଜ୍ଞାପନ ଦେଖି ଜିନିଷ କିଣନ୍ତି। ଦାମ୍ କମ୍ ଥିଲେ ଏବଂ ଗୁଣବତ୍ତା ଭଲ ଥିଲେ ନୂଆ ଜିନିଷ କିଣିବାରେ ଏମାନଙ୍କର ଶ୍ରଦ୍ଧା ବେଶି ଥାଏ।

ସ୍ପଷ୍ଟ କହିଲେ, ବିଜ୍ଞାପନ କିଛି ଖରାପ କଥା ନୁହେଁ। ଅନ୍ୟର ଆକର୍ଷଣ ପାଇଁ ନିଜ କଥା ନିଜେ କହିବା ଏବେ ଦରକାର ହେଉଛି। ଜଗତିକରଣ ବର୍ତ୍ତମାନ ଯେଉଁ ତଷ୍କିକଟା ପ୍ରତିଯୋଗିତା ଆଣି ଦେଇଛି ଏହା ହିଁ ତାହାର ପ୍ରଭାବ। ଅନେକ ରାଜନେତା ଏବଂ ରାଜନୈତିକ ଦଳ ନିଜର ସଫଳତା କଥା ବିଜ୍ଞାପନରେ ମଧ୍ୟ କହିଲେଣି।

କିନ୍ତୁ ଦୁଃଖ ହେଉଛି, ବିଜ୍ଞାପନରେ ଠକେଇ ବଢ଼ିଛି। ଅଶ୍ଳୀଳତା ଏବଂ ଅନୈତିକତାକୁ ନେଇ ମାର୍କେଟିଙ୍ଗ ଚାଲିଛି। "ଜାଗୋ ଗ୍ରାହକ ଜାଗୋ" ସ୍ଲୋଗାନ୍‌ଟିଏ ଏଥିପାଇଁ ନିଶ୍ଚୟ ଯଥେଷ୍ଟ ନୁହେଁ।

ଆଉ ଅଧିକ କିଛି ପଦକ୍ଷେପ ତେଣୁ ଦରକାର। ସେନ୍‌ସର ବୋର୍ଡ ଏଥିନେଇ ଅଧିକ ଚିନ୍ତାରେ ହିଁ ଥିବେ।



# ଯୋଗରୁ ରାଜନୀତି

ପୂଜ୍ୟ ଯୋଗ ଗୁରୁ ବାବା ରାମଦେବ ଏବେ ଏକ ନୂଆ ରାଜନୈତିକ ଦଳ ଗଠନ କରିଛନ୍ତି। ସେ ଏହାର ନେତୃତ୍ୱ ବି ନେଉଛନ୍ତି। ଦଳର ନାଁ ରଖାଯାଇଛି 'ଭାରତ ସ୍ୱାଭିମାନ ପାର୍ଟି'।

ବାବାଙ୍କର ଏତାଦୃଶ ନିଷ୍ପତ୍ତିରେ ବାବାଙ୍କର ଥିବା ଅସଂଖ୍ୟ ଶିଷ୍ୟ ଆଶ୍ଚର୍ଯ୍ୟ ହେଲେଣି। ରାମଦେବଙ୍କର ଏ ରାଜନୈତିକ ଜୀବନ ଖୁବ୍ କମ୍ ଦିନ ବୋଲି ଅନେକ ରାଜନୈତିକ ଦଳ ଭବିଷ୍ୟବାଣୀ କଲେଣି ଏବଂ ଯୋଗ ଗୁରୁ ହେବା ଗୋଟିଏ କଥା ଏବଂ ରାଜନୀତିରେ ନେତୃତ୍ୱ ନେଇ ତିଷ୍ଠି ରହିବା ଅନ୍ୟ ଏକ କଥା ବୋଲି ଭାରତୀୟ ରାଜନୀତିକୁ ବିଶ୍ଳେଷଣ କରୁଥିବା ରାଜନୈତିକ ବିଶ୍ଳେଷକମାନେ ମତ ଦେଲେଣି।

ବାବା ରାମଦେବଙ୍କ ଜୀବନ ଠିକ୍ ଏକ ସିନେମା କାହାଣୀ ପରି। ବାବାଙ୍କ ଜନ୍ମ ହୋଇଥିଲା ହରିୟାଣାରେ। ପିଲା ବେଳର ନାଁ ଥିଲା ରାମକୃଷ୍ଣ ଯାଦବ। ବାବା ପିଲାବେଳେ ପକ୍ଷାଘାତ ରୋଗରେ ପିଡୀତ ହୋଇଥିଲେ। ନିଜେ ଯୋଗ, ପ୍ରାଣାୟମ କରି ସେଥିରୁ ସେ ଆରୋଗ୍ୟ ହେଲେ। ପରେ ହରିୟାଣାର ଏକ ଗୁରୁକୁଳରେ ବାବା ଯୋଗକୁ ମାଗଣାରେ ଶିଖାଇଲେ।

ବାବାଙ୍କର ଯୋଗ ସାମ୍ରାଜ୍ୟ ଏବେ ବୃଦ୍ଧି ପାଇଛି। ଅସଂଖ୍ୟ ଶିଷ୍ୟ-ଶିଷ୍ୟା ସୃଷ୍ଟି ହୋଇଛନ୍ତି। ଭାରତର ଅନେକ ମୁଖ୍ୟମନ୍ତ୍ରୀ ଏବଂ ମନ୍ତ୍ରୀ ବାବାଙ୍କର ଯୋଗକୁ ପ୍ରଶଂସା କରନ୍ତି। ଏହାର ଅଧିକ ପ୍ରସାର ପାଇଁ ସମସ୍ତ ସାହଯ୍ୟ ସମର୍ଥନ ଯୋଗାଇ ଦେବାକୁ ବାବାଙ୍କୁ ପ୍ରତିଶ୍ରୁତି ବି ଦିଅନ୍ତି।

ଦେଶ ବାହାରେ ମଧ୍ୟ ବାବାଙ୍କର ଶିଷ୍ୟ ଅନେକ। ଏଇ କିଛିଦିନ ତଳେ ଲଣ୍ଡନର ରାଣୀ ବାବା ରାମଦେବଙ୍କୁ ସାକ୍ଷାତ ଦେଇଥିଲେ। ମୁସଲମାନଙ୍କ ସମ୍ମିଳନୀରେ ଯୋଗ ଦେଇ ଇମାମ୍ ତଥା ଇସ୍‌ଲାମୀୟ ଧାର୍ମିକ ବ୍ୟକ୍ତିମାନଙ୍କୁ ମଧ୍ୟ ବାବା ଯୋଗ ଶିକ୍ଷା ଦିଅନ୍ତି।

ସଂକ୍ଷିପ୍ତରେ କହିଲେ, ଯୋଗ ଗୁରୁ ଭାବେ ବାବାଙ୍କର ଜନପ୍ରିୟତା ଅସୀମ। ଏଥିନେଇ ପ୍ରଶ୍ନ କିଛି ନାହିଁ। ପ୍ରଶ୍ନ କିନ୍ତୁ ହେଉଛି, ରାଜନୀତିରେ ବାବାଙ୍କର ସଫଳତା ନେଇ। ବର୍ତ୍ତମାନର ରାଜନୀତିରେ ବାବା କ'ଣ ପାରିବେ; ଏ ପ୍ରଶ୍ନ ଆସେ।

ବାବା ରାମଦେବଙ୍କ ପୂର୍ବରୁ ୧୯୫୦ ମସିହାରେ ସ୍ୱାମୀ କାପାର୍ତ୍ତୀ ମହାରାଜ

ଏକ ରାଜନୈତିକ ଦଳ ଗଠନ କରିଥିଲେ। ଦଳର ନାଁ ଥିଲା ରାମରାଜ୍ୟ ପରିଷଦ। ୧୯୫୨ ମସିହା ପ୍ରଥମ ଲୋକସଭା ନିର୍ବାଚନରେ ଏଇ ଦଳ ଭାଗ ନେଇଥିଲା ଏବଂ ମହାରାଜଙ୍କର ଅସଂଖ୍ୟ ଶିଷ୍ୟଙ୍କ ସମର୍ଥନରେ ରାମରାଜ୍ୟ ପରିଷଦକୁ ଲୋକସଭାରେ ତିନୋଟି ଆସନ ବି ମିଳିଥିଲା। ନିର୍ବାଚନର କିଛିଦିନ ଭିତରେ କାପାର୍ତ୍ତୀ ମହାରାଜଙ୍କର ରାଜନୈତିକ ଦଳ ଭାଙ୍ଗିଗଲା। ପରବର୍ତ୍ତୀ ସମୟରେ ସ୍ୱାମୀ ଧିରେନ୍ଦ୍ର ବ୍ରହ୍ମଚାରୀ ଏକ ସ୍ୱତନ୍ତ୍ର ରାଜନୈତିକ ଦଳ ଗଠନ କରିବାର ସମସ୍ତ ପ୍ରସ୍ତୁତି କରିସାରି ଶେଷରେ ଏଥିରୁ ବିରତ ହୋଇଗଲେ।

ସୁତରାଂ ଅତୀତରେ ଅନେକ ସ୍ୱାମୀ, ବାବା ରାଜନୈତିକ ଦଳ ଗଠନ କରି ଯେତେବେଳେ ଅସଫଳ ହୋଇଛନ୍ତି ବାବା ରାମଦେବ ଯେ ସଫଳ ହେବେ ଏଥିନେଇ ଆଶଙ୍କା ଆସିବା ସ୍ୱାଭାବିକ।

ରାଜନୈତିକ ବିଶ୍ଳେଷକମାନେ ବାବା ରାମଦେବଙ୍କ ଶକ୍ତି ଏବଂ ଦୁର୍ବଳତାକୁ ନେଇ ତର୍ଜମା କଲେଣି। ବାବାଙ୍କର ଶକ୍ତି ଅଛି; ଦୁର୍ବଳତା ବି ରହିଛି।

ରାଜନୀତିରେ ସଫଳତା ନିମନ୍ତେ ବାବାଙ୍କର ଶକ୍ତି ହେଲା, ବାବା ରାମଦେବଙ୍କର ଅସଂଖ୍ୟ ଅନୁଗାମୀ ଅଛନ୍ତି। କୋଟି କୋଟି ଟଙ୍କାର ଯୋଗ ସାମ୍ରାଜ୍ୟ ଅଛି। ବିଭିନ୍ନ ଟି.ଭି. ଚାନେଲ୍‌ମାନଙ୍କରେ ଯୋଗ ଶିକ୍ଷା ଦେଇ ବାବା ବେଶ୍ ଜନପ୍ରିୟ ଅଛନ୍ତି। ବାବା କୌଣସି ଜାତି ଏବଂ ଧର୍ମରେ ବାନ୍ଧି ହୋଇ ନାହାଁନ୍ତି। ଏକ ଦୁର୍ନୀତି ମୁକ୍ତ ସମାଜ ଗଠନ କଥା ବାବା କହନ୍ତି। ରାଜନୀତିକୁ ପରିଷ୍କାର କରିବା କଥା କହନ୍ତି ଏବଂ ସବୁଠାରୁ ବଡ଼ କଥା ହେଲା, ବାବାଙ୍କ କାନ୍ଧରେ କୌଣସି କଳଙ୍କିତ ରାଜନୈତିକ ବୋଝ ନାହିଁ। ବାବାଙ୍କ ଜୀବନ ଏକ ସଫା ସ୍ଲେଟ୍। ରାଜନୀତି ପରିଚାଳନା ପାଇଁ ସମସ୍ତ ଯୋଗ୍ୟତା ବି ବାବାଙ୍କର ରହିଛି।

ଯେଉଁମାନେ କାପାର୍ତ୍ତୀ ମହାରାଜଙ୍କ ସହ ବାବା ରାମଦେବଙ୍କ ତୁଳନା କରୁଛନ୍ତି, ସେମାନେ ଠିକ୍ ତୁଳନା କରୁ ନାହାଁନ୍ତି ବୋଲି ଏ ବିଶ୍ଳେଷକଙ୍କ ମତ। ୧୯୫୨ ମସିହାରେ କାପାର୍ତ୍ତୀ ମହାରାଜ ଭାରତର ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀଙ୍କ ବିରୁଦ୍ଧରେ ନିର୍ବାଚନ ଲଢ଼ିଥିଲେ। ସେତେବେଳର ସମାଜ ଭିନ୍ନ ଥିଲା। ସ୍ୱାଧୀନତା ଆଣିଥିବା ସଂଗ୍ରାମୀଙ୍କ ପ୍ରତି ସାଧାରଣ ଲୋକଙ୍କର ଆକର୍ଷଣ ଥିଲା ଏବଂ ଏକ ସମୃଦ୍ଧ ଭାରତ ଖୁବ୍ ଶୀଘ୍ର ଗଠିତ ହେବ ବୋଲି ଲୋକଙ୍କର ଆଶା ଥିଲା।

ସ୍ୱାଧୀନତାର ୬୬ ବର୍ଷ ପରେ ସେ ସ୍ୱପ୍ନ ଆଜି ଭାଙ୍ଗି ଯାଇଛି। ଭ୍ରଷ୍ଟାଚାରର ଦୁର୍ନୀତି ଭାରତୀୟ ଶାସନକୁ କାବୁ କରି ରଖିଛି। ଏକ ପରିଚ୍ଛନ୍ନ ରାଜନୀତି ପାଇଁ ବାବା ରାମଦେବଙ୍କ ଉଦ୍ୟମ ଯେ ବାବାଙ୍କ ରାଜନୀତିର ଏକ ବଡ଼ ଶକ୍ତି, ଏଥିରେ କିଛି ଦ୍ୱିରକ୍ତି ନାହିଁ।

ଦୁର୍ବଳତା ବି ଅଛି ବାବାଙ୍କର। ଭାରତ ସ୍ୱାଭିମାନ ଦଳର ସେମିତି କିଛି ସ୍ପଷ୍ଟ ରାଜନୈତିକ ଦର୍ଶନ ନାହିଁ କିମ୍ବା ରାଜନୈତିକ ଏଜେଣ୍ଡା ନାହିଁ। ଦଳକୁ ସୁଦୃଢ଼ ରଖିବାକୁ ଜାତି, ଧର୍ମ, ଅଞ୍ଚଳ ପରି ସେମିତି କିଛି ଆବେଗିକ ପ୍ରସଙ୍ଗ ନାହିଁ। କେବଳ ଏକ ଭ୍ରଷ୍ଟାଚାର ମୁକ୍ତ ସମାଜ ନିର୍ମାଣ ଏବଂ ବିଦେଶରେ ଜମାଥିବା କଳାଟଙ୍କା ଫେରସ୍ତ ସ୍ଲୋଗାନ୍‌ରେ ଯେ ଭାରତୀୟ ଭୋଟର ପ୍ରଭାବିତ ହୋଇଯିବେ ଏହା ଅବିଶ୍ୱାସ ଲାଗେ।

ଯାହା ଜଣାଯାଏ ବାବା ରାମଦେବଙ୍କ ଜନପ୍ରିୟତା ବେଶି ଉତ୍ତର ଭାରତରେ ରହିଛି। ଦକ୍ଷିଣ ଭାରତରେ ବାବାଙ୍କର ଜନପ୍ରିୟତା କମ୍। କାରଣ ଦକ୍ଷିଣ ଭାରତରେ ବାବାଙ୍କର ଅନେକ ପ୍ରତିଯୋଗୀ ଗୁରୁ ଅଛନ୍ତି ଏବଂ ରାମଦେବଙ୍କୁ ସମର୍ଥନ କରୁଥିବା ମୁଖ୍ୟମନ୍ତ୍ରୀ, ମନ୍ତ୍ରୀଙ୍କ ପରି କିଛି ଭି.ଭି.ଆଇ.ପି. ବାବାଙ୍କ ସହ ଗୋଟିଏ ମଞ୍ଚରେ ବସି ବାବାଙ୍କ ରାଜନୈତିକ କାର୍ଯ୍ୟକ୍ରମକୁ ସମର୍ଥନ ଦେବା କଥା କାହିଁକି ଏ ପର୍ଯ୍ୟନ୍ତ ଦେଖା ଯାଇନାହିଁ। ଅବଶ୍ୟ ଜଣେ ଯୋଗଗୁରୁ ସହ ଏକାଠି ବସିବା ଏବଂ ଜଣେ ରାଜନେତା ସହ ମଞ୍ଚାସୀନ ହେବା ଏକା କଥା ନୁହେଁ।

ରାମଦେବଙ୍କ ପଛରେ କୌଣସି ରାଜନୈତିକ ଆବର୍ଜନା ନଥିଲେ ବି ବାବାଙ୍କ ବ୍ୟବସାୟ ନେଇ କିଛି ଅପବାଦ ରହିଛି। ୨୦୦୬ ମସିହାରେ ସି.ପି.ଏମ୍. ନେତ୍ରୀ ବ୍ରିନ୍ଦା କରାତେ ଅଭିଯୋଗ ଆଣିଥିଲେ ଯେ, ବାବା ରାମଦେବଙ୍କ ଦିବ୍ୟ ଗୋଷ୍ଠୀ ମନ୍ଦିର ଟ୍ରଷ୍ଟ ଫାର୍ମାସୀରେ ଯେଉଁ ଆୟୁର୍ବେଦୀୟ ଔଷଧ ତିଆରି ହୁଏ ଏଥିରେ ପଶୁ ହାଡ଼ ମିଶାଯାଏ। ଏ ଅଭିଯୋଗ ଅସତ୍ୟ ପ୍ରମାଣିତ ହୋଇଥିଲେ ବି ଦାଗ ଚିହ୍ନ ରହିଛି।

ଏ ହେଉଛି ବାବା ରାମଦେବଙ୍କର ରାଜନୈତିକ ଜୀବନ ପାଇଁ ଥିବା କିଛି ଯୋଗ ଏବଂ ବିଯୋଗ ବିନ୍ଦୁ। ଶକ୍ତି ଏବଂ ଦୁର୍ବଳତାର ହିସାବ।

ଏହା କିନ୍ତୁ ସତ ଯେ, ସାମ୍ପ୍ରତିକ ଭାରତୀୟ ନିର୍ବାଚନୀୟ ରାଜନୀତି ଏଠି କେବଳ ଅର୍ଥବଳ ଏବଂ ବାହୁବଳରେ ହିଁ ଚାଲେ। ଭେଳିକି ତଥା ମିଥ୍ୟା ପ୍ରତିଶ୍ରୁତିରେ ଏଠି ନିର୍ବାଚନ ଜିତାଯାଏ। ୨୦୧୪ ମସିହାରେ ହେବାକୁ ଥିବା ଲୋକସଭା ନିର୍ବାଚନରେ ପାଞ୍ଚଶହ ତେୟାଳିଶି ସ୍ଥାନରେ ପ୍ରତିଯୋଗିତା କରି ବାବାଙ୍କର ଭାରତ ସ୍ୱାଭିମାନ ଦଳ ଯେ ସଂଖ୍ୟା ଗରିଷ୍ଠତା ପାଇବ ଏବଂ ସରକାର ଗଠନ କରିବ ବାବାଙ୍କୁ ଭକ୍ତି କରୁଥିବା ଅନେକ ପ୍ରଶଂସକଙ୍କର ଏଥିନେଇ ସନ୍ଦେହ ରହିଛି। ସେ ପ୍ରଶଂସକଙ୍କ ଭିତରେ ଏ ଲେଖକ ବି ଅଛି।

ବାବା ନିଜର ଋଷି ପ୍ରତିମ ପ୍ରତିଷ୍ଠାକୁ ବର୍ତ୍ତମାନର ପଙ୍କିଳ ରାଜନୀତିରେ ବୋଧେ ବାଜି ଲଗାଇ ଦେଉଛନ୍ତି।



# ରଙ୍ଗ ମୋହ

ଦୀର୍ଘ ପ୍ରାୟ ଛଅଷଠି ବର୍ଷ ତଳୁଁ ଭାରତରେ ବ୍ରିଟିଶରାଜ୍‌ର ପତନ ଘଟିଥିଲେ ବି ଏ ଦେଶରୁ ରଙ୍ଗ ମୋହ ଯାଇନାହିଁ। ଏବେ ମଧ୍ୟ ଗୋରା ରଙ୍ଗ ପ୍ରତି ଆସକ୍ତି ଆମ ମନ ଆଉ ଦେହକୁ ଆଚ୍ଛନ୍ନ କରି ରଖିଛି। ଇଏ ଏକ ପ୍ରକାର ରୋଗ ହୋଇ ଯାଇଛି। କମ୍ପ୍ଲେକ୍ସନ୍ କମ୍ପ୍ଲେକ୍ସ୍।

ଜଣେ ବନ୍ଧୁ ଏବେ କହୁଥିଲେ - ତାଙ୍କ ଝିଅ ବାହା ହୋଇ ପାରୁନି। ତାଙ୍କ ଝିଅର ଶିକ୍ଷାଗତ ଯୋଗ୍ୟତା ଅଛି। ଗୁଣ ଭଲ। ଦେଖିବାକୁ ସେତେ ଖରାପ ନୁହେଁ। କିନ୍ତୁ ଦେହର ରଙ୍ଗ ଟିକିଏ ମଳିନ- ଗୋରା ନୁହେଁ।

କେବଳ ବନ୍ଧୁଙ୍କ ଝିଅ କାହିଁକି; ଏ ଦେଶର ଲକ୍ଷ ଲକ୍ଷ ଝିଅ ଯେଉଁମାନେ ଗୋରୀ ନୁହଁନ୍ତି, ସେମାନଙ୍କର ଏଇ ଅବସ୍ଥା। ଉଚ୍ଚ ଶିକ୍ଷା ଏବଂ ଉତ୍ତମ ଗୁଣର ଯେପରି ବିବାହ ବଜାରରେ କିଛି ମାନେ ନଥାଏ। ଗୋରାପଣ ପ୍ରତି ଆସକ୍ତି ବର୍ତ୍ତମାନ କେବଳ ଏକ ଆବିଷ୍ଟ ଆବେଗ ନୁହଁ, କେମିତି ଏକ ଅନ୍ଧବିଶ୍ୱାସର ରୂପ ନେଇ ଗଲାଣି।

ରଙ୍ଗ ମୋହ ଏବର କଥା ବି ନୁହେଁ। ବହୁ ପୁରୁଣା ଯୁଗରୁ ଏ ମୋହ ରହିଛି। ପୁରାଣରେ ସବୁ ନାୟିକା ଗୋରୀ। ଏମାନଙ୍କ ଚେହେରା ସଫା।

ମୋଗଲ ରାଜୁତିରେ ଦେହର ରଙ୍ଗକୁ ନେଇ ସାମାଜିକ ପୃଥିକରଣ ହେଉଥିଲା। ଯେଉଁମାନେ ଶାସନ କରନ୍ତି ସମସ୍ତେ ପ୍ରାୟ ଗୋରା ଥିଲେ। ସବୁ ଶାସିତ ଏବଂ ପ୍ରଜା ଯେ କଳା ହେବେ ଏ ଥିଲା ମୋଗଲ ସାମ୍ରାଜ୍ୟର ବଦ୍ଧମୂଳ ଧାରଣା। କଳା ଲୋକର ଅର୍ଥ ଥିଲା ଯେଉଁମାନେ ଦୈହିକ ପରିଶ୍ରମ କରନ୍ତି। ଖରାରେ କାମ କରନ୍ତି। ସେମାନେ ସମ୍ଭ୍ରାନ୍ତ ହୋଇ ନ ପାରନ୍ତି।

ଏଇ ଧାରଣା ବର୍ଷ ବର୍ଷ ଧରି ଗଢ଼ି ଆସୁଛି। ଏଇ ଧାରଣା ବି ଏକ ବାଦରେ ପରିଣତ ହୋଇ ଗଲାଣି - ରଙ୍ଗବାଦ।

ରଙ୍ଗ ବାଦ ବା କଲରିଜିମ୍ କିନ୍ତୁ ବର୍ଣ୍ଣ ବୈଷମ୍ୟ ବାଦ ନୁହେଁ। ବର୍ଣ୍ଣ ବୈଷମ୍ୟ ବାଦରେ କଳା ଗୋରା ଭେଦଭାବ ଥାଏ। ଏହା ଗୋଟିଏ ଜାତି, ସଭ୍ୟତା ଏବଂ ଉତ୍ତରାଧିକାରକୁ ଘୃଣା କରିଥାଏ। ରଙ୍ଗ ବାଦ କିନ୍ତୁ ନିଜ ସମାଜ ଏବଂ ନିଜ ପରିବାର ଭିତରେ ବି ରହିଥାଏ। ଗୋରା ନୁହେଁ ବୋଲି ତିରସ୍କାର ସହିବାକୁ ହୁଏ।

କୁହାଯାଏ, ଗୋରା ରଙ୍ଗ ସମ୍ପ୍ରତି ସଫଳତାର ଏକ ମାପକାଠି। ବିବାହରୁ ଚାକିରୀ ପର୍ଯ୍ୟନ୍ତ ସବୁ ସାକ୍ଷାତକାରରେ ଦେହର ରଙ୍ଗ କୁଆଡ଼େ ଭଲ ଧାରଣା ସୃଷ୍ଟି କରେ। ସଫଳତାର ହାର ବେଶି ଥାଏ।

ଦେହର ରଙ୍ଗକୁ ସଫା ରଖିବାକୁ ଏବେ ସମସ୍ତଙ୍କର ପ୍ରଥମ ଚିନ୍ତା। ଏ ଚିନ୍ତା କେବଳ ଯୁବକ ଯୁବତୀଙ୍କ ପାଖରେ ଅଟକି ଯାଇନି। ସମାଜର ସବୁ ସ୍ୱଚ୍ଛଳ ବର୍ଗର ଲୋକେ ଦେହର ରଙ୍ଗକୁ ଉଜ୍ଜ୍ୱଳ ରଖିବାକୁ ଚେଷ୍ଟାରେ ଅଛନ୍ତି।

ଯେତେବେଳେ କୌଣସି ଜିନିଷ ପ୍ରତି ଆକର୍ଷଣ ବଢ଼ିଯାଏ ତଥା ଏହା ସାଧାରଣ ଲୋକଙ୍କ ପସନ୍ଦରେ ପ୍ରାଧାନ୍ୟ ନିଏ, ସେତେବେଳେ ଏହାକୁ ନେଇ ବ୍ୟବସାୟ ହୁଏ। ବଜାର ଅର୍ଥନୀତିରେ ଗୋରା ରଙ୍ଗକୁ ନେଇ ମାର୍କେଟ ତିଆରି କରିବା ତେଣୁ ଏକ ସ୍ୱଭାବିକ ଘଟଣା।

ଭାରତରେ ଦେହ ରଙ୍ଗକୁ ଗୋରା ରଖିବାକୁ ବର୍ତ୍ତମାନ ଏକ ବଡ଼ ମାର୍କେଟ୍ ବି ତିଆରି ହୋଇ ସାରିଛି। ଏହିସବୁ ମାର୍କେଟ୍‌ରେ କିଛି ଦିନ ବା କିଛି ସପ୍ତାହ ଭିତରେ ଜଣକୁ ଗୋରା ହୋଇଯିବାକୁ ପ୍ରତିଶ୍ରୁତି ଦିଆଯାଇଥାଏ ଏବଂ ଏଥିପାଇଁ ଫେୟାରନେସ୍ କ୍ରିମ୍ ପ୍ରସ୍ତୁତ ହୋଇଥାଏ।

ଏକ ପ୍ରକାଶିତ ରିପୋର୍ଟ ଅନୁସାରେ, ଦେହର ରଙ୍ଗକୁ ଗୋରା କରିବାକୁ ଭାରତରେ ପ୍ରସ୍ତୁତ ହେଉଥିବା ଫେୟାର କ୍ରିମର ବ୍ୟବସାୟ ପ୍ରାୟ ଚଉଦ ଶହ କୋଟି ଟଙ୍କା। ପ୍ରତି ବର୍ଷ ଏହା ପ୍ରାୟ ୨୫ ପ୍ରତିଶତ ବୃଦ୍ଧି ପାଇବାର ସମ୍ଭାବନା ରହିଛି। ଗତ ୨୦୦୨ ଏବଂ ୦୩ ମସିହାରେ ଏହି ବ୍ୟବସାୟ ମାତ୍ର ପାଞ୍ଚ ଶହ କୋଟି ଟଙ୍କାରେ ସୀମିତ ଥିଲା। ବାର୍ଷିକ ବୃଦ୍ଧିର ପରିମାଣ ମାତ୍ର ପନ୍ଦର ପ୍ରତିଶତରେ ରହିଥିଲା।

କ୍ରିମ୍ ବ୍ୟବସାୟର ବିଜ୍ଞାପନ ବି ବହୁତ ବଡ଼। ଏଇ ବିଜ୍ଞାପନ ପାଇଁ କେବଳ ସଫା ଚେହେରା ବିଶିଷ୍ଟ ମଡ଼େଲ ଏବଂ ସେଲିବ୍ରିଟିମାନଙ୍କୁ ହିଁ ମନୋନୀତ କରାଯାଇଥାଏ।

ଚର୍ମ ଗୋରା ହେବା ପ୍ରକୃତରେ ଭାରତର ଏକ ବଡ଼ ପ୍ରସଙ୍ଗ। ଏହା ଯେତିକି ଅନ୍ଧବିଶ୍ୱାସ ଆଣେ ସେତିକି ରଙ୍ଗ ଭିତିକ ସାମାଜିକ ବିରୋଧତା ମଧ୍ୟ ଆଣେ।

ଗତ ୨୦୦୯ ଆଇପିଏଲ ମ୍ୟାଚ୍‌ରେ ନିଯୁକ୍ତ 'ଚିୟର ଗାର୍ଲସ୍'ଙ୍କ ଭିତରେ ଅନେକ କଳା ରଙ୍ଗର ଥିଲେ। ଏ ସବୁ ଦକ୍ଷିଣ ଆଫ୍ରିକା ଏବଂ ୱେଷ୍ଟ ଇଣ୍ଡିଜ୍‌ର ପ୍ରତିଷ୍ଠିତ ନୃତ୍ୟ ଶିଳ୍ପୀ ଥିଲେ। ଗୋରା ରଙ୍ଗ ଆକର୍ଷଣରେ ଆମେ ଏତେ ମୋହଗ୍ରସ୍ତ ଯେ, ଏଇ କଳା ଚିୟର ଗାର୍ଲସ୍‌ମାନଙ୍କୁ କିଛି ଲୋକ 'ନିଗର' କହି ଚିଡ଼େଇଲେ। ନିଗର ଅର୍ଥ କଳା ନିଗ୍ରୋ। ଏହାକୁ ପାଶ୍ଚାତ୍ୟ ଦେଶମାନଙ୍କରେ ଅଶାଳୀନ ମନ୍ତବ୍ୟ ଭାବେ ଗଣାଯାଏ। ପରବର୍ତ୍ତୀ ଆଇପିଏଲ ମ୍ୟାଚ୍‌ମାନଙ୍କରେ ଆଇପିଏଲର

ପରିଚାଳକମାନେ ଆଉ କଳା ଚିୟର ଗାର୍ଲସମାନଙ୍କୁ ଆଣୁନାହାଁନ୍ତି।

ଚର୍ମରେ 'ମେଲାନିନ୍' ଅଧିକ ଥିଲେ ଚର୍ମ କଳା ହୋଇଥାଏ। ମେଲାନିନ୍ କମ୍ ଥିଲେ ଦେହ ଗୋରା ହୋଇଥାଏ। ଶରୀରର ଏହା ଏକ ଜନ୍ମଦତ୍ତ ଅବସ୍ଥା ଏବଂ ଅସଲ କଥା ହେଲା ସୌନ୍ଦର୍ଯ୍ୟ ହେଉଛି ଚର୍ମର ଗଭୀରତା ଯେତିକି, ଠିକ୍ ସେତିକି।

କ୍ରିମ ଦେହରେ ବୋଳି ହେଲେ ଯେ ଦେହର ରଙ୍ଗ ସାରା ଦିନ ପାଇଁ ବଦଳିଯାଏ ଏହା ଏକ ଭ୍ରାନ୍ତ ଧାରଣା ବୋଲି ଅନେକ ବୈଜ୍ଞାନିକ ତେଣୁ ମତ ଦିଅନ୍ତି। ପ୍ରାୟ ସବୁ ଫେୟାର କ୍ରିମ୍‌ରେ ବ୍ଲିଚିଂ ଉପାଦାନ ରହୁଛି। ବ୍ଲିଚିଂକୁ ଦେହରେ ଘସିଲେ ଚର୍ମ ବିକୃତ ହୋଇପାରେ, ଏ ଆଶଙ୍କା ଏମାନେ ଦିଅନ୍ତି।

ଦେହର ରଙ୍ଗ ଯେ ବ୍ୟକ୍ତିଗତ ସଫଳତାକୁ ପ୍ରଭାବିତ କରେ ଏହାକୁ ସହଜରେ ବି ଗ୍ରହଣ କରାଯାଏନି। ମହାଭାରତ ଯୁଗରୁ ଦ୍ରୌପଦୀଙ୍କୁ ଏଥିପାଇଁ ଉଦାହରଣ ଦିଆଯାଏ। ତତ୍‌କାଳୀନ ସମୟର ଦ୍ରୌପଦୀ ସବୁଠାରୁ ସୁନ୍ଦରୀ ଥିଲେ। ତାଙ୍କ ସୌନ୍ଦର୍ଯ୍ୟ ପାଇଁ ମହାଭାରତ ଯୁଦ୍ଧ ହୋଇଥିଲା ଏବଂ ଯୁଦ୍ଧ ସମୟରେ ବି ଦ୍ରୌପଦୀଙ୍କ ପରାମର୍ଶ ଏବଂ ଉପଦେଶକୁ ପାଣ୍ଡବମାନେ ବିଚାରକୁ ନେଉଥିଲେ। ଯୁଦ୍ଧ ଉପଦେଷ୍ଟା କମିଟିର ଦ୍ରୌପଦୀ ବି ଥିଲେ ଜଣେ ସଭ୍ୟ।

ଦ୍ରୌପଦୀ କିନ୍ତୁ ଗୋରୀ ନଥିଲେ। ତାଙ୍କର ଦେହର ରଙ୍ଗ ଥିଲା କୃଷ୍ଣବର୍ଣ୍ଣ। ସେଇଥିପାଇଁ ତାଙ୍କୁ 'କୃଷ୍ଣା' ବୋଲି ଡ଼କାଯାଏ।

ସମ୍ପ୍ରତି ବଲିଉଡ୍ ସିନେମା ଜଗତରେ ଭଲ ଅଭିନେତା ଏବଂ ଅଭିନେତ୍ରୀ ହେବାକୁ ହେଲେ କେବଳ ସୁନ୍ଦର ଚେହେରା, ଚକ୍‌ଲେଟ୍ ରଙ୍ଗ ଏବଂ ସିକ୍ସ ପ୍ୟାକ୍ ରଖିଥିବା ଦେହକୁ ପ୍ରଥମ ପସନ୍ଦ ବୋଲି ଆଉ ଗଣାଯାଉ ନାହିଁ। ଭଲ ଅଭିନୟ କରିପାରୁଥିବା ନାୟିକାଙ୍କୁ ଉଭୟ ନିର୍ଦ୍ଦେଶକ ଏବଂ ଦର୍ଶକ ପ୍ରଶଂସା କରୁଛନ୍ତି। ଅମଲ୍ ପାଲେକର, ସାଧୁ ମେହେର୍ ଦିନେ ବଲିଉଡ଼ ଜଗତର ପୁରସ୍କାର ପ୍ରାପ୍ତ କଳାକାର ଥିଲେ। ଦେହର ରଙ୍ଗ ଗୋରା ନଥିବା 'ବିପାସା ବସୁ' ଏବେ ବ୍ଲାକ୍ ବିଉଟି ଭାବେ ଭାରତରେ ପରିଚିତ।

ସୁତରାଂ ଗୋରା ରଙ୍ଗ ପ୍ରତି ଅହେତୁକ ମୋହକୁ ମାନସିକ ସ୍ତରରେ ନଷ୍ଟ କରିଦେବା ଏବେ ଉଚିତ। କାରଣ ଆଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ହିଁ ମିଣିଷର ବ୍ୟକ୍ତିତ୍ୱ ବଢ଼ାଏ। ଏହା ଚିର ସ୍ଥାୟୀ। କୃଷ୍ଣା ହେଲେ ବି ଦୌପଦୀ ସେଇଥିପାଇଁ ପୂଜ୍ୟା।



# ଜାତି ଓ ଜହର ଏକା

ପ୍ରତିଦିନ ଖବର କାଗଜମାନଙ୍କରେ ଦଳିତ ନିର୍ଯ୍ୟାତନା କଥା ନିଶ୍ଚୟ ହିଁ ଥିବ। କେଉଁଠି ହରିଜନମାନଙ୍କୁ ମନ୍ଦିର ପ୍ରବେଶ ମନା ହେଲାଣି ତ କେଉଁଠି ସରକାରୀ ନଳ କୂଅରୁ ଦଳିତମାନଙ୍କୁ ପାଣି ନେବାକୁ ଗାଁ ସବର୍ଣ୍ଣମାନେ ଆକଟ କଲେଣି। ଖବର ବି ଏମିତି ଆସୁଛି, ହରିଜନ ଝିଅଟି ସାଇକେଲ ଚଢ଼ି ଗାଁ ଦାଣ୍ଡରେ ଗଲେ ପିଣ୍ଡା ଉପରେ ବସିଥିବା ସବର୍ଣ୍ଣମାନେ ସହ୍ୟ କରି ପାରୁ ନାହାଁନ୍ତି। ସାଇକେଲ ଗଡ଼େଇ ନେବାକୁ ବାଧ କରୁଛନ୍ତି। ଏମିତି ଘଟଣା ଭୁବନେଶ୍ୱର ଏକ ପାଖ ଗାଁରେ ଏଇ କିଛି ବର୍ଷ ତଳେ ଘଟିଥିଲା ଏବଂ ହରିଜନ ପିଲାଟିକୁ ସବର୍ଣ୍ଣ ପିଲାଙ୍କ ସହ ସ୍କୁଲ ଭିତରେ ନ ବସାଇ ବାହାରେ ଖରାରେ ବସେଇ ଶିକ୍ଷକ ପାଠ ପଢ଼ାଉଥିବା ଖବର ଦିନେ ବି ଏଠି ଆଲୋଡ଼ନ ସୃଷ୍ଟି କରିଥିଲା।

ଏମିତି ଖବରର ତାଲିକା କରି ବସିଲେ ନିଶ୍ଚୟ ଏହା ଦୀର୍ଘ ହେବ। ଅସ୍ପୃଶ୍ୟତା ନାହିଁ ବୋଲି ଯେତେ କହିଲେ ବି ତଥାପି ଏହା ଏବେ ରହିଛି। ଜାତିର ଏ ଜହର ଭାରତୀୟଙ୍କ ରକ୍ତ ଭିତରେ ରହିଛି ହଜାର ହଜାର ବର୍ଷ ଧରି। ଶିକ୍ଷା ଏବଂ ସଚେତନତା ବୃଦ୍ଧି ସତ୍ତ୍ୱେ ବି ଏହା କମୁନାହିଁ।

ଭାରତୀୟ ଗାଁ ମାନଙ୍କରେ ଜାତିର ଏ ଜହର ବେଶି। ହରିଜନମାନଙ୍କ ମନ୍ଦିର ପ୍ରବେଶକୁ ବେଶି ବିରୋଧ କରନ୍ତି ମନ୍ଦିରର ପୂଜାରୀ, ପଣ୍ଡା ଏବଂ ମନ୍ଦିର ପରିଚାଳନାର ପୃଷ୍ଠ ପୋଷକତା କରୁଥିବା କିଛି ସ୍ୱାର୍ଥନ୍ୱେଷୀ ଗୋଷ୍ଠୀ। କିଛି ସବର୍ଣ୍ଣ ବିଦ୍ୱାନ ବି ପ୍ରକାରନ୍ତରେ ଜାତି ପ୍ରଥାକୁ ସମର୍ଥନ କରନ୍ତି। କହନ୍ତି - ଜାତି ପରିଚୟ ଏକ ପ୍ରଥା ନୁହେଁ। ଏହା ଏକ ଭାରତୀୟ ପରମ୍ପରା। ଏହା ଏକ ସଂସ୍କୃତି। ସଂସ୍କୃତିର ସମ୍ମାନ ଖରାପ କଥା ନୁହେଁ ଏବଂ ଜାତି ପ୍ରଥା ଯେତେବେଳେ ଜାତିବାଦ ହୋଇଯାଏ, ଏହାର କୁ ପରିଣତି ଥାଏ। ତେବେ ଜାତି ଯେଉଁଠି ହୀନ ମନ୍ୟତା ବଢ଼ାଏ, ଏହାକୁ କିପରି ସଂସ୍କୃତିର ଆଖ୍ୟା ଦିଆଯାଉଛି, ଏହା ହିଁ ପ୍ରଶ୍ନବାଚୀ।

ଏଇ କିଛିଦିନ ଧରି ଉତ୍ତର ଭାରତର ବିଭିନ୍ନ ସ୍ଥାନରେ ଥିବା ଖାପ ପଞ୍ଚାୟତ ନେଇ ଅନେକ ସମ୍ବାଦ ପ୍ରକାଶ ପାଉଛି। ଅନ୍ୟ ଜାତିରେ ବିବାହ ବା ସମଗୋତ୍ରରେ ବିବାହକୁ ଏଇ ପଞ୍ଚାୟତ ବିରୋଧ କରୁଛି। ଏପରିକି ଏପରି ବିବାହକୁ ପ୍ରତ୍ୟାଖ୍ୟାନ କରି ଏ ପଞ୍ଚାୟତ ବିବାହିତ ଦମ୍ପତିଙ୍କୁ ହତ୍ୟା କରିବାକୁ ନିର୍ଦ୍ଦେଶ ଦେଇଛନ୍ତି। ଏହାର ନାଁ

ଦିଆଯାଇଛି ସମ୍ମାନ ପାଇଁ ହତ୍ୟା - ଅନରକିଲିଙ୍ଗ୍।

ଖାପ୍ ପଞ୍ଚାୟତ ଉତ୍ତର ଭାରତର ଏକ ଜାତି ଭିତ୍ତିକ ସଙ୍ଗଠନ। ଉଚ୍ଚ ସବର୍ଣ୍ଣ ଜାତିର ଏ ଗୋଷ୍ଠୀ। ଏହା ବେଶ୍ ପ୍ରଭାବଶାଳୀ। ରାଜନେତାଙ୍କ ପାଇଁ ଭଲ ଭୋଟ ବ୍ୟାଙ୍କ। ଖାପ୍‌ର ନିର୍ଦ୍ଦେଶରେ ସ୍ୱଇଚ୍ଛାରେ ବିବାହ କରିଥିବା ଅନେକ ଦମ୍ପତିଙ୍କ ପ୍ରାଣ ଗଲେ ବି ଭାରତର ସଚେତନ ନାଗରିକ ସମାଜ ଜାତି ଭିତ୍ତିକ ଏ ଅପରିଣାମଦର୍ଶୀ ଗୋଷ୍ଠୀକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିପାରୁନି। ଭାରତୀୟ ହିନ୍ଦୁ ବିବାହ କୋର୍ଟରେ ସମଗୋତ୍ରୀ ବିବାହକୁ ନିଷେଧ କରିବା କଥା ଖାପ ପଞ୍ଚାୟତ ଯେଉଁ ଦାବି କରେ, କିଛି ରାଜନେତା ଏହାକୁ ସମର୍ଥନ ବି କରନ୍ତି।

ଏଇ ସମର୍ଥକଙ୍କ ଭିତରେ କଂଗ୍ରେସ ସାଂସଦ ନବୀନ ଜିନ୍ଦଲ ଅଛନ୍ତି। ଭିନ୍ନ ଜାତି ଏବଂ ଏକା ଗୋତ୍ରକୁ ନେଇ ବିବାହକୁ ସେ ସଂସଦରେ ଉଠାଇବେ ବୋଲି, ଖାପ୍‌ର ମହାସମ୍ମିଳନୀରେ ଯୋଗଦେଇ ଜିନ୍ଦଲ କୁଆଡ଼େ ପ୍ରତିଶ୍ରୁତି ଦେଇଥିବା କଥା ଗଣମାଧ୍ୟମରେ ଆସିଛି। ଆର୍ଯ୍ୟ ସମାଜ ବି କୁଆଡ଼େ ସମଗୋତ୍ର ବିବାହକୁ ପସନ୍ଦ କରୁଛି। ପ୍ରଶ୍ନ ହେଉଛି, ନବୀନ ଜିନ୍ଦଲ ନିଜର ଭୋଟ ରାଜନୀତି ପାଇଁ ହୁଏତ ଖାପ୍ ପଞ୍ଚାୟତର କୁସଂସ୍କାରକୁ ପସନ୍ଦ କରି ପାରନ୍ତି, କିନ୍ତୁ ଆର୍ଯ୍ୟ ସମାଜ ସମର୍ଥନ କରିବାର କାରଣ କ'ଣ ?

ଏହା ସତ ଯେ, ଜାତି ପ୍ରଥାକୁ ନେଇ ଆମେ ଯେତିକି ଗମ୍ଭୀର ହେବା କଥା ହେଉନାହୁଁ। ଦଳିତଙ୍କ ପ୍ରଭୁ ଏବଂ 'ମେସିହା' କହୁଥିବା କିଛି ରାଜନେତାଙ୍କ ନିଷ୍ଠାରେ ବି ସନ୍ଦେହ ଆସିଲାଣି। ଜାତିହୀନ ସମାଜ କଥା କେବଳ କଥାରେ କହୁଥିଲେ ବି ଜାତିକୁ ନେଇ ଗୋଷ୍ଠୀ କରିବାରେ ସବୁ ରାଜନେତା ଏବେ ବ୍ୟସ୍ତ।

ଏଇ ଯେମିତି ଏବେ ଜାତି ଭିତିକ ଜନଗଣନା କଥା ଉଠିଛି। ଚଳିତ ଜନଗଣନାରେ ଜାତି ଗଣନା ହୋଇଛି।

ଜାତି ଗଣନାର ଫଳ ପ୍ରକାଶ ପାଇଲେ ଜାତି ପ୍ରସଙ୍ଗ ପୁଣି ଉଠିବ। ଜାତିକୁ ନେଇ ପରିଚୟର ପୁଣି ସ୍ୱୀକୃତି ମିଳିବ। ସମାଜରେ ଜାତି ଭିତ୍ତିକ ବିଦ୍ୱେଷ ସୃଷ୍ଟି ହେବ। ବିଡ଼ମ୍ବନା ଯେ ଭାରତରେ ଜାତି ନିର୍ଯ୍ୟାତନାକୁ ବିଚ୍ଛିନ୍ନ କରି ଦଳ ଗଠନ କରିଥିବା ରାଜନୈତିକ ଦଳମାନେ ଜାତିକୁ ନେଇ ମୁଣ୍ଡ ଗଣନା କରିବାକୁ ଚାହାଁନ୍ତି। ଜାତିର ଏ ଜହର ପୁଣି ଭାରତ ସାରା ଖେଳିଯିବ। ଏଇ କିଛିଦିନ ତଳେ କନକ ଟିଭିରୁ ଜାତି ଗଣନାକୁ ନେଇ ମୁଖ୍ୟ ନିଉଜ୍ ହାଓ୍ୱାର ଚର୍ଚ୍ଚା କାର୍ଯ୍ୟକ୍ରମରେ ଏ ଲେଖକ ଭାଗ ନେଇ ଜାତି ପ୍ରଶ୍ନରୁ ଦୂରେଇ ରହିବା ଏବେ ଠିକ୍ ହେବ ବୋଲି କହିଥିଲା।

ଭାରତର ଜନକଲ୍ୟାଣ ରାଷ୍ଟ୍ର ଦଳିତଙ୍କ ସୁରକ୍ଷା ପାଇଁ ଅନେକ କିଛି ଆଇନ୍ କରିଛି। ଉଚ୍ଚ ଜାତି ସହ ନୀଚ ଜାତିର ଆବେଗିକ ତଥା ସାଂସ୍କୃତିକ ମିଶ୍ରଣ ହେବ, ଏ

ଆଇନମାନଙ୍କର ଲକ୍ଷ୍ୟ। ଏଇ ଯେମିତି ଦଳିତଙ୍କୁ ଉତ୍‌ଥାନ ପାଇଁ ଅନୁସୂଚିତ ଜାତି ଏବଂ ଜନଜାତି ଆୟୋଗ; ରୋଜଗାର ଏବଂ ଋଣ ପାଇଁ ରାଷ୍ଟ୍ରୀୟ ଜାତି ବିକାଶ ତଥା ବିତ୍ତ ନିଗମ; ଦଳିତଙ୍କ ଉପରେ ଅତ୍ୟାଚାର ରୋକିବାକୁ ଅନୁସୂଚିତ ଜାତି ତଥା ଜନଜାତି ଅତ୍ୟାଚାର ନିରାକରଣ ଅଧିନିୟମ; ଏବଂ ମେଧାବୀ ଦଳିତ ପିଲାଙ୍କ ଉଚ୍ଚ ଗବେଷଣା ପାଇଁ ରାଜୀବ ଗାନ୍ଧି ଫେଲୋସିପ୍ ସ୍କିମ୍। ଏପରି ଆନକ ନିୟମ, ନିଗମ, ଆୟୋଗ ତଥା ସ୍କିମ୍ ଏଠି ଥିଲେ ବି ଦଳିତ ନିର୍ଯ୍ୟାତନା କମୁନାହିଁ। ଏହା ହିଁ ସମ୍ପ୍ରତି ବୃହତ ବିଡ଼ମ୍ବନା। ଏହାର ଏକମାତ୍ର କାରଣ ହେଉଛି, ଜାତି ଭିତ୍ତିକ ପ୍ରଥାକୁ ବିରୁଦ୍ଧ କରିବାକୁ ଦଳିତଙ୍କ ଭିତରେ ଯେଉଁ ଶକ୍ତି ଆସିବାର କଥା ତାହା ଆସୁନାହିଁ। ଦୁର୍ବଳ ବ୍ୟକ୍ତି ହିଁ ବଞ୍ଚିବା ଦୌଡ଼ରେ ଶେଷରେ ହାରିଯାଇଥାଏ।

ଦଳିତଙ୍କ ଭିତରେ ଏବେ ସଚେତକ ଏବଂ ସଂସ୍କାରକ ଆବଶ୍ୟକତା ଆସିଛି। ଯେ ପର୍ଯ୍ୟନ୍ତ ଜଣେ ସଂସ୍କାରକ ନିଜ ଗୋଷ୍ଠୀ ଭିତରୁ ଆସି ସଂସ୍କାର କଥା ନ କହିଛି, ସେ ସଂସ୍କାରର କିଛି ମାନେ ନଥାଏ।

ସବୁ ଦଳିତ ପିଲା ତେଣୁ ପାଠ ପଢ଼ିବା ଦରକାର। ପବ୍ଲିକ୍ ସ୍କୁଲ ସଂସ୍କୃତି ସହ ବି ଅଭ୍ୟସ୍ତ ହେବା ଉଚିତ। ଶିକ୍ଷା ହିଁ ସଶକ୍ତ କରାଏ। ଅଧିକାର ଜାହିର ପାଇଁ ବଳ ଦିଏ।

ଏବଂ ଗାଁ ଦାଣ୍ଡରେ ହରିଜନ ଝିଅଟିଏ ସାଇକେଲ ଚଢ଼ି ଗଲେ, ପିଣ୍ଡା ଉପରେ ବସିଥିବା ସବର୍ଣ୍ଣଟିଏର କିପରି ଅସମ୍ମାନ ହୋଇଯାଏ, ଏ ମାନସିକତାର ଶେଷ ହେବା ଉଚିତ।

ଜାତି ରୂପକ ଏଇ ଜହରକୁ ସାଙ୍ଗରେ ଧରି ଏ ସମାଜ ଆଉ କେତେ ଦିନ ଚାଲୁଥିବ ?



# ନିଶା

ପପ୍ ଗାୟକ ମାଇକେଲ ଜାକ୍‌ସନଙ୍କ ଅକାଳ ବିୟୋଗ ଏବେ ସାରା ପୃଥିବୀକୁ ସ୍ତବ୍ଧ କରି ଦେଇଛି। କୁହାଯାଏ, ଜାକ୍‌ସନ୍‌ଙ୍କ ଏ ଅପ୍ରତ୍ୟାଶିତ ମୃତ୍ୟୁ ପାଇଁ ତାଙ୍କ ନିଶା ସେବନ ହିଁ ଦାୟୀ। ଅବଶ୍ୟ ଏହାର ଏବେ ଅନୁସନ୍ଧାନ ଚାଲିଛି। କିନ୍ତୁ ପ୍ରଶ୍ନ ହୁଏ, ନିଶା ବିରୁଦ୍ଧରେ କହୁଥିବା ଏତେ ବଡ଼ ଆଇକନ୍ ଆଦର୍ଶମାନେ ଏମିତି ନିଶା ଖାଆନ୍ତି କାହିଁକି ?

ଏବେ ଜଣେ ବନ୍ଧୁ କହୁଥିଲେ, ତାଙ୍କ କଲେଜ ପଢୁଆ ପୁଅ ବି ନିଶା ଖାଉଛି। ସେ କଲେଜ ଯାଉନି। ଯିବାକୁ ଇଚ୍ଛା ବି କରୁନି। ସବୁବେଳେ ଅନ୍ୟମନସ୍କ ରହୁଛି। ପ୍ରତିଦିନ ଗାଧୋଇବାକୁ ସେ ଭୟ କରୁଛି ଏବଂ ଝାଡା ଗଲେ ସେ ଶୌଚ ହେଉନାହିଁ। ପୁଅ ପାଇଁ ତାଙ୍କର ଚିନ୍ତା ବଢ଼ିଯାଇଛି।

ହଁ ପାଠକ ବନ୍ଧୁ! ନିଶା ଖାଇବା ସମ୍ପ୍ରତି ଜଣେ ବା ଦୁଇ ଜଣଙ୍କର କାହାଣୀ ନୁହେଁ। ଭାରତର ପଚାଶ ହଜାର ପିଲା ପ୍ରତିଦିନ ଏବେ ନିଶା ଖାଉଛନ୍ତି ଏବଂ ସେଥିରୁ କୋଡିଏ ହଜାର ନିଶାସକ୍ତ ହୋଇ ପ୍ରତି ବର୍ଷ ଅକାଳରେ ମୃତ୍ୟୁ ବରଣ କରୁଛନ୍ତି। ଏ ହେଉଛି ବିଶ୍ୱ ସ୍ୱାସ୍ଥ୍ୟ ସଗଠନର ଏକ ସର୍ଭେ ରିପୋର୍ଟ।

ସତକଥା ହେଲା- ପିଲାଏ ଘରୁ ଯାଆନ୍ତି। କୁସଙ୍ଗରେ ପଡ଼ି ନିଶାର ଦମ୍‌ଟିଏ ନିଅନ୍ତି। ସେ ଗଞ୍ଜେଇ ହେଉ ବା ଚରସ୍। ଅନେକ ହେରୋଇନ୍ କିମ୍ବା କୋକେନ୍ ଖାଆନ୍ତି। ଅଧିକ ନିଶା ପାଇଁ କେତେକ ଇଞ୍ଜେକ୍‌ସନ ବି ନିଅନ୍ତି। ଶେଷରେ ସେମାନେ ନିଶାରେ ଅଭ୍ୟସ୍ତ ହୋଇ ଯାଆନ୍ତି। ଦିନେ ନିଶା ନ ମିଳିଲେ କଷ୍ଟ ହୁଏ। ସେ କଷ୍ଟ ଅସହ୍ୟ ହୋଇଥାଏ।

ନିଶା ସେବନକାରୀଙ୍କ ସଂଖ୍ୟା ସମ୍ପ୍ରତି ବଢୁଛି। ନିଶା ବେପାରୀଙ୍କ ସଂଖ୍ୟା ମଧ୍ୟ ସେଇ ହାରରେ ବୃଦ୍ଧି ପାଉଛି। ଏବେ ସବୁ ପ୍ରକାରର ନିଶା ବଜାରରେ ମିଳୁଛି।

ନିଶାର ଦାମ ବି କମ ନୁହେଁ। ଯାହା ଜଣାଯାଏ, ଶହେ ଗ୍ରାମ କୋକେନ୍‌ର ଦାମ୍ ନାଇଜେରିଆରେ ନବେ ହଜାର ଟଙ୍କା ହେଲାବେଳେ ଭାରତରେ ଏହାର ଦାମ ପ୍ରାୟ ବାରଲକ୍ଷ ଟଙ୍କାରୁ ବେଶି। କେଜିଏ ହେରୋଇନ୍‌ର ଦାମ ପାଖାପାଖି ଦୁଇ କୋଟି ଟଙ୍କା ହେଲାଣି।

ଦାମ ଯେତେହେଲେ ବି ଉଭୟ ଧନୀ ଏବଂ ଗରିବ ପିଲାଏ ଏଇ ନିଶା ଖାଉଛନ୍ତି। ସମ୍ଭ୍ରାନ୍ତ 'ବାର' ମାନଙ୍କରେ ନିଶାଖାଇ ମଉଜ କରିବା ଏକ ସାଧାରଣ ଘଟଣା ହୋଇଗଲାଣି। ନିଶା ଖାଇ ମସ୍ତ ହେଉଥିବା ଲୋକଙ୍କୁ 'ସୋସିଆଲାଇଟ' ବି କୁହାଯାଏ।

କେବଳ ପିଲାଏ କାହିଁକି; ନିଶା ସେବନ ନିମନ୍ତେ ଏବେ ଆଉ ନିର୍ଦ୍ଦିଷ୍ଟ ବୟସର ସୀମା ନାହିଁ। ପିଲା, ବୁଢ଼ା ସମସ୍ତେ ଏଥିରେ ସାମିଲ ଏବଂ ନିଶାରୁ ସୃଷ୍ଟି ହେଉଥିବା ହିଂସା କେବଳ ସହରୀ ବସ୍ତି ଅଞ୍ଚଳରେ ହେଉନାହିଁ। ଏହା ପଞ୍ଚତାରକା ହୋଟେଲରେ ବି ହେଉଛି। ଦିଲ୍ଲୀର ଏକ ଦାମିକା ରେଷ୍ଟୁରାଣ୍ଟରେ ମଡେଲ ଜେସିକା ଲାଲଙ୍କୁ ହତ୍ୟା କରିଥିବା ଯୁବକ ଜଣକ ଗୁଳି କଲାବେଳେ ନିଶା ଖାଇ ଚୂର୍ ହୋଇ ରହିଥିଲା ବୋଲି ଅଭିଯୋଗ ମଧ୍ୟ ଆସିଥିଲା।

ଯୁବକମାନେ ଯେଉଁ ନିଶା ଖାଉଛନ୍ତି ସେଥିରେ କୋକେନ, ଏକଷ୍ଟାସି, କାନାବିସ, ହେରୋଇନ୍ ଏବଂ ଏପରି ନାଁରେ ଅନେକ ଡ୍ରଗ୍ସ ରହିଛି।

ଡିଆଡିକ୍ସନ ବା ନିଶା ନିବାରଣ କେନ୍ଦ୍ରରେ କାମ କରୁଥିବା ଜଣେ ବିଶେଷଜ୍ଞ ଡାକ୍ତର ଏଇ କୋକେନ୍, ହେରୋଇନ୍, ଏକଷ୍ଟାସି, କାନାବିସ୍ ଏବଂ ଆହୁରି ଅନେକ ନିଶା ଡ୍ରଗ୍‌ର ପ୍ରସ୍ତୁତି, ପ୍ରଭାବ ତଥା ଏହାର ପରିଣତି ସମ୍ପର୍କରେ ଲେଖିଥିବା ଏକ ରିପୋର୍ଟ ସମ୍ପ୍ରତି ଏ ଲେଖକଙ୍କର ନଜରକୁ ଆସିଲା। ଏଇ ସବୁ ଡ୍ରଗ୍ସର ପ୍ରସ୍ତୁତି ପ୍ରଣାଳୀ ଭିନ୍ନ ହେଲେ ବି ପରିଣତି କିନ୍ତୁ ସବୁ ଏକା, ଯାହା ସେ ରିପୋର୍ଟ କହେ। ସେ ହେଉଛି ଅକାଳ ମୃତ୍ୟୁ।

ନିଶା ଡ୍ରଗ୍ସ ସମ୍ପର୍କରେ ରିପୋର୍ଟରେ ଯେଉଁ କଥା ଅଛି, ସେଥିରୁ କିଛି କଥା ଏଇଠି ଏ ଆଲୋଚନାକୁ ଅଣାଯାଇ ପାରେ। ପ୍ରଥମେ କୋକେନ୍‌ରୁ ଆରମ୍ଭ କରାଯାଉ।

**କୋକେନ୍ :** - ଏହା ଏକ ଧଳା ରଙ୍ଗର ପାଉଡ଼ର। ଦକ୍ଷିଣ ଆମେରିକାର ପାହାଡ଼ିଆ ଅଞ୍ଚଳରେ ଉଠୁଥିବା 'କୋକ୍' ଗଛରୁ ଏହା ଏକ ରସାୟନିକ ପ୍ରସ୍ତୁତି।

ନିଶା ହେବା ପାଇଁ କୋକେନ୍‌କୁ ନାକ ବାଟେ ଶୁଙ୍ଘାଯାଏ। ଏହାର ଇଞ୍ଜେକ୍‌ସନ୍ ବି ରହିଛି। କୋକେନ୍ ସେବନ ପରେ ଦେହରେ ହଠାତ୍ ଉତ୍ତେଜନା ଆସିଯାଏ। ଭୋକ, ଦୁଃଖ, ଯନ୍ତ୍ରଣା ନିମିଷକେ ଉଭେଇଯାଏ। ସ୍ୱର୍ଗ ସୁଖ ପାଇଲା ପରି ଲାଗେ।

ଏହା କିନ୍ତୁ ବାରମ୍ବାର ନେଲେ ନାକପୁଡ଼ା ନଷ୍ଟ ହୋଇଯାଏ। ନିଃଶ୍ୱାସ ନେବାରେ କଷ୍ଟ ଅନୁଭୂତ ହୁଏ। ଶେଷରେ ହୃଦଘାତ ହୋଇ ମୃତ୍ୟୁ ହୁଏ।

**ଏକଷ୍ଟାସି :** - ଏହା ଧଳା ଧଳା ଛୋଟ ଟାବଲେଟ୍। ଏହା ଖାଇବାର ମାତ୍ର

କିଛି ମିନିଟ୍ ପରେ ଦେହରେ ଏକ ଅହେତୁକ ଶିହରଣ ଖେଳିଯାଏ। ମନ ଖୁସି ଲାଗେ। ସବୁ ଲୋକଙ୍କ ସହ ବନ୍ଧୁତ୍ୱ ଜମାଇବାକୁ ଇଚ୍ଛାହୁଏ। ଅନେକ ଏକଷ୍ଟାସି ସେବନକାରୀ ଅନର୍ଗଳ ଗପନ୍ତି। ନିଶା କିନ୍ତୁ ଖସିଗଲେ ପାଟି ଶୁଖିଯାଏ। ଦେହର ରକ୍ତଚାପ ବଢ଼ିଯାଏ। ବେଳେ ବେଳେ ଝାଡ଼ା, ବାନ୍ତି ହୁଏ। ଏ ଅବସ୍ଥା ବହୁଦିନ ଲାଗି ରହିଲେ ଦେହ ଦୁର୍ବଳ ହୋଇଯାଏ। ଯକୃତ ଆଉ କାମ କରେନି। ମୃତ୍ୟୁକୁ ଖାଲି ଯାହା ଅପେକ୍ଷା କରିବାକୁ ହୁଏ।

**କାନାବିସ୍ :** - ଏହାର ଅନ୍ୟ ନାଁ 'ମାରାଜୁଆନା'। ଶୁଖିଲା ମାରାଜୁଆନା ପତ୍ର (ଗଞ୍ଜେଇ)ରୁ ଏହା ତିଆରି ହୁଏ। ସିଗାରେଟ ଭିତରେ ଭର୍ତ୍ତିକରି ଏହାକୁ ସେବନ କରାଯାଏ।

ଏହା ସେବନ କରିବାର ଅଳ୍ପ ସମୟ ପରେ ମନ ହାଲ୍‌କା ଲାଗେ। ଗପ କରିବାକୁ ଇଚ୍ଛା ହୁଏ। ଏଥିରେ ଅଭ୍ୟସ୍ତ ହୋଇଗଲେ ସ୍ମରଣ ଶକ୍ତି ନଷ୍ଟ ହୋଇଯାଏ। ପାଗଳାମି ଆସେ। କାନାବିସ୍ ସେବନକାରୀ ଦିନରେ ବି ସ୍ୱପ୍ନ ଦେଖେ। ଦେହ ଦୁର୍ବଳ ହୋଇ ଶେଷରେ ମୃତ୍ୟୁ ହୁଏ।

**ହେରୋଇନ୍ :** - ଏହା ଏକ ଧୂସରିଆ ରଙ୍ଗର ପାଉଡ଼ର। ଏହାକୁ ଧୂଆଁ ଭାବେ ବା ପାଣିରେ ମିଶାଇ ନିଆଯାଏ। ଇଞ୍ଜେକ୍‌ସନ ବି ଏହାର ରହିଛି।

ଏ ନିଶା ନେବାବେଳେ ଦେହ, ମନ ଭଲ ଲାଗେ। କିଛି ସମୟ ପରେ ଦେହରୁ ପ୍ରଚୁର ଝାଳ ବୁହେ। ଦେହ ଅବଶ ଲାଗେ। ଚେଷ୍ଟା କଲେ ବି ଏହାକୁ ସହଜରେ ଛାଡ଼ି ହୁଏନି। ନିଶା ଖାଇବା ଦିନଟିଏ ବନ୍ଦ ହେଲେ ଦେହରେ ଅସହ୍ୟ ଯନ୍ତ୍ରଣା ହୁଏ। ମୃତ୍ୟୁ ଅନିବାର୍ଯ୍ୟ ହୋଇଯାଏ।

ଏଇ ନିଶା ବ୍ୟତୀତ ଭାରତରେ ଆଉ ବହୁ ପ୍ରକାର ନିଶା ମିଳୁଛି। ଭାରତରେ ଏହା ତିଆରି ହେଉ ନଥିଲେ ବି ଆଫଗାନିସ୍ତାନ ଏବଂ ପାକିସ୍ତାନରୁ ଏହା ଭାରତକୁ ଆସୁଛି।

ଏ **ଶେଷ** କଥା : ପ୍ରଶ୍ନ ଆସିବଣି ଏ ଲେଖକ ନିଶା ସମ୍ପର୍କରେ ଏତେ କଥା କହୁଛି କାହିଁକି ? ଅସଲ କଥା ହେଲା, ନିଶାଗ୍ରସ୍ତ ପିଲାଟିର କାହାଣୀ କୌଣସି ଏକ ବ୍ୟକ୍ତିଗତ ଦୁଃଖ କାହାଣୀ ନୁହେଁ। ଏହା ଏକ ଜାତୀୟ ସମସ୍ୟା। ପରିବାର, ସମାଜ ଏବଂ ରାଷ୍ଟ୍ର ସମସ୍ତେ ଏଥିପାଇଁ ସତର୍କ ରହିବା ଜରୁରୀ।



# ବାଡ଼ି ପଡ଼ିଛି

ଆଜକୁ ପ୍ରାୟ ନବେ ବର୍ଷ ତଳେ ଦୈନିକ ସମାଜରେ ଏକ ସମ୍ବାଦ ପ୍ରକାଶ ପାଇଥିଲା। ସେଦିନ ଥିଲା ଜୁନ୍ ମାସ ଛବିଶ ତାରିଖ ଉଣେଇଶ କୋଡ଼ିଏ ମସିହା। ଏ ଲେଖକ ଆଜି ଏ ଆଲୋଚନାରେ ସେ ସମ୍ବାଦଟି ଉଲ୍ଲେଖ କରିବାକୁ ଚାହେଁ। କାରଣ ଏ ଆଲୋଚନାରେ ତା'ର ପ୍ରାସଙ୍ଗିକତା ରହିଛି। ସେ ସମ୍ବାଦଟିର ଶିରୋନାମା ଥିଲା – 'ଗୁଣ୍ଡିଚା ବାଡ଼ି'। ସମ୍ବାଦଟି ଠିକ୍ ଏମିତି – "କଲେରା ରୋଗକୁ ପୁରୀ ଜିଲ୍ଲାରେ ବାଡ଼ି ରୋଗ ବୋଲି କହନ୍ତି। ପୁରୀ ଗୁଣ୍ଡିଚା ଯାତ୍ରା ସମୟରେ ଏ ରୋଗ ବଡ଼ ପ୍ରବଳ ହୁଏ। ଆଗେ ଯାତ୍ରୀମାନେ ପାଦରେ ଚାଲି ଚାଲି ଆସିଲା ବେଳେ ଏଥିରେ ବିସ୍ତର ମରୁଥିଲେ। ରେଳ ହେବା ଦିନୁ ଏବଂ କ୍ରମେ ସ୍ୱାସ୍ଥ୍ୟ ରକ୍ଷାର ଭଲ ବନ୍ଦୋବସ୍ତ ହେବାରୁ ସେପରି ମରୁ ନାହାଁନ୍ତି। ମାତ୍ର ଏ ବର୍ଷ ଗୁଣ୍ଡିଚା ଯାତରେ ୧୪ ତାରିଖ ଠାରୁ ୨୨ ତାରିଖ ପର୍ଯ୍ୟନ୍ତ କଲେରା ହାସ୍‌ପାତାଳକୁ ନ' ଦିନ ମଧ୍ୟରେ ୩୦୭ ଜଣ ରୋଗୀ ବୁହାହୋଇ ଯାଇଥିଲେ। ସେଥିମଧ୍ୟରୁ ଏହି ସମୟ ମଧ୍ୟରେ ୪୪ ଜଣ ମାତ୍ର ଆରାମ ହୋଇ ଆସିଥିଲେ। ୧୩୩ ଜଣ ମରିଗଲେ। ଆଉ ମାନେ ଏବେ ସୁଦ୍ଧା ହାସ୍‌ପାତାଳାରେ ପଡ଼ିଛନ୍ତି। ଏହା ବାଦ୍ ଲଜିଂ ହାଉସ୍‌ରେ ଏବଂ ସାଧାରଣ ଲୋକଙ୍କ ଘରେ ଅନେକ ମରିଗଲେ। ଏପରି ଘଟଣା ହେବ ବୋଲି ସ୍ଥାନୀୟ ହାକିମମାନେ ବା ମ୍ୟୁନିସ୍‌ପାଲିଟି ପୂର୍ବରୁ ଆଶଙ୍କା କରି ନଥିଲେ। ଏଠା କଲେରା ହାସ୍‌ପାତାଳରେ ୪୦ ଜଣଙ୍କ ଲାଗି ଥାନ ଥାଏ। ଅବଶ୍ୟ ସଙ୍ଗେ ସଙ୍ଗେ ଚାଳିଆ ତିଆରି ହେଲା। ମାତ୍ର ରୋଗୀମାନେ ସେଠାରେ ଯେ ଅବସ୍ଥାରେ ଥିଲେ ତାହା ବଡ଼ ଶୋଚନୀୟ। ଡ଼ାକ୍ତରଙ୍କ ଅଭାବ,ଔଷଧର ଅଭାବ, ଘରର ଅଭାବ। ଏଥିରେ କେବଳ ଭାଗ୍ୟ ଅନୁସାରେ ଆରୋଗ୍ୟ ହେବା କଥା। ପୁରୀରୁ କଲେରା ସତ୍ୟବାଦୀ ପର୍ଯ୍ୟନ୍ତ ବ୍ୟାପିଥିଲା। ପୁରୀରେ ରେଳ ଟିକେଟ ନ ପାଇ ଅନେକ ସତ୍ୟବାଦୀ ଚାଲି ଚାଲି ଯାଇ ସେଠାରେ କଲେରା ବୀଜ ଛାଡ଼ି ଦେଲେ।" (ସୌଜନ୍ୟ ସମାଜ- ତା ୧୫.୯.୨୦୧୦)।

ହଁ ପାଠକ ବନ୍ଧୁ, ଏପରି ଏକ ସମ୍ବାଦ ଏବେ ପଢ଼ି ସାରିବା ପରେ ଆପଣଙ୍କର ନିଶ୍ଚୟ ହୃଦୟଙ୍ଗମ ହେବଣି, ୧୯୨୦ ମସିହା ଏବଂ ୨୦୧୦ ମସିହା ମଧ୍ୟରେ ରାଜ୍ୟରେ ସ୍ୱାସ୍ଥ୍ୟ କ୍ଷେତ୍ରରେ ସେମିତି କିଛି ପରିବର୍ତ୍ତନ ଆସିନି। ନବେ ବର୍ଷ ତଳେ ଅର୍ଥାତ୍ ସ୍ୱାଧୀନତା ପୂର୍ବରୁ ଏଠି ଯାହା ଥିଲା ଏବେ ଠିକ ସେଇଆ ହିଁ ଅଛି। ହଇଜା ଏଠି ଆସୁଛି। ବାଡ଼ି ପଡୁଛି। ପୋକମାଛି ପରି ଲୋକେ ମରୁଛନ୍ତି। ମଣିଷ ଜୀବନ ସମ୍ଭବତଃ କିପରି ମୂଲ୍ୟହୀନ ହୋଇଯାଇଛି। ସୃଷ୍ଟିର ଆରମ୍ଭରେ ଆଦିବାସୀ ଦଳିତମାନେ ଯେପରି ବଞ୍ଚିବା ପାଇଁ ସଂଘର୍ଷ

କରୁଥିଲେ ଏବଂ ପ୍ରତିକୂଳ ପ୍ରକୃତି ବିରୁଦ୍ଧରେ ଦୈନନ୍ଦିନ ଯେପରି ଲଢ଼େଇ କରୁଥିଲେ ଆଜି ବି ଠିକ୍ ସେପରି କରୁଛନ୍ତି। ଏଇ ଲଢ଼େଇକୁ ଅରିକ୍ଷିତକୁ ଦଇବ ସାହା ନାଁ ଦେଇ ଗଣମାଧ୍ୟମ ବି ଏହାକୁ ପ୍ରଚାର କରୁଛି।

ଏ ବର୍ଷ ସେପରି ବାଢ଼ି ପଡ଼ିଚି କୋରାପୁଟରେ। ରାୟଗଡ଼ା ସମେତ ଅଭିବକ୍ତ କୋରାପୁଟ ହଇଜା ଆତଙ୍କରେ ଭୀତତ୍ରସ୍ତ। ଏ ହଇଜା ଆଉ ସମ୍ପ୍ରତି କୋରାପୁଟରେ ଅଟକି ରହିନି। ଏହା ରାଜ୍ୟସାରା ବ୍ୟାପୁଛି। ଇଏ ଏବର ଖବର। ଚଳିତ ହଇଜାରେ ମୃତ୍ୟୁ ସଂଖ୍ୟା ଏବଂ ଆକ୍ରାନ୍ତଙ୍କ ସଂଖ୍ୟାରେ ଖବର ପରିବେଷଣରେ ଭିନ୍ନତା ଥିଲେ ବି ଏହା ସତ ଯେ ଅନେକ ଲୋକ ହଇଜା, ଝାଡ଼ା ବାନ୍ତିରେ ବର୍ତ୍ତମାନ ମରୁଛନ୍ତି। ଶିଶୁ, ଯୁବକ, ବୃଦ୍ଧ କେହି ବି ଏଥିରୁ ବାଦ୍ ଯାଉ ନାହାଁନ୍ତି। ଚିକିତ୍ସା ପାଇଁ ହଇଜା ପ୍ରଭାବିତ ଅଞ୍ଚଳରେ ଆବଶ୍ୟକୀୟ ଡ଼ାକ୍ତର ନାହାଁନ୍ତି। ଗମନା ଗମନର ସୁବିଧା ନାହିଁ। ଭଲ ପିଇବା ପାଣି ମିଳୁ ନାହିଁ। ସ୍ୱାଧୀନତାର ୬୩ ବର୍ଷ ପରେ ଇଏ ଓଡ଼ିଶାର ଚିତ୍ର। ଭାରତର ସାମାଜିକ ଭଙ୍ଗା ଚିତ୍ରର ଏହା ବି ଏକ ଅଂଶ। ସ୍ୱାଧୀନତା ଆନ୍ଦୋଳନ ବେଳେ ଗାନ୍ଧିଜୀଙ୍କ ସମେତ ସବୁ ସ୍ୱାଧୀନତା ସଂଗ୍ରାମୀର ସ୍ୱାଧୀନ ଭାରତର ଯେଉଁ ସ୍ୱପ୍ନ ଦେଖିଥିଲେ ସେ ସ୍ୱପ୍ନ ଆଜି ଭାଙ୍ଗିଛି। ଗଣତନ୍ତ୍ରବାଦୀମାନେ ଗଣତାନ୍ତ୍ରିକ ଶାସନରେ ଜନକଲ୍ୟାଣର ଯେଉଁ ପ୍ରତିଶ୍ରୁତି ଦେଉଥିଲେ ସେ ପ୍ରତିଶ୍ରୁତି ଆଜି ଅର୍ଥଶୂନ୍ୟ ହୋଇ ଯାଇଛି ଏବଂ ବିଡ଼ମ୍ବନା ହେଉଛି, ପୃଥିବୀର ଅନେକ ଦେଶରେ ଯେଉଁ ରୋଗ ଆଉ ଦେଖିବାକୁ ମିଳୁନାହିଁ, ସେପରି ଅନେକ ରୋଗ ଏ ଦେଶରେ ଜନ୍ମ ନେଇଛି। ମୃତ୍ୟୁର ବଜାର ଖୋଲୁଛି।

ଆଦିବାସୀ ଅଞ୍ଚଳରେ ହଇଜା ଏବଂ ଝାଡ଼ାବାନ୍ତିରେ କାହିଁକି ଲୋକେ ମରୁଛନ୍ତି ? ଏପରି ପ୍ରଶ୍ନ କଲେ ଏଠାରେ କିଛି ଶାସକ ବର୍ଗ ଏବଂ କିଛି ପଣ୍ଡିତ ପ୍ରଶାସକ ଉତ୍ତର ଦିଅନ୍ତି, ଏ ହେଉଛି ପୁରୁଣା ଅଭ୍ୟାସ ନ ଛାଡ଼ି ପାରିବାର ପ୍ରସଙ୍ଗ। ଆଦିବାସୀମାନେ ଝରଣା ଏବଂ ନାଳ ପାଣି ପିଇବାକୁ ପସନ୍ଦ କରନ୍ତି। ଆମ୍ବ, କୋଇଲି, ଜାଉ ଖାଇବାରେ ସେ ଆନନ୍ଦ ପାଆନ୍ତି। ସେମାନେ ଏ ଖାଦ୍ୟପେୟରେ ଅଭ୍ୟସ୍ତ। ଏ ଅଭ୍ୟାସ ଏକ ପରମ୍ପରାରେ ପରିଣତ ହୋଇସାରିଛି। ପୁରୁଣା ପାରମ୍ପରିକ ଅଭ୍ୟାସ ବାସ୍ତବରେ ଛାଡ଼ିବା କଷ୍ଟ। ଏ ପଣ୍ଡିତମାନେ ଏ କଥା ବି କହନ୍ତି, ନିଜର ସ୍ୱାସ୍ଥ୍ୟ ସୁରକ୍ଷା ନେଇ ଆଦିମ ଅଧିବାସୀମାନେ ଏ ଦେଶର ତଥାକଥିତ ସଭ୍ୟ ମଣିଷମାନଙ୍କ ପରି ସେତେ ସଚେତନ ନୁହଁନ୍ତି।

ଅବଶ୍ୟ ଏପରି ଉତ୍ତରରେ ସେପରି କିଛି ଦମ୍ଭ ଥିଲାପରି ଲାଗେ ନାହିଁ। ପ୍ରଶ୍ନ ଆସେ ଏ ଦେଶର ଆଦିବାସୀ ଅଞ୍ଚଳରେ ଶୁଦ୍ଧ ପିଇବା ପାଣି ମିଳୁଥିଲେ; ସୁଷମ ଖାଦ୍ୟ ମିଳୁଥିଲେ; ଗମନା ଗମନର ସୁବିଧା ଥିଲେ ଏବଂ ପହଞ୍ଚ ଦୂରତାରେ ସ୍ୱାସ୍ଥ୍ୟ ସେବା ଥିଲେ ଗରିବ ଆଦିବାସୀମାନେ ଜାଣିଜାଣି ଦୂଷିତ ପାଣି ପିଇ ଏବଂ ଅଖାଦ୍ୟ ଆମ୍ବ କୋଇଲିର ଜାଉ ଖାଇ ମରନ୍ତେ କାହିଁକି ? ହଇଜାର ଗୁରୁତ୍ୱ ଉପଲବ୍ଧ ନ କରି ଯେଉଁମାନେ ଅଖାଦ୍ୟ ଏବଂ କୁଅଭ୍ୟାସର କାରଣ ଖୋଜି ମହାମାରୀର ପ୍ରକୃତ କାରଣକୁ ଆଡ଼େଇ ଯାଉଛନ୍ତି ସେମାନେ

ନିଶ୍ଚୟ ତେଣୁ ଠିକ୍ କରୁ ନାହାଁନ୍ତି। ସେମାନଙ୍କ ସଫେଇ କେବଳ ଚିନ୍ତାଜନକ ନୁହେଁ, ଅପରାଧିୟ ବି।

ହଇଜା, ମହାମାରୀ ଏବଂ ଅନେକ ଅଜଣା ରୋଗର ଆତଙ୍କ ଏହା କେବଳ ଏବେ ଓଡ଼ିଶାର ଘଟଣା ନୁହେଁ। ପ୍ରତିବର୍ଷ ଭାରତ ବର୍ଷର ଅନେକ ରାଜ୍ୟରେ ଏପରି ରୋଗମାନ ଦେଖିବାକୁ ମିଳୁଛି। ଏ ସବୁ ରୋଗ ଏଠି ନିୟମିତ ଭାବେ ଆସୁଛି। ମୌସୁମୀ ବାୟୁ ପ୍ରବାହରେ ହୁଏତ ଏଠାରେ ଅନିୟମିତତା ଦେଖାଦେଇପାରେ, କିନ୍ତୁ ହଇଜା, ମହାମାରୀ ମଡକ ଆସିବାରେ  ଦେଶରେ କେବେ ଅନିୟମିତତା ଆସେନି। ତଥାପି ସରକାର ଏଠି ପ୍ରସ୍ତୁତ ନଥାନ୍ତି। ରୋଗ ହେଲେ ହିଁ ପ୍ରଭାବିତ ଅଞ୍ଚଳକୁ ଡ଼ାକ୍ତର ପଠାଯାଏ; ପିଇବା ପାଣିର ବନ୍ଦୋବସ୍ତ ହୁଏ; ସହରୀ ବାବୁ ନେତାମାନଙ୍କର ସେଠି ଭିଡ଼ ଜମେ।

ଗତ ଦୁଇବର୍ଷ ଧରି ଭାରତର ଅନେକ ରାଜ୍ୟରେ ସ୍ୱାଇନ୍ ଫ୍ଲୁ ବ୍ୟାପୁଛି। ଅନେକ ବର୍ଷ ଧରି ବିଭିନ୍ନ ରାଜ୍ୟରେ ହଜାର ହଜାର ଲୋକ ମ୍ୟାଲେରିଆରେ ମରୁଛନ୍ତି। ଦକ୍ଷିଣ ଭାରତରେ ଚିକିନ ଗୁନିଆ ରୋଗର ଭୟଙ୍କରିତା ରହିଛି। ଉତ୍ତର ଭାରତରେ ଡ଼େଙ୍ଗୁର ପ୍ରାଦୁର୍ଭାବ କମୁନାହିଁ। ଖୋଦ୍ ଦିଲ୍ଲୀରେ ଡ଼େଙ୍ଗୁ ଭୟ ଯୋଗୁଁ ରାଜ୍ୟ ଗୋଷ୍ଠୀ କ୍ରୀଡ଼ାରେ ଭାଗ ନେବାକୁ ବାହାର ଦେଶର ଅନେକ ଖେଳାଳୀ ଆସିନଥିବା କଥା ଖବରରେ ଆସିଥିଲା।

ଭାରତୀୟ ସମାଜର ନିମ୍ନ ସ୍ତରରେ ଥିବା ସାଧାରଣ ଗରିବ ଲୋକଙ୍କ ସ୍ୱାସ୍ଥ୍ୟ ପ୍ରସଙ୍ଗ ପ୍ରକୃତରେ ଏବେ ଏକ ବଡ଼ ପ୍ରସଙ୍ଗ। ଇଏ ଜୀବନ ଏବଂ ମୃତ୍ୟୁର ପ୍ରସଙ୍ଗ। ଏହି ସମସ୍ୟାର ସମାଧାନ ପାଇଁ ଯେ ସରକାରୀ ଯୋଜନା କିଛିନାହିଁ ତାହା ବି ଠିକ୍ ନୁହେଁ। ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ପରି ସାମାଜିକ କ୍ଷେତ୍ରରେ ହଜାର ହଜାର କୋଟି ଟଙ୍କା ବ୍ୟୟ ବରାଦ ହୁଏ। ଖର୍ଚ୍ଚର ହିସାବ ବି ଦିଆଯାଏ। ବାସ୍ତବରେ ଏ ଟଙ୍କା କିଛି ଅସାଧୁ ବାବୁ, ନେତା, ଦଲାଲମାନେ ଖାଇ ଯାଆନ୍ତି। ଇଏ ସାମାନ୍ୟ ଦୁର୍ନୀତି ନୁହେଁ। ଇଏ ଏକ ସାମାଜିକ ଦୁର୍ନୀତି। ଏ ଦୁର୍ନୀତିରେ ଗୋଟିଏ ସମାଜ ଏବଂ କିଛି ସାମାଜିକ ଗୋଷ୍ଠୀର ଅକାଳ ମୃତ୍ୟୁ ହୋଇଯାଏ।

ସୁତରାଂ, ହଇଜା, ମହାମାରୀ ଏବଂ ସଂକ୍ରାମକ ରୋଗ ପାଇଁ ଆଦିବାସୀ, ଦଳିତ ତଥା ସବ୍ ଅଲଟାର୍ଣ୍ଣମନଙ୍କର ପାରମ୍ପରିକ ଅଭ୍ୟାସକୁ କାରଣ ନ କହି ରୋଗରୁ ମୁକ୍ତି ନିମନ୍ତେ ସୁବିସ୍ତୃତ ଯୋଜନା ଏବଂ ନିଷ୍ଠାପର କର୍ମୀ ଦରକାର ହେଉଛି। କାରଣ ଭାରତୀୟ ସଭ୍ୟତା ମାନବ ଜୀବନକୁ ସମ୍ମାନ ଦେଇ ଶିଖିଛି। ସେ ଜୀବନ ଗରିବ ଦଳିତଟିଏର ହେଉ ବା ସମ୍ରାଟର।



# ଦୁର୍ନୀତିକୁ ନୀତି କରିଦିଅ

"ଦୁର୍ନୀତିକୁ ନୀତି କରିଦିଅ"। ଏପରି ଶିରୋନାମା ଦେଖି ପାଠକେ ଛାନିଆ ହୋଇଯିବେଣି।

ପ୍ରକୃତରେ ଦୁର୍ନୀତିକୁ ନୀତି କରିଦେଲେ କ୍ଷତି କ'ଣ? ଏପରି ପ୍ରଶ୍ନ ଅନେକ ସାଧାରଣ ଲୋକ କଲେଣି। ସରକାରୀ ଅଫିସ୍‌ରେ ଲାଞ୍ଚ ନେବାଟା ନୀତି ହୋଇଗଲେ ଆଉ ଝିନ୍‌ଝଟ ରହନ୍ତାନି। ଭିଜିଲାନ୍ସ ଧରପଗଡ଼ ହୁଅନ୍ତାନି। ଫାଇଲ ଆଉ କେଉଁଠି ଅଟକି ଯାଆନ୍ତା ନି। ପ୍ରତି କାମ ପାଇଁ ସରକାରୀ ଅଫିସ୍‌ମାନଙ୍କ ଆଗରେ ଲାଞ୍ଚର ଏକ ଫିକ୍‌ସଡ୍ ରେଟ୍‌ର ତାଲିକା ରହନ୍ତା। ଧାର୍ଯ୍ୟ ଦରଠାରୁ କିଏ ଅଧିକ ଦିଅନ୍ତା ନାହିଁ କିମ୍ବା କମ୍ ଦେବାକୁ ଅଉ ମୂଲଚାଲ ହୁଅନ୍ତା ନି।

ଭାରତରେ ଦୁର୍ନୀତି ନେଇ ସାଧାରଣ ଲୋକଙ୍କ ଏପରି ପ୍ରତିକ୍ରିୟା ପ୍ରକୃତରେ ଉପହାସ ନୁହେଁ କିମ୍ବା ଶାସନର ଅପାରଗତା ବିରୁଦ୍ଧରେ ତାଚ୍ଛଲ୍ୟ ନୁହେଁ। ଯାହା ଆଉ ଭଲହେବାର ନାହିଁ ତାକୁ ସହ୍ୟ କରିନେବା ଭଲ। କମ୍ପୁ ନଥିବା ଯନ୍ତ୍ରଣାକୁ ତ କେବଳ ହିଁ ସହିବାକୁ ହୁଏ।

ପୃଥିବୀର କେଉଁ ଦେଶ କେତେ ଦୁର୍ନୀତି ଗ୍ରସ୍ତ ଏ ସମ୍ପର୍କରେ ଏବେ ଟ୍ରାନ୍‌ସ୍‌ପାରେନ୍‌ସି ଇଣ୍ଟରନ୍ୟାସନାଲର ରିପୋର୍ଟ ପ୍ରକାଶ ପାଇଛି। ଦୁର୍ନୀତି ର୍ୟାଙ୍କିଂରେ ଭାରତର ସ୍ଥାନ ଅଛି ସତାଅଶିରେ। ଗତବର୍ଷ ଏହା ପଞ୍ଚାଅଶିରେ ଥିଲା। ଅର୍ଥାତ୍ ଗତବର୍ଷ ଠାରୁ ଚଳିତ ବର୍ଷ ଭାରତରେ ଅଧିକ ଦୁର୍ନୀତି ହୋଇଛି।

ଭାରତରେ ଭ୍ରଷ୍ଟାଚାର ସମ୍ପର୍କରେ ପ୍ରତି ତିନିଜଣ ବାବୁଙ୍କ ଭିତରେ ଜଣେ ହେଉଛନ୍ତି ଦୁର୍ନୀତି ଗ୍ରସ୍ତ। ଅନ୍ୟ ଦୁଇଜଣ ଦୁର୍ନୀତିର ସୀମା ରେଖା ବା ବର୍ଡର ଲାଇନ୍‌ରେ ବସିଛନ୍ତି। ସୁଯୋଗ ଆସିଲେ ହୁଏ ତ ଏମାନେ ଦୁର୍ନୀତି କରିପାରନ୍ତି।

ଟ୍ରାନ୍‌ସପାରେନ୍‌ସି ଇଣ୍ଟରନ୍ୟାସନାଲର ରିପୋର୍ଟରେ ଭାରତୀୟମାନଙ୍କ ପାଇଁ ଗର୍ବ କରିବାର କିଛି ନାହିଁ। ଭାରତର ସବୁ ସ୍ତରରେ ସମ୍ପ୍ରତି ଦୁର୍ନୀତିର ଛାୟା। କେହି ବାଦ୍ ଯାଇ ନାହାଁନ୍ତି।

କିଛି ପତ୍ରକାରମାନେ ଏବେ ଖୋଲାଖୋଲି ଲେଖିଲେଣି, ଭାରତ ଏକ ଦୁର୍ନୀତି ଗ୍ରସ୍ତ ରାଷ୍ଟ୍ର। ଦୁର୍ନୀତି ବିରୁଦ୍ଧରେ 'ଶୂନ୍ ସହିଷ୍ଣୁତା'ର ଧମକ କିଛି କାମ କରୁନାହିଁ।

ଏଇମାତ୍ର ସମାପ୍ତ ହୋଇଥିବା ରାଜ୍ୟଗୋଷ୍ଠୀ କ୍ରୀଡ଼ା ପ୍ରତିଯୋଗିତାରେ ଦୁର୍ନୀତି ନେଇ ଯେପରି ଅଭିଯୋଗ ଆସିଛି, କେବଳ ଦେଶରେ ନୁହେଁ, ବିଦେଶରେ ମଧ୍ୟ ଭାରତକୁ ନିନ୍ଦା ସହିବାକୁ ପଡ଼ିଛି। ଭ୍ରଷ୍ଟାଚାର ନେଇ ଏ ଦେଶ ଯେପରି ଏକ "ବାନାନା ଷ୍ଟେଟ୍' ହୋଇଯାଇଛି। 'ବାନାନା ଷ୍ଟେଟ୍' ମାନେ ଯେଉଁଠି ନୀତି ଅନୀତି ଆଇନ ଶୃଙ୍ଖଳାର କିଛି ବାଛ ବିଚାର ନଥିବ। ଅପରାଧ ପାଇଁ ଦଣ୍ଡ ପାଇବାର କିଛି ଭୟ ନଥିବ!

ସ୍ପଷ୍ଟ କହିଲେ ଭାରତରେ ଦୁର୍ନୀତି ପ୍ରତିବର୍ଷ ବଢୁଛି। ଯଦିଓ ପ୍ରତିବର୍ଷ ଏଠି ଅକ୍ଟୋବର ମାସ ଆସିଲେ, ଦୁର୍ନୀତି ବିରୁଦ୍ଧରେ ସଚେତନତା ସପ୍ତାହ ପାଳିତ ହେଉଛି। ବାବୁମାନେ ଲାଞ୍ଚ ନେବେ ନାହିଁ ବୋଲି ଶପଥ ନେଉଛନ୍ତି ଏବଂ ପଦାଧିକାରୀମାନେ ଏଇ ଶପଥ ପାଠ କରାଉଛନ୍ତି।

ବାସ୍ତବରେ ଭ୍ରଷ୍ଟାଚାର ନେଇ ଆମେ ସମସ୍ତେ କିପରି ଏକ ଆତ୍ମପ୍ରବଞ୍ଚନାରେ ରହିଛୁ। ଆତ୍ମପ୍ରବଞ୍ଚନା ଏଇଥିପାଇଁ ଯେ ଯେଉଁମାନେ ଶପଥ ନିଅନ୍ତି ସେମାନଙ୍କ ଭିତରୁ ଅନେକ ଦୁର୍ନୀତିଗ୍ରସ୍ତ। ଗତବର୍ଷର ଶପଥ ସତ୍ତ୍ୱେ ବି ଏମାନଙ୍କର ସୁଧାର ଆସିନି ଏବଂ ଯେଉଁ ପଦାଧିକାରୀମାନେ ଭଗବାନଙ୍କର ନାଁ ନେଇ ଦୁର୍ନୀତି କରିବେ ନାହିଁ ବୋଲି ଅନ୍ୟକୁ ଶପଥ ପାଠ କରାନ୍ତି ସେମାନଙ୍କ ଭିତରୁ ଅନେକ ବି ଦୁର୍ନୀତିରେ ଲିପ୍ତ। ଯଦି ଆମେ ନିଜକୁ ନିଜେ ଠକୁ ନଥାନ୍ତେ, ଟ୍ରାନ୍ସିପାରନ୍ସି ଇଣ୍ଟରନ୍ୟାସନାଲ ଅନୁସାରେ ଭାରତରେ ଦୁର୍ନୀତିର ସୂଚାଙ୍କ ବଢୁନଥାନ୍ତା।

ସତକଥା ହେଲା ନୀରିହ ସାଧାରଣ ଲୋକଟିଏ ଏଠି ଦୁର୍ନୀତି କରେ ନାହିଁ। ସେଇମାନେ ଦୁର୍ନୀତି କରନ୍ତି ଯାହା ପାଖରେ କ୍ଷମତା ରହିଛି। ଅନ୍ୟ କଥାରେ କହିଲେ, କ୍ଷମତା ହିଁ ଦୁର୍ନୀତିକୁ ଜନ୍ମ ଦିଏ ଏବଂ କ୍ଷମତା ଯେଉଁଠି ଯେତେ ଅଧିକ, ଦୁର୍ନୀତିର ବ୍ୟାପକତା ସେଇଠି ସେତେ ବେଶି। ଏପରି ତଥ୍ୟ ବହୁଦିନ ତଳେ ଲର୍ଡ ଆକ୍ଟନ୍ ଦେଇଥିଲେ। ପାଓ୍ୱାର ଟେଣ୍ଡସ୍ ଟୁ କରପ୍ଟ ଆଣ୍ଡ ଆବ୍‌ସଲ୍ୟୁଟ ପାଓ୍ୱାର କରପ୍ଟ ଆବ୍‌ସଲ୍ୟୁଟଲି।

ଦୁର୍ନୀତି ଏବଂ କ୍ଷମତାର ସମ୍ପର୍କ ନେଇ ଲର୍ଡ ଆକ୍ଟନ ଏପରି ଥିଓରି ଦେବାବେଳେ ପୃଥିବୀରେ ଭ୍ରଷ୍ଟାଚାର ନେଇ ସେପରି ଘୋଷଣା ହେଉନଥିଲା। ସାଧାରଣ ଅବଧାରଣା ବା ପବ୍ଲିକ୍ ପରସେପ୍‌ସନ୍ ଉପରେ ଆଧାର କରି ଆକ୍ଟନ୍ ଏପରି ତତ୍ତ୍ୱ ରଖିଥିଲେ ଯେଉଁ ତତ୍ତ୍ୱ ଏବେ ଗବେଷଣାସିଦ୍ଧ। କ୍ଷମତା ହିଁ ଦୁର୍ନୀତିକୁ ଆକର୍ଷଣ କରେ। ଯେତେବେଳେ ଜଣେ କ୍ଷମତାଶାଳୀ ବ୍ୟକ୍ତି ନିଜର କ୍ଷମତା କେଉଁଠି ଅଛି ବୋଲି ଚିହ୍ନିଯାଏ ସେତେବେଳେ ସେ ଦୁର୍ନୀତି ପାଇଁ ମନ ବଳାଏ।

ଭାରତ ବର୍ଷରେ ବାବୁ ଏବଂ ରାଜନେତାଙ୍କ ପାଖରେ କ୍ଷମତା ରହିଛି। ସେଇଥିପାଇଁ ସମ୍ପ୍ରତି ଏଇ ଦୁଇଗୋଷ୍ଠୀ ବେଶ ଦୁର୍ନୀତି ଗ୍ରସ୍ତ। ସୁଯୋଗ ଆସିଲେ ଏମାନଙ୍କ ଭିତରୁ

ଅନେକ କ୍ଷମତାର ଅପବ୍ୟବହାର କରନ୍ତି। ନିଜର ସ୍ୱାର୍ଥ ପାଇଁ ଏ ଦୁଇଗୋଷ୍ଠୀ ପରସ୍ପର ଭିତରେ ଅପବିତ୍ର ସମ୍ପର୍କ ବି ରଖିଥାଆନ୍ତି। ବେଳେ ବେଳେ ଏ ସମ୍ପର୍କ ଆପେ ଆପେ ହୋଇଯାଏ। ଏହାର କାରଣ ହେଉଛି, ଏଠି ଅଧିକାଂଶ ରାଜନେତା ଦୁର୍ବଳ ଏବଂ ଲୋଭୀ ଏବଂ ଅଧିକାଂଶ ବାବୁ ହେଉଛନ୍ତି ଭ୍ରଷ୍ଟାଚାରୀ ଏବଂ ତୋଷାମଦକାରୀ। ଭାରତୀୟ ଅମଲାତନ୍ତ୍ରରେ ଯେ, ତୋଷାମଦ ଏକ ସଂସ୍କୃତିର ରୂପ ନେଇ ସାରିଲାଣି ଏପରି ଅଭିଯୋଗ ଅନେକ ବର୍ଷ ଧରି ଆସିଲାଣି। ପ୍ରତିଶ୍ରୁତିବଦ୍ଧ ଅମଲାତନ୍ତ୍ରର ଆଳ ଖୋଜି ନେତାଙ୍କୁ ତୋଷାମଦ କରି ସନ୍ତୁଷ୍ଟ କରିଦେଲେ ଯଦି ପ୍ରାଚୁର୍ଯ୍ୟ ମିଳୁଛି, ଏଥିରେ କ୍ଷତି କ'ଣ ବୋଲି ଅନେକ ଯୁକ୍ତି କରନ୍ତି ଏବଂ ଅନେକ ରାଜନେତା ଭାରତୀୟ ଗଣତନ୍ତ୍ରରେ ରାଜନୈତିକ ଭବିଷ୍ୟତରେ ଅନିଶ୍ଚିତତା କଥା ଉଠାଇ ତୋଷାମଦକାରୀ ବାବୁଙ୍କୁ ଧରି ସ୍ୱଳ୍ପ ମିଆଦୀ ଲାଭକୁ ନିଜର ସଫଳତା ବୋଲି ଭାବନ୍ତି। ଏ ତତ୍ତ୍ୱର କିଛି କଥା ଭୋରା କମିଟି ରିପୋର୍ଟରେ ଅଛି। ସ୍ପଷ୍ଟ କହିଲେ ବାବୁ ଏବଂ ନେତାଙ୍କ ଭିତରେ ଅନୈତିକ ସହଯୋଗ ନ ଥିଲେ ଭାରତରେ ଦୁର୍ନୀତି ହୁଅନ୍ତା ନି। ଓଡ଼ିଶାରେ ଖଣି ଦୁର୍ନୀତି ହୋଇନଥାନ୍ତା। ଅବଶ୍ୟ ଓଡ଼ିଶା ଖଣି ଦୁର୍ନୀତିକୁ ନେଇ ଏବେ ଅନୁସନ୍ଧାନ ଚାଲିଛି।

ହଁ, ଏ ଆଲୋଚନା ଏଇଠି ଶେଷ କରିବାକୁ ଇଛା। ଶେଷ କଥା ହେଲା, ଏକ ଦୁର୍ନୀତିମୁକ୍ତ ଭାରତ ପାଇଁ ସମୟ ଶେଷ ହୋଇଯାଇନାହିଁ। ଏବେ ବି ସମୟ ବାକି ଅଛି। ଧମକରେ ଦୁର୍ନୀତି ଯିବନି। କାରଣ ଦୁର୍ନୀତି ଏକ ମାନସିକତାର ପ୍ରଶ୍ନ। ଯେତେବେଳେ ଆମର ଏ ଗର୍ବ ଆସିବ ଯେ ଆମେ ଗାନ୍ଧୀ, ଗୋପବନ୍ଧୁଙ୍କର ଦାୟାଦ ଏବଂ ସରଳ ନିରାଡ଼ମ୍ବର ଜୀବନ ଯାପନ ଏ ଦେଶର ସଂସ୍କୃତି, ସେତେବେଳେ ଦୁର୍ନୀତି ପାଇଁ ମାନସିକତା କମିଯିବ। ଲୋକଟିଏ ପାଇଁ କେତେ ଜମି ବା ଦରକାର ? ଛଅ ଫୁଟ ନା ? ଏଥିପାଇଁ ବ୍ୟକ୍ତିଗତ ଭାବେ ଦୁର୍ନୀତିର କଳଙ୍କ କାହିଁକି ?

ଅବଶ୍ୟ ଏ ଲେଖକର ଏ ପରାମର୍ଶ ବା ଉପଦେଶ ନୁହେଁ। ଏହା ଏ ଲେଖକର ଏକ ଅଭିବ୍ୟକ୍ତି - ଷ୍ଟେଟ୍‌ମେଣ୍ଟ ଅଫ୍ ଇଣ୍ଟେଣ୍ଟ।



# ଯୌତୁକ ଲୋଭ

ଯୌତୁକ ଲୋଭ ସବୁଠାରୁ ସମ୍ପ୍ରତି ହୀନ ଘୃଣ୍ୟ ଲୋଭ। ଏ ଲୋଭ ଏତେ ଭୟଙ୍କର ଯେ ନିଜ କୁଳବଧୂକୁ ନିର୍ମମ ଭାବେ ହତ୍ୟା କରିବାରେ ଆଉ ଅନେକଙ୍କର ଯେପରି କୁଣ୍ଠା ନାହିଁ।

ଯୌତୁକ ହତ୍ୟା ଉପରେ ଏକ ମକଦ୍ଦମା ବିଚାର କରି ଭାରତର ମାନ୍ୟବର ସୁପ୍ରିମ କୋର୍ଟ ଏବେ ରାୟଟିଏ ଦେଇଛନ୍ତି। ରାୟରେ କୋର୍ଟ କହନ୍ତି- ଦୁର୍ଭାଗ୍ୟ ଯେ ଦୁର୍ନୀତି ନେଇ ଭାରତୀୟ ସମାଜ ରଗ୍‌ଣ ହୋଇଗଲାଣି। ରଗ୍‌ଣ ନ ହୋଇଥିଲେ ସାତ ଜନ୍ମକୁ ବୋହୂକରି ଆଣିଥିବା ଝିଅଟିକୁ ତା' ସ୍ୱାମୀ ଏବଂ ସ୍ୱାମୀର ଆତ୍ମୀୟ ମାନେ ମିଶି ହତ୍ୟା କରି ଦିଅନ୍ତେନି। ଏ ହତ୍ୟା ପୁଣି କିରୋସିନି ଦେହରେ ଢ଼ାଳି କରି ଦିଆଯାଏ। କିମ୍ବା ଗଳା ଚିପି ମାରି ଦିଆଯାଏ। ଏ ଅବସ୍ଥା ଏତେ ଗୁରୁତର ଯେ ଭାରତୀୟ ସଭ୍ୟତାର ଶୁଦ୍ଧତା ନେଇ ବାହାରେ ପ୍ରଶ୍ନ କରାଗଲାଣି।

ମାନ୍ୟବର କୋର୍ଟ ଏକଥା ବି କହନ୍ତି- ଯୌତୁକ ବର୍ତ୍ତମାନ ଏକ ଭଲ ବ୍ୟବସାୟ। ପରିବାରର ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ଅନେକ ଏହାକୁ ନିର୍ଲ୍ଲଜ ଭାବେ ଆବୋରି ନେଉଛନ୍ତି।

କୋର୍ଟଙ୍କ ରାୟ ବାସ୍ତବରେ ବେଶ୍ ଏକ ଗମ୍ଭୀର ବିଷୟ। ଏହା କିନ୍ତୁ ସତ ଯେ ଭାରତ ବର୍ଷରେ ଏବେ ଶିକ୍ଷିତ ଯୋଗ୍ୟ ଅବିବାହିତ ପୁଅମାନଙ୍କର ବିବାହ ବଜାରରେ ଦାମ୍ ଅଧିକ। ଅନେକ ପୁଅ ମଧ୍ୟ ବିକ୍ରି ହେବାକୁ ବିଜ୍ଞାପନ ଦିଅନ୍ତି। ଏଇ କିଛି ଦିନ ତଳେ ଜଣେ ଉଚ୍ଚ ଶିକ୍ଷିତ ଯୁବକ ଶଶୁର ଘରୁ ଟଙ୍କା ପାଇଲେ ବିଦେଶରେ ପଢ଼ିବାକୁ ଯିବ ବୋଲି ବିବାହ ପୂର୍ବରୁ ସର୍ତ୍ତ ରଖିଥିଲା। ଏଇ ସର୍ତ୍ତ କଥା ଖବର କାଗଜରେ ବିଜ୍ଞାପନରେ ପ୍ରକାଶ ପାଇଗଲା।

ଯୌତୁକ ଲୋଭ ଦେଇ କିପରି ଝିଅମାନଙ୍କୁ ହତ୍ୟା କରାଯାଏ ଏଥିନେଇ ହୋଇଥିବା ଏକ ସର୍ବେକ୍ଷଣ ରିପୋର୍ଟ ଏ ଲେଖକର ନିଜରକୁ ଆସିଲା। ରିପୋର୍ଟରେ ଥିଲା, ଭାରତରେ ମଧ୍ୟବର୍ଗୀ ପରିବାରରେ ଯୌତୁକ ହତ୍ୟା ବେଶି। ଧନୀ ଏବଂ ଗରିବ ପରିବାରମାନଙ୍କରେ ଏଇ ହତ୍ୟା କିନ୍ତୁ ଆନୁପାତିକ ଭାବେ କମ୍। ହତ୍ୟା ହେଉଥିବା ଝିଅମାନଙ୍କ ବୟସ ୨୦ରୁ ୨୬ ବର୍ଷ ଭିତରେ ହିଁ ହୋଇଥାଏ। ଶାଶୁ ଘରେ ଭବିଷ୍ୟତ ବାନ୍ଧିବ ବୋଲି ଆଖିରେ ଆଖିଏ ସ୍ୱପ୍ନ ନେଇ ଆସିଥିବା ଏଇ ବୟସରେ ଝିଅଟି ହତ୍ୟା ପୂର୍ବରୁ ହେଉଥିବା ଯୌତୁକ ନିର୍ଯ୍ୟାତନାର ପରିଣତି ଯେ ହତ୍ୟା ହେବ ତାହା ଅନୁମାନ

କରି ପାରେନାହିଁ ଏବଂ ସବୁଠାରୁ ବଡ଼କଥା ହେଲା ଯେଉଁ ଘରେ ଶାଶୁର ପ୍ରାଧାନ୍ୟ ବେଶି ଏବଂ ସ୍ୱାମୀଙ୍କ ସହ ସାଲିସ କରିବା କଷ୍ଟ, ସେଇ ଘରେ ବଧୂ ହତ୍ୟା ବେଶି ହେଉଛି। ଏ ହେଉଛି ସର୍ଭେକ୍ଷଣର ସାରାଂଶ।

ଯୌତୁକର ସଂଜ୍ଞା ଭିନ୍ନ ଭିନ୍ନ ଭାବେ ଦିଆଯାଏ। ସାଧାରଣ ଅର୍ଥରେ ଯୌତୁକ ହେଲା, ଯେଉଁ ସମ୍ପତ୍ତି ଅର୍ଥାତ୍ ଟଙ୍କା, ଜମି, ଉପହାର ଝିଅଟିଏ ତାର ବିବାହ ବେଳେ ସ୍ୱାମୀ ଘରକୁ ଆଣିଥାଏ। ଯୌତୁକ 'ସ୍ତ୍ରୀ ଧନ' ଠାରୁ ପୃଥକ। ସ୍ତ୍ରୀ ଧନ ହେଉଛି ସ୍ତ୍ରୀ ଯାହା ଉତ୍ତରାଧିକାର ସୂତ୍ରରେ ପାଇଥାଏ। ଏହି ସମ୍ପତ୍ତିରେ ସ୍ତ୍ରୀର ହିଁ ଏକମାତ୍ର ଅଧିକାର ଥାଏ। ସ୍ତ୍ରୀ ଅନ୍ତେ ଝିଅ ହିଁ ଏହାର ଉତ୍ତରାଧିକାରୀ ହୁଏ।

ଏଇ ଯୌତୁକ କଥା ଏବର ଘଟଣା ନୁହେଁ। ବହୁ ପୁରାତନ କାଳରୁ ଏହା ଚାଲି ଆସିଛି। ମଧ୍ୟଯୁଗରେ ବି ଯୌତୁକ ପ୍ରଚଳନ ଥିଲା। ଏ ପ୍ରଚଳନ ଉଚ୍ଚ କୁଳର ବିବାହରେ ହେଉଥିଲା। ଚୈତନ୍ୟଙ୍କ ବିବାହରେ ମଧ ଏଇ ପ୍ରଶ୍ନ ଉଠିଥିଲା। କାଳେ ଅଧିକ ଯୌତୁକ ଚୈତନ୍ୟ ଦାବି କରିପାରନ୍ତି, ଏଇ ଆଶଙ୍କା କରି ଚୈତନ୍ୟଙ୍କ ଭାବି ଶଶୁର ନିଜ ଝିଅର ବିବାହ ନେଇ ସଂକୋଚ କରିଥିଲେ। କାରଣ ଚୈତନ୍ୟ କୁଳୀନ ମଧବର୍ଗୀ ଥିଲେ। ଏକଥା ବିଶିଷ୍ଟ ଲେଖକ 'ରାମ ଆହୁଜା' ତାଙ୍କ ଇଣ୍ଡିଆନ ସୋସିଆଲ ସିଷ୍ଟମ ବହିରେ ଲେଖିଛନ୍ତି।

ଭାରତରେ ବ୍ରିଟିସ୍ ଯୁଗରେ ଏଇ ଯୌତୁକ ଦେବାନେବା ବେଶି ବଢ଼ିଛି ଏବଂ ବର୍ତ୍ତମାନ ଯୁଗରେ ଏହା ଚରମ ସୀମାରେ ପହଞ୍ଚି ସାରିଛି। ଇଞ୍ଜିନିୟର, ଡାକ୍ତର, ପ୍ରଶାସନିକ ଅଫିସର, କରପୋରେଟ୍ ପଦାଧିକାରୀଙ୍କ ସଂଖ୍ୟା ଆନୁପାତିକ ଭାବେ ଏବେ ବହୁତ କମ୍। ଭାରତୀୟ ସମାଜରେ ଏମାନେ ଏବେ ଖୁବ୍ ଦାମିକା ବସ୍ତୁ। ଏମାନେ ନିଜକୁ ବିକ୍ରି ପାଇଁ ବିବାହ ମାର୍କେଟରେ ନିଜକୁ ମାର୍କେଟିଙ୍ଗ କରନ୍ତି ଏବଂ ଏମାନଙ୍କର ଖର୍ଦ୍ଦି ପାଇଁ କନ୍ୟା ପିତାମାନେ ପ୍ରତିଯୋଗିତା ଆରମ୍ଭ କରିଦିଅନ୍ତି।

ଯୌତୁକ ବର୍ତ୍ତମାନ ଏକ ପ୍ରଥା ହୋଇଯାଇଛି ଏବଂ ଏଇ ପ୍ରଥାକୁ ଭାଙ୍ଗି ହେଉନି। ପ୍ରଥାଟିଏ ଭାଙ୍ଗିବା ବି ସହଜ ନୁହେଁ, ଯଦିଓ ବା ଏହା ସମାଜର ମଙ୍ଗଳରେ ଆସୁନଥାଏ। ଏହାର କାରଣ ହେଉଛି, ପ୍ରଥମେ ମଣିଷ ତାର ଇଛା ଏବଂ ଆବଶ୍ୟକତା ପୂରଣ ପାଇଁ ପ୍ରଥା ସୃଷ୍ଟି କରେ ଏବଂ ସମୟ ସହ ତାଳ ଦେଇ ପାରୁନଥିବା ପ୍ରଥା ଏବଂ ପରମ୍ପରାକୁ ଯେତେବେଳେ ଭାଙ୍ଗି ଦେବାର ପ୍ରସଙ୍ଗ ଉଠେ ଅନେକ ସପକ୍ଷବାଦୀ ଏଇ ପ୍ରଥାର ଅତୀତ ସଫଳତା ମନେ ପକାଇ କୁପ୍ରଥାର ମହିମାଗାନ କରନ୍ତି। ପ୍ରଥା ତେଣୁ ବଞ୍ଚେ । ଯୌତୁକ ପ୍ରଥା ସେଇଥିପାଇଁ ବଞ୍ଚିଛି।

ଏତେ ବିରୋଧ ସତ୍ତ୍ୱେ ଏବଂ ଏହା ବିରୁଦ୍ଧରେ ଏକ ଆଇନ୍ ଥାଇବି, ଏଇ ଯୌତୁକ ତିଷ୍ଠି ରହିଛି କିପରି ? ଏହାର ପ୍ରେରଣାର ଉତ୍ସ କେଉଁଠି ? ଅନେକ ସମୟରେ ଏପରି ପ୍ରଶ୍ନ ଆସେ। ବାସ୍ତବରେ ଏହାର ପ୍ରେରଣା ଯୌତୁକକୁ ବିରୋଧ କରୁଥିବା ଏଇ ସମାଜ ଭିତରୁ ହିଁ ଯାଏ। ଅନେକ ପିତାମାତା ନିଜ ଝିଅକୁ ବଡ଼ଘରେ ନିଜ ସ୍ୱଇଛାରେ

ଯୌତୁକ ଦେଇ ବାହା ଦେବାକୁ ଚାହାଁନ୍ତି । ଏଇଥିପାଇଁ ଯେ, ଧନୀ କିମ୍ବା ପ୍ରତିଷ୍ଠିତ ଯୁବକ ସହ ନିଜ ଝିଅ ବାହା ଦେଇଛନ୍ତି ବୋଲି ସେ ଗର୍ବ କରିବେ ଏବଂ ଝିଅର ଭବିଷ୍ୟତ ସୁରକ୍ଷିତ ବୋଲି ନିଶ୍ଚିତ ହୋଇଯିବେ ।

ଦ୍ୱିତୀୟ ପ୍ରେରଣା ଆସେ ସାମାଜିକ ପରମ୍ପରାରୁ । ବାପା, ଜେଜେ ବାପା ଯୌତୁକ ଆଣିଥିଲେ ବୋଲି ପୁଅକୁ ମନେ ପକାଇ ଦିଆଯାଏ ଏବଂ ନିଜ ଭଉଣୀ ତଥା ଝିଅକୁ ଯୌତୁକ ଦିଆଯିବ ବୋଲି କୁହାଯାଏ । ଯୌତୁକ ନ ଆଣିଲେ ଯେ ଯୌତୁକ ଦିଆଯିବ ନାହିଁ ଏହାର ଗ୍ୟାରେଣ୍ଟି ନଥାଏ । ଏବଂ ତୃତୀୟ ପ୍ରେରଣା ହେଲା, ଅନେକ ଧନୀ ବ୍ୟକ୍ତି ନିଜର ବଡ଼ିମା ପ୍ରଦର୍ଶନ ପାଇଁ ନିଜ ତରଫରୁ ଜ୍ୱାଇଁ ନିମନ୍ତେ ଯୌତୁକ ଅର୍ଥ ଏବଂ ଉପହାରର ପସରା ଖୋଲି ଦିଅନ୍ତି ।

ସ୍ପଷ୍ଟ କହିଲେ ଯୌତୁକ ଏବେ ଏକମାତ୍ର ସମସ୍ୟା ନୁହେଁ । ଏହା ଅନେକ ସାମାଜିକ ସମସ୍ୟାକୁ ଜନ୍ମ ଦେଇଛି ।

ଯୌତୁକ ଅଭାବରୁ ଅନେକ ଝିଅ ବାହା ନହୋଇ ରହି ଯାଉଛନ୍ତି । ଅବିବାହିତା ଝିଅଙ୍କ ସଂଖ୍ୟା ଏଠି ପ୍ରତିବର୍ଷ ବୃଦ୍ଧି ପାଇବାରେ ଲାଗିଛି । ଝିଅଟିଏ ବାହା ନହୋଇ ଅନୁଢ଼ା ରହିଗଲେ ରାଷ୍ଟ୍ରପାଇଁ ସମସ୍ୟା ଜନ୍ମ ନିଏ । ଅବିବାହିତା ଝିଅର ସାମାଜିକ ସୁରକ୍ଷା ଏବଂ ନିରାପତ୍ତା ପ୍ରଶ୍ନ ଆସେ । ଅନେକ ସମୟରେ ଶାନ୍ତିଶୃଙ୍ଖଳାର କଥା ବି ଉଠେ ।

ଯୌତୁକ ଜନିତ ସମସ୍ୟା କେବଳ ଏତିକିରେ ଅଟକି ଯାଏନି । ଯୌତୁକ ଲୋଭୀ ପୁଅକୁ ଯୌତୁକ ଅର୍ଥ ଦେଇ ନିଜ ଝିଅକୁ ବାହା ଦେବାପାଇଁ କନ୍ୟାପିତା ଦୁର୍ନୀତି କରେ । ଅନୈତିକ ଉପାୟରେ ଟଙ୍କା ଉପାର୍ଜନ କରେ । ଯୌତୁକ ପ୍ରଥା ଯେ ଏବର ବ୍ୟାପକ ଦୁର୍ନୀତିର କାରଣ, ଏ କଥା ଏବେ ବିଶ୍ଳେଷଣରେ ଆସିଲାଣି ।

ଯୌତୁକ ସମ୍ପ୍ରତି ଏକ ବହୁମୁଖୀ ଭୟଙ୍କର ଜାତୀୟ ସମାଜିକ ସମସ୍ୟା । ଏଥିନେଇ ମାନ୍ୟବର ସୁପ୍ରିମକୋର୍ଟଙ୍କ ଉଦ୍‌ବେଗ ତେଣୁ ଚିନ୍ତା ଜନକ । ଏଇ ସମସ୍ୟାର ଆଶୁ ଅନ୍ତ ହେବା ଉଚିତ । ପ୍ରଶ୍ନ ହୁଏ, ଏଠି ଯୌତୁକ ବିରୋଧି ଆଇନଥିଲେ ବି ଯୌତୁକ ହଟୁନାହିଁ କାହିଁକି ? ଉତ୍ତର ଏଇଆ ହୋଇପାରେ, ଏଇ ଆଇନ କାର୍ଯ୍ୟକାରୀ ହେଉନାହିଁ । କିମ୍ବା ଏଇ ଆଇନରେ କାମୁଡ଼ା ଦାନ୍ତ ନାହିଁ । ଏବଂ ଏଇଆ ବି ହୋଇପାରେ ଯୌତୁକ ଲୋଭୀମାନଙ୍କୁ ଦୃଷ୍ଟାନ୍ତ ମୂଳକ ଶାସ୍ତି ଦିଆଯାଇ ପାରୁନାହିଁ ।

ଆଇନ ତେଣୁ କଡ଼ାକଡ଼ି ଲାଗୁ ହେଉ । ଦଣ୍ଡ ଦୃଢ଼ ହେଉ । ଗଣମାଧ୍ୟମ ଏବଂ ସ୍ୱେଚ୍ଛାସେବୀ ସଂସ୍ଥା ଯୌତୁକ ବିରୁଦ୍ଧରେ ମତ ସୃଷ୍ଟି କରନ୍ତୁ । ଯୁବକମାନଙ୍କୁ ଭାରତୀୟ ସାମାଜିକ ମୁଲ୍ୟବୋଧର ଶିକ୍ଷା ଦିଆଯାଉ । ଏ ଶେଷ କଥା । ଯୌତୁକ ଜନିତ ଲୋଭ ଏବଂ ନିଜ ଘରେ ନିଜ ବୋହୂକୁ ହତ୍ୟା କରିବାର କଳଙ୍କ ନେଇ ଏ ଦେଶ ଏକବିଂଶ ଶତାବ୍ଦୀରେ ବିଶ୍ୱ ଶକ୍ତି ହେବାର ସ୍ୱପ୍ନ ଦେଖୁଛି କେମିତି ? ଆଶ୍ଚର୍ଯ୍ୟ !



# ବୁଲା ପିଲା ପ୍ରସଙ୍ଗ

ବୁଲାପିଲା ବା ଷ୍ଟ୍ରିଟ୍ ଚିଲଡ୍ରେନ୍ ପ୍ରସଙ୍ଗ ବର୍ତ୍ତମାନ ଏକ ସମ୍ବେଦନଶୀଳ ଗୁରୁତ୍ୱପୂର୍ଣ୍ଣ ସାମାଜିକ ପ୍ରସଙ୍ଗ। ଏମାନଙ୍କର ଜୀବନ ଶୈଳୀ, ସ୍ୱପ୍ନ, ଆଶା ଏବଂ ଦୁର୍ଦ୍ଦଶାକୁ ନେଇ ଆଜିର ଏ ଆଲୋଚନା। ବୁଲା ପିଲାଙ୍କ କଥା ମନକୁ ଆସିଲେ କିଛି ଦୁଃସ୍ଥ, ପତଳା, ଅପୁଷ୍ଟ ଏବଂ ଅନୁକଂପା ଯୋଗ୍ୟ ପିଲାଙ୍କ ଚେହେରା ନଜରକୁ ଚାଲିଆସେ। ଏ ପିଲାଙ୍କୁ ନେଇ ଏପରି ବର୍ଣ୍ଣନା ଏ ଲେଖକର ନିଜସ୍ୱ ଭାଷା ନୁହେଁ। ଷ୍ଟ୍ରିଟ ଚିଲଡ୍ରେନଙ୍କ ଉପରେ ସର୍ଭେକ୍ଷଣ କରୁଥିବା ଭାରତର କିଛି ସମାଜ ବିଜ୍ଞାନୀମାନେ ଏପରି ମନ୍ତବ୍ୟ ରଖିଥାନ୍ତି- ପେଲ୍ ପିଟିଏବଲ୍, ମାଲ ନରସିଡ୍।

ଏପରି ଜୀବନ ନେଇ ଭାରତୀୟ ସହରମାନଙ୍କରେ ବୁଲୁଥିବା ପିଲାଙ୍କ ସଂଖ୍ୟା କମ୍ ନୁହେଁ। ଜାତିସଂଘର ୟୁନିସେଫ୍‌ର ରିପୋର୍ଟ ଅନୁସାରେ ଭାରତରେ ଏ ପିଲାଙ୍କ ସଂଖ୍ୟା ପ୍ରାୟ ଏକ କୋଟି ଅଶି ଲକ୍ଷ। ପ୍ରତ୍ୟେକ ବର୍ଷ ଏମାନଙ୍କ ସଂଖ୍ୟା ବଢୁଛି। ଏ ଅବଶ୍ୟ କେବଳ ଭାରତର ପ୍ରସଙ୍ଗ ନୁହେଁ। ପୃଥିବୀର ଉଭୟ ଉନ୍ନତ ତଥା ଉନ୍ନତଶୀଳ ଦେଶମାନଙ୍କରେ ଷ୍ଟ୍ରିଟ୍ ଚିଲଡ୍ରେନ୍‌ଙ୍କ ସଂଖ୍ୟା କ୍ରମାଗତ ଭାବେ ବୃଦ୍ଧି ପାଉଛି। ୟୁନିସେଫର ଏ ତଥ୍ୟ ଅନୁସାରେ ପୃଥିବୀରେ ଏବେ ଏଇ ଶ୍ରେଣୀର ପିଲା ହେଉଛନ୍ତି ଶହେ ନିୟୁତ ଅର୍ଥାତ୍ ଦଶ କୋଟି। ୨୦୨୦ ମସିହା ସୁଦ୍ଧା ଏ ପିଲାଙ୍କ ସଂଖ୍ୟା ବୃଦ୍ଧିପାଇ ଆଠଶହ ନିୟୁତ ହେବ। ଅର୍ଥାତ୍ ଅଶୀକୋଟି।

ସହଜରେ ଶୋଷଣ ଏବଂ ଖୁବ୍ ଅସୁରକ୍ଷିତ ଅବସ୍ଥାରେ ଥିବା ଏ ଗୋଷ୍ଠୀଙ୍କ କଥା ଭାରତରେ କାହାର ନଜରକୁ ଆସେନି। ଏମାନଙ୍କ ଶିକ୍ଷା ଏବଂ ସ୍ୱାସ୍ଥ୍ୟକଥା ବୁଝାଯାଏନି। ଜନଗଣନାରେ ଏମାନଙ୍କ ନାଁ ରହେନି। କୌଣସି ଫଳପ୍ରଦ ବଜେଟ ଏମାନଙ୍କ ପାଇଁ ହୁଏନି। କାରଣ ରହିବା ପାଇଁ ଏମାନଙ୍କର ନିର୍ଦ୍ଦିଷ୍ଟ ବାସସ୍ଥାନ ନଥାଏ। ଏମାନେ ସବୁ ଭାସମାନ- ଫ୍ଲୋଟିଙ୍ଗ୍। ରେଲଷ୍ଟେସନ୍, ବସଷ୍ଟାଣ୍ଡମାନଙ୍କରେ ଏମାନଙ୍କର ରହିବା ଯାଗା- ଆଡ୍ଡା।

ରେଲଷ୍ଟେସନ ଓ ବସଷ୍ଟାଣ୍ଡମାନଙ୍କରେ ଏମାନଙ୍କୁ ଦେଖିବାକୁ ମିଳେ ଏଇଥିପାଇଁ ଯେ, ଏଠାରେ ଏମାନଙ୍କୁ ରୋଜଗାର ପାଇଁ କିଛି କାମ ମିଳିଯାଏ। କିଏ ଖବର କାଗଜ ବିକନ୍ତି ତ କିଏ ପ୍ଲାଷ୍ଟିକ ବୋତଲ ଏବଂ ଜରି ଗୋଟାନ୍ତି। କେତେକ ବି ଛୋଟ ଛୋଟ

ଚୋରି ପାଇଁ ସୁଯୋଗରେ ଥାଆନ୍ତି । ଅନେକ ବି ଅଳିଆଗଦାରେ ଥିବା ଡ୍ରେଣ୍ଡ୍ରାଇଟ୍ ଅଠା ଟ୍ୟୁବର ଅବଶିଷ୍ଟ ଅଠାକୁ ନାକରେ ଶୁଙ୍ଘି ନିଶା ନେଉଥାନ୍ତି । ଡ୍ରେଣ୍ଡ୍ରାଇଟ୍ ଅଠାରେ ନିଶା ଥାଏ ।

ବୁଲା ପିଲାଙ୍କ ସଂପର୍କରେ ସାଧାରଣ ଅବଧାରଣା ହେଲା ଏମାନେ ସମସ୍ତେ ହିଂସ୍ର, ଚୋର, ନିଶାଗ୍ରସ୍ତ ଏବଂ ମଦ୍ୟପ । ଏପରି ଅବଧାରଣା ବା ପବ୍ଲିକ୍ ପରସେପସନ୍ ଦୃଢ଼ ହୋଇଯାଏ, ଯେତେବେଳେ ଭାରତର ଗଣମାଧ୍ୟମରେ ଏପରି କିଛି ପିଲାଙ୍କ କାରନାମା କଥା ଖବରରେ ଆସେ ଯେ, ଏମାନେ ଚୋରି ପାଇଁ ର୍ୟାକେଟ କରିଥାଆନ୍ତି ଏବଂ ଛୋଟ ପିଲାମାନେ ତାଲା ପଡ଼ିଥିବା ଘରେ ସ୍କାଏଲାଇଟ ଦେଇ ଘରକୁ ଯାଇ ଚୋରି କରିଥାଆନ୍ତି । କିନ୍ତୁ ଏମାନଙ୍କ ଦୁଃଖ କଥା ଗଣମାଧ୍ୟମରେ ଆସେନି । ନିଃସଙ୍ଗତା ଏବଂ ଭୋକରୁ ମୁକ୍ତି ପାଇଁ ଯେ ଏମାନେ ନିଶା ଖାଆନ୍ତି, ଏକଥା କୁହାଯାଏନି । ସହରର ଗଳି ଭିତରୁ ଏମାନେ ବାହାରି ଆସି ଯେ ପରିବାରଟିଏ ଚାହାନ୍ତି ଏବଂ ସମାଜ ଚାହାନ୍ତି, ଏ ବିଷୟ ଉପରେ କେବେ ଗୁରୁତ୍ୱ ଦିଆଯାଏନି । ସାଧାରଣ ଅବଧାରଣା ଏଠି କେମିତି ଏକତରଫା ପ୍ରଚାରରେ ହିଁ ଚାଲେ ।

ଭାରତବର୍ଷରେ ଏପରି ପିଲାଙ୍କ ଗୋଷ୍ଠୀ କିପରି ସୃଷ୍ଟି ହୁଏ ବୋଲି ପ୍ରଶ୍ନ କଲେ ଉତ୍ତରରେ ତା'ର ଏକ କାରଣ ଆସେ । ସେ କାରଣ ହେଉଛି ଦାରିଦ୍ର୍ୟ । ଏ ଦାରିଦ୍ର୍ୟ କାରଣ ପୃଥିବୀର ସବୁ ଷ୍ଟ୍ରିଟ ଚିଲଡ୍ରେନ୍‌ଙ୍କର ସୃଷ୍ଟି ପାଇଁ ହିଁ କାରଣ ହୋଇଥାଏ ।

ଦାରିଦ୍ର୍ୟ ବ୍ୟତୀତ ବି ଅନ୍ୟକିଛି କଥା କାରଣରେ କୁହାଯାଏ । ଶିକ୍ଷାର ଅଭାବ, ଘରେ ରୋଜଗାରର ଅଭାବ, ରହିବା ପାଇଁ ସ୍ଥାନର ଅଭାବ, ଭଙ୍ଗାଘର, ସ୍ଥାନାନ୍ତରିକରଣ, ରାଜନୈତିକ ଅସ୍ଥିରତା, ପ୍ରାକୃତିକ ବିପର୍ଯ୍ୟୟ ଏବଂ ଏପରିକି ବର୍ତ୍ତମାନର ଆର୍ଥିକ ମାନ୍ଦାବସ୍ଥା ବୁଲା ପିଲାଙ୍କ ସଂଖ୍ୟା ବୃଦ୍ଧି ପାଇଁ ସହାୟକ ହୋଇଯାଇଛି । ଶିଳ୍ପାୟନ ଯୋଗୁଁ ବାସଚ୍ୟୁତ ହୋଇଥିବା ଅନେକ ଆଦିବାସୀ ଦଳିତଙ୍କ ପିଲା ସହରରେ କାମ ଖୋଜିବାକୁ ଆସି ଷ୍ଟ୍ରିଟ ଚାଇଲଡ୍ ହୋଇଯାଇଛନ୍ତି ।

ସହରରେ ରୋଜଗାର ବ୍ୟତୀତ ଅନ୍ୟ କିଛି ଉଦ୍ଦେଶ୍ୟ ବି ଏ ପିଲାଙ୍କର ଥାଏ । ଏଥିରେ ଥାଏ ସହରକୁ ଆସିଲେ ସେମାନେ ମନୋରଞ୍ଜନ କରିବେ, ଫୁର୍ତ୍ତି କରିବେ, ନିଜ ଜୀବନ ଉପଭୋଗ ପାଇଁ ସ୍ୱାଧୀନତା ପାଇଯିବେ ଏବଂ ଘରେ ଥିବା ଅଭାବ ତଥା ବାପାଙ୍କର ଦାୟୀତ୍ୱହୀନ ରୁକ୍ଷ ବ୍ୟବହାରରୁ ମୁକ୍ତି ପାଇଯିବେ । ଏ କାରଣରେ କିଛି ଆବେଗ ନାହିଁ । ଏହା ଏକ ସାମାଜିକ ସତ୍ୟତା ।

ସହରକୁ ଚାଲିଆସିଲେ ଏ ପିଲାଙ୍କ ଭିତରୁ ସମସ୍ତେ ଯେ, ରୋଜଗାର ପାଇଁ କାମ ପାଇଯାଆନ୍ତି, ରହିବା ପାଇଁ ସୁରକ୍ଷିତ ସ୍ଥାନ ପାଇଯାଆନ୍ତି, ଏହା ଠିକ୍ ନୁହେଁ । ବଞ୍ଚିବା ପାଇଁ ଏମାନଙ୍କ ଭିତରୁ ଅନେକ ଅପ୍ରାକୃତିକ ଯୌନ ସଂପର୍କରେ ନିଜ ଦେହ

ବିକନ୍ତି। କିଛି ଯୌନ ବିକୃତ ବ୍ୟକ୍ତି ଏମାନଙ୍କୁ ଯୌନ ଶୋଷଣ କରନ୍ତି। ସମାଜଶାସ୍ତ୍ରୀମାନେ ଏ ପିଲାଙ୍କର ଏ ଯୌନ କାରବାରକୁ ଜୀବନଧାରଣର ଯୌନ ସଂପର୍କ ବୋଲି କହନ୍ତି। ଏହା 'ସର୍ଭାଇଭାଲ୍ ସେକ୍ସ'। ଏଥିପାଇଁ ପିଲାଙ୍କ ଭିତରୁ ଅନେକ ଏବେ ଏଡ୍‌ସ ରୋଗରେ ପିଡ଼ିତ। ଏଚ୍.ଆଇ.ଭି. ପଜିଟିଭ୍‌ର ଶୀକାର। ଏମାନେ ଚିକିତ୍ସା ପାଇଁ ଚିକିତ୍ସା କେନ୍ଦ୍ରକୁ ଯାଆନ୍ତି ନାହିଁ। ଏମାନଙ୍କର ଏ ରୋଗକୁ ପରୀକ୍ଷା କରାଯାଏନି। ଏମାନେ ଅଜଣା ହୋଇ ଗୁପ୍ତ ରଖିଥାନ୍ତି। ବିଶ୍ୱ ଏଡ୍‌ସ ଦିବସ ଉପଲକ୍ଷେ ପ୍ରକାଶିତ ଏକ ତଥ୍ୟରେ ଯେଉଁମାନେ ଏଚ୍.ଆଇ.ଭି. ଶୀକାର ବୋଲି କୁହାଯାଇଛି, ସେମାନଙ୍କ ମଧରେ ସହରର ଏଇ ବୁଲାପିଲାଙ୍କ ନାଁ ରହିଛି। କୁହାଯାଇଛି ଏମାନେ ସମସ୍ତେ ଗୋଟିଏ ଗୋଟିଏ ଜୀବନ୍ତ ବୋମା। ଯେଉଁମାନଙ୍କର ଚିହ୍ନଟ ଏବଂ ଚିକିତ୍ସା ଏବେ ତୁରନ୍ତ ଦରକାର ହେଉଛି।

ଏଇମାତ୍ର ସମାପ୍ତ ହୋଇଥିବା ଏକ ସର୍ଭେକ୍ଷଣ ଏବେ କହିଛି, ବୁଲାପିଲାଙ୍କ ଭିତରୁ ପ୍ରାୟ ଚାଳିଶି ପ୍ରତିଶତ ପିଲାଏ ଦାନ୍ତ ଏବଂ ଚର୍ମ ରୋଗରେ ଆକ୍ରାନ୍ତ। ଅନେକ ବି ଯକ୍ଷ୍ମାରୋଗରେ ପିଡ଼ୀତ।

ବୁଲାପିଲାଙ୍କ ଜୀବନ ନେଇ ବର୍ତ୍ତମାନ ତେଣୁ ଏହା ଏକ ବିତର୍କର ସମୟ ନୁହେଁ। ଏହା ଏମାନଙ୍କ ପାଇଁ କାମ କରିବାର ସମୟ। ଏମାନଙ୍କ ସମସ୍ୟା କଥା ଉଠିଲେ କିଛି କର୍ମକର୍ତ୍ତା ସାମ୍ବିଧାନିକ ଶିଶୁ ଅଧିକାର କଥା ଉଠାନ୍ତି। କେତେକ ଏ ପିଲାଙ୍କ ମଙ୍ଗଳ ପାଇଁ ଅଧିକ ସରକାରୀ ଯୋଜନାର ତାଲିକା ଦିଅନ୍ତି। ଗତ କିଛିମାସ ତଳେ ଏକ ଆଲୋଚନା ଚକ୍ରରେ ଭାଗ ନେଇ ଏ ଲେଖକ ଯେତେବେଳେ ଏଇ ସହରୀ ବୁଲା ପିଲାଙ୍କ କଥା ଉଠାଇ ଅସୁରକ୍ଷିତ ପିଲାଙ୍କ ଲମ୍ବା ହିସାବ ଦେଉଥିଲା, ଜଣେ ସରକାରୀ ଶ୍ରମ ବିଭାଗ ଅଧିକାରୀ ଉତ୍ତରରେ ଜବାବ ରଖିଦେଲେ, ଏ ମାନସିକତାର ପ୍ରଶ୍ନ। ମାନସିକତା ଏବଂ ଜୀବନ ଶୈଳୀରେ ପରବର୍ତ୍ତନ ନ ଆସିଲେ ଏମାନଙ୍କ ସଂସ୍କାର ହେବନି। ଶିଶୁ ଶ୍ରମିକଙ୍କ ପାଇଁ ଥିବା ଥଇଥାନ କେନ୍ଦ୍ରକୁ କେତେ ପିଲାଏ ଯାଆନ୍ତି ତା'ର ହିସାବ ଅଛି ? ସେ ପ୍ରଶ୍ନ କଲେ।

ଏ ଲେଖକ ଏଠି ଏ ଆଲୋଚନାରେ ଆଉ ଥରେ କହିଦେବାକୁ ଚାହେଁ, ବୁଲା ପିଲାଙ୍କ ସମସ୍ୟା ଏକ ତର୍କର ପ୍ରଶ୍ନ ନୁହେଁ କିମ୍ବା ଅନୁକମ୍ପାର ପ୍ରଶ୍ନ ବି ନୁହେଁ। ଏହା ବଞ୍ଚିବାର ଅଧିକାରର ପ୍ରଶ୍ନ ଏବଂ ବଞ୍ଚେଇ ରଖିବାର ଦାୟିତ୍ୱ ହେଉଛି ରାଷ୍ଟ୍ରର। କାରଣ ଭାରତ ଏକ ଜନ ମଙ୍ଗଳ ରାଷ୍ଟ୍ର।

ହଁ, ଏ ଆଲୋଚନାର ଏ ଶେଷ କଥା, ବୁଲାପିଲାଙ୍କ ଜୀବନର ଧାରାରେ ପରିବର୍ତ୍ତନ ଆଣିବାକୁ ଭାରତର ପ୍ରତ୍ୟେକ ସହରରେ କମ୍ୟୁନିଟି ସେଣ୍ଟର ତେଣୁ ହେଉ। ଯେଉଁଠି ଏମାନଙ୍କ ପାଇଁ ଶିକ୍ଷାର ବ୍ୟବସ୍ଥା ଥିବ; ମନୋରଞ୍ଜନର ସୁବିଧା ଥିବ; ସାମାଜିକ

ମୂଲ୍ୟବୋଧ କ'ଣ ଜଣେଇବା ପାଇଁ ପ୍ରଶିକ୍ଷକ ଥିବେ; ରୋଜଗାର ପାଇଁ ମାଧ୍ୟମ ଥିବ ଏବଂ ସର୍ବୋପରି ସମସ୍ତ କଠିନ ସମୟ ଭିତରୁ ବାହାରି ଆସି ଜୀବନ କିପରି ଭଲଭାବେ ଗଢ଼ାଯାଇପାରିବ ତଥା ବ୍ୟକ୍ତିତ୍ୱ ଅଭିବୃଦ୍ଧିର ଶିକ୍ଷା ଥିବ। ବାସ୍ତବରେ ଏହା ଏକ କାଳ୍ପନିକ ପ୍ରସ୍ତାବ ନୁହେଁ। ପୃଥିବୀର ଅନେକ ରାଷ୍ଟ୍ରରେ ଏପରି କମ୍ୟୁନିଟି କେନ୍ଦ୍ରମାନ ଏବେ ଖୋଲା ଗଲାଣି।

କୋଟି କୋଟି ପିଲାଙ୍କୁ ସହରର ଗଳିରେ ଅସହାୟ ଭାବେ ବୁଲିବାକୁ ନେଇ ଭାରତ ଯେ ଏକ ଉନ୍ନତ ରାଷ୍ଟ୍ର ହୋଇ ଗଲାଣି; ଏକବିଂଶ ଶତାବ୍ଦୀର ଏକ ସୁପର ପାୱାର ଏବଂ ଜାତିସଂଘରୁ ନିରାପତ୍ତା ପରିଷଦର ସ୍ଥାୟୀ ସଭ୍ୟ ପାଇଁ ହକ୍‌ଦାର ଏପରି ଡ଼ିଣ୍ଡିମ ପିଟିବାରେ କିଛି ମାନେ ରହୁନି।

ବୁଲାପିଲାଟିଏକୁ ସମାଜର ମୁଖ୍ୟ ସ୍ରୋତକୁ ଆଣିବା କେବଳ ରାଷ୍ଟ୍ରର କାମ ନୁହେଁ, ଏ କର୍ମ ବି ସମସ୍ତ ଏନ୍‌ଜିଓଙ୍କର। ସାଧାରଣ ଜନତାର।



# ଅନ୍ଧ ବିଶ୍ୱାସ

ଅନ୍ଧ ବିଶ୍ୱାସ ଏକ ଆପେକ୍ଷିକ ଶବ୍ଦ। ଆପେକ୍ଷିକ ଏଇଥି ପାଇଁ ଯେ, କିଛି ପ୍ରଥା ଏବଂ କିଛି ପଦ୍ଧତି ଯେତେବେଳେ କିଛି ଲୋକଙ୍କ ପାଇଁ ବିଶ୍ୱାସ ଏବଂ ପରମ୍ପରା ହୋଇଥାଏ, ଅନ୍ୟ କିଛି ଲୋକ ଏହାକୁ ଅନ୍ଧବିଶ୍ୱାସ ତଥା କୁସଂସ୍କାର ଭାବେ ନେଇଥାଆନ୍ତି। ସଭ୍ୟତାର ଆରମ୍ଭରୁ ହିଁ ପ୍ରଥା ଏବଂ ଅପ୍ରଥା ଭିତରେ ଦ୍ୱନ୍ଦ ରହିଛି। ପରମ୍ପରାବାଦୀ ଏବଂ ଆଧୁନିକତାବାଦୀଙ୍କ ଭିତରେ ବିତର୍କ ହେଉଛି ଏବଂ ଏହା ସତ, ସବୁ ସମୟରେ ବୈଜ୍ଞାନିକ ତଥା ହେତୁବାଦୀ ଯୁକ୍ତିଯୁକ୍ତତା ଦ୍ୱାରା ଅନ୍ଧ ବିଶ୍ୱାସ ଏବଂ କୁସଂସ୍କାର ହିଁ ବିଲୟ ହୋଇଛି।

ଭାରତ ସମ୍ପର୍କରେ କିନ୍ତୁ କୁହାଯାଏ, ଭାରତ ହେଉଛି ବୈଜ୍ଞାନିକ ପଦ୍ଧତି ଏବଂ ପାରମ୍ପରିକ ଅନ୍ଧ ବିଶ୍ୱାସର ଏକ ବିଚିତ୍ର ମିଶ୍ରଣ। ଏଠି ଅନ୍ଧ ବିଶ୍ୱାସ ଏତେ ଗଭୀର ଯେ ଏହାକୁ ସମ୍ପୂର୍ଣ୍ଣ ଦୂରିଭୂତ କରିବା କଷ୍ଟ। ଆଇନରେ ଯେ ଏହା ଦୂରିଭୂତ ହୋଇଯିବ, ଏପରି ଚିନ୍ତା ବି କିପରି ସ୍ଥାନାନ୍ତରିତ ଲାଗେ। ଅନ୍ଧ ବିଶ୍ୱାସର ବିଲୋପ ପାଇଁ ଯେଉଁ ଯଥେଷ୍ଟ ହେତୁବାଦୀ ସଚେତନତାର ଦରକାର ହେଉଛି ତାହା ଏ ପର୍ଯ୍ୟନ୍ତ ହୋଇନାହିଁ। ଏହା ପୁଣି ସ୍ୱାଧୀନତାର ପଞ୍ଚଷଠି ବର୍ଷ ପରେ।

ଗତ କିଛିବର୍ଷ ତଳେ କର୍ଣ୍ଣାଟକର ଦକ୍ଷିଣ କର୍ଣ୍ଣଡ଼ ଜିଲ୍ଲାର ଏକ ଦେବମନ୍ଦିରରେ ପୂଜାଟିଏ ଅନୁଷ୍ଠିତ ହୋଇଥିଲା। ମନ୍ଦିରର ନାଁ ହେଉଛି 'କୁକେ ସୁବ୍ରମଣ୍ୟମ୍ ମନ୍ଦିର'। ଏଠି ଯେଉଁ ପୂଜା ଅର୍ଚ୍ଚନା ହୋଇଥିଲା ତା ନାଁ ହେଉଛି 'ଉସୁଲ ସେବା'। ଦୀର୍ଘ ଚାରିଶହ ବର୍ଷ ଧରି କୁଆଡେ ଏଇ ପୂଜା ସେବା ଏଠି ଅନୁଷ୍ଠିତ ହୋଇଆସୁଛି। ଏଥର କିନ୍ତୁ ଏଇ ସେବା କଥା ଚର୍ଚ୍ଚାକୁ ଆସିଲା ଯେତେବେଳେ ଉତ୍ତର ପ୍ରଦେଶର ତତ୍କାଳୀନ ମୁଖ୍ୟମନ୍ତ୍ରୀ ସୁଶ୍ରୀ ମାୟାବତୀ ଏଇ ପୂଜାକୁ ବିରୁଦ୍ଧ କଲେ ଏବଂ ଏଇ ସେବାକୁ ନିଷେଧ କରିବାକୁ ଦାବୀ କଲେ। ଏଇ ସେବାର ଦୃଶ୍ୟ ବହୁଳ ଭାବେ ଟି.ଭି. ଚାନେଲମାନଙ୍କରେ ପ୍ରଚାର ହୋଇଥିଲା।

"ଉସୁଲ ସେବା" କଣ ବୋଲି ସ୍ୱଭାବିକ ପ୍ରଶ୍ନ ଆସିବଣି। ଏଇ ସେବା ହେଉଛି, ଏଥିରେ ସବର୍ଣ୍ଣ ବ୍ରାହ୍ମଣମାନେ କଦଳୀ ପତ୍ରରେ ବସି ଭୋଜନ କରନ୍ତି। ଭୋଜନ ଶେଷରେ ସେମାନେ କିଛି ଅଇଁଠା ଖାଦ୍ୟ ଛାଡ଼ି ଯାଆନ୍ତି। ଏବଂ ସେଇ ଅଇଁଠା ପତ୍ରରେ କିଛି ଦଳିତ ବର୍ଗର ଲୋକ ଗଡ଼ି ଗଡ଼ି ଯାଆନ୍ତି। ଦେହସାରା ତାଙ୍କର

ଅଇଁଠା ଖାଦ୍ୟ ଲାଗେ। ପତ୍ର ଉପରେ ଯେଉଁମାନେ ଗଡ଼ନ୍ତି ସେମାନଙ୍କର ବିଶ୍ୱାସ ଯେ ଉସୁଲ ସେବାରେ ସବର୍ଣ୍ଣମାନେ ଛାଡ଼ି ଯାଇଥିବା ଖାଦ୍ୟ ତାଙ୍କ ଦେହରେ ଲାଗିଲେ ଦେହର ଥିବା ବହୁ ଦିନର ଚର୍ମ ରୋଗ ଭଲ ହୋଇଯାଏ। ଗୁରୁତର ଚର୍ମରୋଗ ଆଉ ହୁଏତ ନହୋଇପାରେ।

ଏଇ ସେବା ଯେ ଏକ ଘୃଣ୍ୟ ଅମାନବୀୟ ସାମାଜିକ କୁ ପ୍ରଥା ଏଥିରେ ନିଶ୍ଚୟ ସନ୍ଦେହ ନାହିଁ। କିନ୍ତୁ ଆଶ୍ଚର୍ଯ୍ୟ ଯେ ଦୀର୍ଘ ଚାରିଶହ ବର୍ଷ ଧରି ଏହା ଚାଲିଛି। ନିଜର ଟି.ଆରପି ବୃଦ୍ଧି ପାଇଁ ହେଉ ବା ସଚେତନତା ସୃଷ୍ଟି ପାଇଁ ହେଉ, ଭାରତର ଟି.ଭି., ଗଣମାଧ୍ୟମମାନେ ଏଇ ସେବାର କୁତ୍ସିତ ରୂପକୁ ଭାରତର କୋଟି କୋଟି ଲୋକଙ୍କ ପାଖରେ ପହଞ୍ଚାଇ ଦେଇଛନ୍ତି।

ଭଲ କଥା ହେଲା, ମାୟାବତୀଙ୍କ ପରେ କର୍ଣ୍ଣାଟକର ଦଳିତ ଲୋକମାନେ ଏଇ ସେବାର ବିରୁଦ୍ଧରେ ପଟୁଆର ବାହାର କଲେଣି। କୁସଂସ୍କାର ଏବଂ କୁପ୍ରଥାର ଶେଷ ହୁଏ ଯେତେବେଳେ ଏହା ବିରୁଦ୍ଧରେ ପ୍ରତିବାଦ ସେଇ ସମାଜ ଭିତରୁ ଆରମ୍ଭ ହୁଏ।

ଭାରତ ବର୍ଷରେ ଏବେ କେମିତି ବୌଦ୍ଧିକ ଦେବାଳିଆପଣ ଦେଖା ଦେଇଛି। ଯେତେବେଳେ ପରମ୍ପରା ଆଳରେ ଉସୁଲ ସେବା ପରି କୁତ୍ସିତ ସାମାଜିକ ପ୍ରଥାକୁ କିଛି ଲୋକ ସମର୍ଥନ କରନ୍ତି ଏଇ ଦେବାଳିଆ ପଣ ସେତେବେଳେ ଆହୁରି ସମୃଦ୍ଧ ହୋଇଯାଏ। ଏଇ ଧରନ୍ତୁ ସୂର୍ଯ୍ୟପରାଗ ଏବଂ ଚନ୍ଦ୍ରଗ୍ରହଣ କଥା। ସୂର୍ଯ୍ୟପରାଗ ଏବଂ ଚନ୍ଦ୍ରଗ୍ରହଣ ଏକ ପ୍ରାକୃତିକ ତଥା ଜାଗତିକ ପ୍ରକ୍ରିୟା। ନିର୍ଦ୍ଦିଷ୍ଟ ସମୟ ଅନ୍ତରରେ ଏବଂ ନିୟମିତ ଭାବେ ଏହା ଏଠି ଅନୁଷ୍ଠିତ ହୁଏ।

ଏଥରର ଏଇ ସୂର୍ଯ୍ୟପରାଗକୁ ନେଇ କିଛି ଟି.ଭି. ଚ୍ୟାନେଲ ସୂର୍ଯ୍ୟ ପରାଗର ପ୍ରଭାବ ଉପରେ ଏକ ସୁବିସ୍ତୃତ ବିତର୍କ ଆରମ୍ଭ କରି ଦେଇଥିଲେ। ବିତର୍କରେ ହେତୁବାଦୀମାନେ ଥିଲେ ଏବଂ ଜ୍ୟୋତିଷବିଦ୍‌ମାନେ ବି ଥିଲେ। ଏ ଲେଖକ ସେମିତି ଏକ ବିତର୍କ ଏକ ଜାତୀୟ ଟି.ଭି. ଚାନେଲରେ ଦେଖିଥିଲା। କିଏ ଯେ ଏ ବିତର୍କରେ ହାରି ଯାଉଥିଲା, ଏହା କାହିଁକି ମନେ ହେଉନଥିଲା।

୨୦୧୧ର ପ୍ରଥମ ସୂର୍ଯ୍ୟପରାଗକୁ ନେଇ ବିଭିନ୍ନ ଆଭୂଷଣ ଯୁକ୍ତ ଜ୍ୟୋତିଷ ଅନେକ ସମୟରେ ଆଖି ବନ୍ଦ କରି ପୃଥିବୀର ଭବିଷ୍ୟତ, ଦେଶର ଭବିଷ୍ୟତ ଏବଂ ବ୍ୟକ୍ତିଗତ ମଣିଷର ଭାଗ୍ୟ କଥା କହୁଥିଲେ। ରାଶି ନକ୍ଷତ୍ରକୁ ନେଇ ସେ ଗଣନା କରୁଥିଲେ। ଖରାପ ଭାଗ୍ୟ ଥିବା ବ୍ୟକ୍ତିଙ୍କ ପାଇଁ ଜ୍ୟୋତିର୍ବିଦ୍‌ମାନେ ନିରାକରଣର ଉପାୟ ବି କହି ଦେଉଥିଲେ। ଗର୍ଭବତୀ ମହିଳାଙ୍କ ପାଇଁ ସୂର୍ଯ୍ୟପରାଗ ଦେଖିବା ମନା ଥିଲା। ଦେଖିଲେ କାଳେ ବିକଳାଙ୍ଗ ପିଲା ଜନ୍ମ ହେବ, ଏଇ ଭୟ ସୃଷ୍ଟି

କରାଯାଉଥିଲା । ଘରେ ନଡ଼ିଆ ରଖିଦେଲେ ଏବଂ ଗୁଡ଼ରେ ତିଆରି ଲଡୁ ଖାଇ ବାହାରକୁ ଗଲେ ପରାଗ ଜନିତ କୁପ୍ରଭାବ କମିଯିବ ବୋଲି ଉପାୟ ମଧ୍ୟ ବତାଇ ଦିଆଯାଇଥିଲା ।

ସୂର୍ଯ୍ୟପରାଗ ଏବଂ ଚନ୍ଦ୍ର ଗ୍ରହଣ ଏକ ପ୍ରାକୃତିକ ତଥା ଜାଗତିକ ଘଟଣା ହେଲେ ବି ଏହାକୁ ନେଇ ଭୟ ସୃଷ୍ଟି କରିବାର ପ୍ରକ୍ରିୟା କିନ୍ତୁ ବିଜ୍ଞାନର ସମସ୍ତ ଅଗ୍ରଗତି ସତ୍ୱେ ମଧ୍ୟ ଶେଷ ହେଲା ନାହିଁ । ଏ ଦିନ ଖାଇବା, ଶୋଇବା, ଯାତ୍ରା କରିବା ଏବଂ ଭୋଜନ ପ୍ରସ୍ତୁତ କରିବା ଉପରେ କାହିଁ କେଉଁ କାଳୁ ଯେଉଁ କଟକଣା ଭାଗ୍ୟବାଦୀମାନେ ଲଗାଇଥିଲେ ତାହା ଏ ପର୍ଯ୍ୟନ୍ତ ବି ଚାଲୁଛି ।

ଏବେ ତ ଜ୍ୟୋତିଷ ଭବିଷ୍ୟବାଣୀ ନଥିଲେ ଖବର କାଗଜ ପ୍ରକାଶ ପାଉନାହିଁ । ଟି.ଭି. ଚାନେଲମାନଙ୍କରେ ଦୈନନ୍ଦିନ ରାଶି ଗଣନା ଏକ ଅପରିହାର୍ଯ୍ୟ ସୋପାନ । ଗ୍ରହସୁଦ୍ଧି ନାହିଁ କହି ଅନେକ ବିଦ୍ୱାନ ଜ୍ୟୋତିର୍ବିଦ୍ ବ୍ୟକ୍ତିର ଜରୁରୀ ଯାତ୍ରାକୁ ବି ବନ୍ଦ କରି ଦେଉଛନ୍ତି । ମୁକ୍ତ ଜୀବନ ଯାତ୍ରାକୁ ଯେ ଏହା ପ୍ରଭାବିତ କରୁଛି, ଏହା ଅସ୍ୱିକାର କରି ହେଉନାହିଁ । ଭାରତର ଗଣମାଧ୍ୟମ ଯେ ଭବିଷ୍ୟ ଗଣନା ଆଳରେ ସମାଜରେ ଭୟ ସୃଷ୍ଟିର ଏଇ ପ୍ରକ୍ରିୟାକୁ ପ୍ରୋତ୍ସାହନ ଦେଉଛି, ଗଣମାଧ୍ୟମର କର୍ମକର୍ତ୍ତାମାନେ ଏହା ମାନନ୍ତୁ ବା ନ ମାନନ୍ତୁ, ଏହା ସତ ।

ଜ୍ୟୋତିଷ ଶାସ୍ତ୍ର ଯେ ଏକ ଦୈବ ବିଜ୍ଞାନ ଅନ୍ୟ କଥାରେ କହିଲେ ଡିଭାଇନ୍ ସାଇନ୍ସ ଅନେକ ବୁଦ୍ଧିଜୀବୀ ଏପରି ମତ ବି ଦିଅନ୍ତି । ମହର୍ଷି ପରାସର, ଗଣିତଜ୍ଞ ବରାହ ମିହିର, ଭୃଗୁଙ୍କ ପରି ଜ୍ୟୋତିର୍ବିଦ୍‌ମାନେ ଜ୍ୟୋତିଷ ଶାସ୍ତ୍ରକୁ ଏକ ପବିତ୍ର ମହାନ୍ ଜ୍ଞାନ ଭାବେ ପ୍ରତିପାଦିତ କରିଯାଇଛନ୍ତି । କିନ୍ତୁ ଦୁର୍ଭାଗ୍ୟ ଯେ, ଅତୀତର ଏ ଦୈବ ବିଜ୍ଞାନକୁ ବର୍ତ୍ତମାନର କିଛି ଜ୍ୟୋତିର୍ବିଦ୍ୱାନମାନେ ବ୍ୟବସାୟରେ ପରିଣତ କରି ଦେଲେଣି । ଅନ୍ଧ ବିଶ୍ୱାସ ଯେତେ ଦୃଢ଼ ହୁଏ, ଶୋଷଣ ସେତେ ଅଧିକ ହୁଏ । ଏହା ଆର୍ଥିକ ହେଉ ଅଥବା ସାମାଜିକ ।

ଅନ୍ୟ ଏକ ବିଭତ୍ସ ଅନ୍ଧ ବିଶ୍ୱାସ ଏବେ ଖବରକୁ ଆସିଲା । ଏ ଅନ୍ଧ ବିଶ୍ୱାସ ଥିଲା ଧନ ଲୋଭକୁ ନେଇ । ଗୁଣି ଗାରେଡିରେ ବିଶ୍ୱାସ କରୁଥିବା କିଛି ଲୋକଙ୍କୁ ଗୁଣିଆଟିଏ କହିଦେଲା କୌଣସି ଏକ ଜଙ୍ଗଲରେ ଚୋରା ଧନ ପୋତା ହୋଇ ରହିଛି । ସମ୍ପତ୍ତି ପୋତା ହୋଇଥିବା ଯାଗାକୁ ଚିହ୍ନଟ କରିବାକୁ ହେଲେ ଏକ କଅଁଳ ଶିଶୁ ପୁତ୍ରର ଗୋଡ଼କୁ ପୋଡ଼ି ଦେବାକୁ ହେବ । ପୋଡ଼ି ଯାଉଥିବା ଗୋଡ଼ର ଗନ୍ଧ ଯେଉଁ ପର୍ଯ୍ୟନ୍ତ ଯିବ, ତାକୁ ଶେଷ ସୀମା ବୋଲି ଧରିନେଇ ପୋତା ଧନ ଖୋଜାଯିବ ।

ଗୁଣିଆର ଏଇ କଥାକୁ ବିଶ୍ୱାସ କରି ଛୋଟ ପିଲାଟିକୁ କିଛି ଲୋକ ଅପହରଣ କରିନେଲେ । ଗୋଡ଼ ତାର ନିଆଁରେ ପୋଡ଼ିଲେ । ପୋଡ଼ା ଗନ୍ଧକୁ ବାରି ବାରି ଯାଗା ଚିହ୍ନଟ କଲେ । ଧନ କିନ୍ତୁ ମିଳିଲାନି । ପୋଡ଼ି ଯାଉଥିବା ପିଲାଟି ଯନ୍ତ୍ରଣାରେ ଛଟପଟ

ହୋଇ ମୃତ୍ୟୁବରଣ କଲା।

ଭାରତରେ ଏପରି ଅନ୍ଧ ବିଶ୍ୱାସର ତାଲିକା କହି ବସିଲେ ନିଶ୍ଚୟ ଦୀର୍ଘ ହେବ। ଶିକ୍ଷା, ବିଜ୍ଞାନର ଅଭିବୃଦ୍ଧି, ସଚେତନତା ସତ୍ତ୍ୱେ ବି ଅନ୍ଧ ବିଶ୍ୱାସ କାହିଁକି କମୁ ନାହିଁ, ଏହା ସମ୍ପ୍ରତି ବଡ଼ ପ୍ରଶ୍ନବାଚୀ। ଏହା ହୁଏତ ଦିନେ ଏ ଦେଶକୁ ମଧ୍ୟଯୁଗକୁ ନେଇଯାଇପାରେ।

ଅନ୍ଧ ବିଶ୍ୱାସ ଏବଂ ସାମାଜିକ କୁ ପ୍ରଥାର ଅନ୍ତ ପାଇଁ ଭାରତ ସମ୍ବିଧାନରେ ଧାରାଟିଏ ରହିଛି। ଏହା ସମ୍ବିଧାନର ୫୦ ଧାରା। ଏ ଧାରାରେ ଉଲ୍ଲେଖଅଛି, ଭାରତର ପ୍ରତ୍ୟେକ ନାଗରିକଙ୍କର କର୍ତ୍ତବ୍ୟ ହେବ ବୈଜ୍ଞାନିକ ଚିନ୍ତାରେ ରହିବା, ଜିଜ୍ଞାଷୁ ହେବା ଏବଂ ମାନବବାଦୀ ତତ୍ତ୍ୱରେ ବିଶ୍ୱାସ ରଖିବା।

ଏ ପର୍ଯ୍ୟନ୍ତ କିନ୍ତୁ ଏହା ସମ୍ଭବ ହେଲାନି। ସାମାଜିକ କୁପ୍ରଥା ଏବଂ ଅନ୍ଧ ବିଶ୍ୱାସକୁ ନେଇ ଏକବିଂଶ ଶତାବ୍ଦୀରେ ଏ ଦେଶ ଯେ ବିଶ୍ୱ ଶକ୍ତି ହେବା ପାଇଁ କିପରି ସ୍ୱପ୍ନ ଦେଖୁଛି, ଏହା ହିଁ ବିଡ଼ମ୍ବନା।



# ଗଣତାନ୍ତ୍ରିକ ଯାତ୍ରା

ପ୍ରତିବର୍ଷ ଜାନୁୟାରୀ ୨୬ ତାରିଖ ଆସିଲେ ଆମେ ଆମ ଗଣତାନ୍ତିତକ ସାଧାରଣତନ୍ତ୍ର ଭାରତ ବର୍ଷର ବୟସ କେତେ ହେଲା ଗଣୁ। ଏ ବର୍ଷ ଆମେ ଗଣି କହିଦେଲୁ ତେଷଠି ବର୍ଷ। କୌଣସି ଏକ ବ୍ୟକ୍ତିଟିଏ ପାଇଁ ଏ ବୟସର ଏକ ଗୁରୁତ୍ୱ ରହିଛି। ଏହା ବରିଷ୍ଠ ନାଗରିକଙ୍କର ବୟସ। ଅଥଚ ଗୋଟିଏ ଦେଶପାଇଁ ଏହା ସେମିତି କିଛି ବଡ଼ ବୟସ ନୁହେଁ। କାରଣ ଦେଶଟିଏ ହଜାର ହଜାର ବର୍ଷ ଧରି ଚାଲେ। ଶାସନ ପଦ୍ଧତି ହୁଏତ ସମୟ କ୍ରମେ ବଦଳି ଯାଇପାରେ।

ଦୀର୍ଘ ୬୩ ବର୍ଷ ଧରି ଭାରତୀୟ ଶାସନର ଗଣତାନ୍ତିକ ଯାତ୍ରା ଏଠି ଚାଲିଛି। ଅବଶ୍ୟ ଏକ ସମୟରେ ଭାରତ ସହ ସ୍ୱାଧୀନ ଏବଂ ଗଣତାନ୍ତିକ ହୋଇ ଜନ୍ମ ହୋଇଥିବା ପୃଥିବୀର ଅନେକ ରାଷ୍ଟ୍ରରେ ସମ୍ପ୍ରତି ଆଉ ଗଣତନ୍ତ୍ର ନାହିଁ। ଛ' ଦଶନ୍ଧି ତଳେ ଯେଉଁ ସ୍ୱପ୍ନ ଆଉ ଆଶା ନେଇ ଏଠି ସାଧାରଣତନ୍ତ୍ର ଆସିଥିଲା, ସେ ସ୍ୱପ୍ନ କେତେ ସଫଳ ହୋଇଛି, ଏହା ଏକ ବିତର୍କର ପ୍ରଶ୍ନ।

ଏ ଇତିହାସର କଥା। ୧୯୫୦ ମସିହା ଜାନୟାରୀ ୨୪ ତାରିଖରେ ଭାରତୀୟ ସମ୍ବିଧାନ ପ୍ରଣୟନ ସଭାର ଶେଷ ଅଧିବେଶନ ଦିଲ୍ଲୀର ଲେଜିସ୍‌ଲେଟିଭ ବିଲଡିଂରେ ବସିଥିଲା। ଏଥିରେ ସମ୍ବିଧାନ ପ୍ରସ୍ତୁତି ସଭାର ସମସ୍ତ ୨୭୧ ଜଣ ସଭ୍ୟ ସଭ୍ୟା ଉପସ୍ଥିତ ଥିଲେ। ଦୀର୍ଘ ପ୍ରାୟ ୩ ବର୍ଷର ସମ୍ବିଧାନ ପ୍ରଣୟନକୁ ନେଇ ବିତର୍କ, ଆଲୋଚନା ପରେ ଭାରତ ସମ୍ବିଧାନର ଶେଷ ସ୍ୱର୍ଶ ପାଇଁ ଏମାନେ ସେଇ ଏକ ଐତିହାସିକ ମୁହୂର୍ତ୍ତରେ ଏକାଠି ହୋଇଥିଲେ।

ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ନିର୍ଦ୍ଦ୍ୱନ୍ଦରେ ଭାରତର ରାଷ୍ଟ୍ରପତି ହେବା କଥା ସଭା ପ୍ରାରମ୍ଭରେ ସମ୍ବିଧାନ ପ୍ରଣୟନ ସଭାର ସଚୀବ ଏଚ.ଭି.ଆର. ଆୟେଙ୍ଗର ଘୋଷଣା କଲେ। ପରେ ପରେ ସମସ୍ତ ସଭ୍ୟ ଏବଂ ସଭ୍ୟା, ଡ଼କ୍ଟର ପ୍ରସାଦଙ୍କ ସହ କରମର୍ଦ୍ଦନ କରି ସ୍ୱାଗତ ଜଣାଇଥିଲେ। ସମ୍ବର୍ଦ୍ଧନା ପରେ ରାଜେନ୍ଦ୍ର ପ୍ରସାଦ ସବୁ ସଭ୍ୟ ସଭ୍ୟାଙ୍କୁ ସମ୍ବିଧାନ ପାଣ୍ଡୁଲିପିରେ ଦସ୍ତଖତ କରିବାକୁ ଆମନ୍ତ୍ରଣ କଲେ। ପ୍ରଥମେ ଦସ୍ତଖତ କଲେ ଜବାହରଲାଲ ନେହେରୁ। ୨୭୧ ଜଣ ସଭ୍ୟ ସଭ୍ୟା ଜଣ ଜଣ କରି ସମ୍ବିଧାନ ପୁସ୍ତକରେ ଦସ୍ତଖତ ଦେଲେ। ଡ଼କ୍ଟର ପ୍ରସାଦ ଶେଷରେ ଦସ୍ତଖତ କରିବା କଥା। ସେ କିନ୍ତୁ ନେହେରୁଙ୍କ ଦସ୍ତଖତ ଏବଂ ସମ୍ବିଧାନର ଶେଷ ଧାଡ଼ି ଭିତରେ ଯେଉଁ ଅଳ୍ପ ଖାଲି

ଜାଗା ଥିଲା ସେଥିରେ ନିଜର ଦସ୍ତଖତ କରିଦେଲେ। ଦସ୍ତଖତ ପରେ ସାର୍ବଭୌମ ଗଣତନ୍ତ୍ର ସାଧାରଣତନ୍ତ୍ର ଭାରତରେ ଶାସନ ପାଇଁ ପୃଥିବୀର ସର୍ବବୃହତ୍ତମ ମୌଳିକ ଆଇନ ପ୍ରସ୍ତୁତ ହୋଇଗଲା। ୨୦ ବର୍ଷ ତଳେ ଅର୍ଥାତ୍ ୧୯୩୦ ମସିହାରେ କଂଗ୍ରେସର ଲାହୋର ଅଧିବେଶନରେ ଭାରତ ନିମନ୍ତେ ଯେଉଁ ପୂର୍ଣ୍ଣ ସ୍ୱରାଜ ଦାବି ଆସିଥିଲା, ସେ ଦାବି ପୂର୍ଣ୍ଣ ହୋଇଗଲା ବୋଲି ସମ୍ବିଧାନ ପ୍ରସ୍ତୁତି ସଭାର ସଭ୍ୟମାନେ ସନ୍ତୋଷ ପ୍ରକାଶ କଲେ।

ଦେଶସାରା ବାଣ ଫୁଟିଲା। ତୋପ ଶବ୍ଦ ଶୁଭିଲା। ଉତ୍ସବ ପାଳିତ ହେଲା ଏବଂ ଭାଇସ୍‌ରାୟ ହାର୍ଡିଞ୍ଜ୍‌ଙ୍କ ପାଇଁ ନିର୍ମିତ ହୋଇଥିବା ସ୍ୱତନ୍ତ୍ର ଗାଡ଼ିରେ ବସି ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ସେଦିନ ଅପରାହ୍ନରେ ପ୍ୟାରେଡ୍ ଦେଖି ବାହାରିଥିଲେ।

ପ୍ରତ୍ୟେକ ଦେଶର ଇତିହାସ ଗରିମାମୟ। ଇତିହାସକୁ ମନେ ରଖିବା ବି ଦରକାର ଏବଂ ଦେଶବାସୀଙ୍କୁ ଅନେକ ପ୍ରତିଶ୍ରୁତି ଦେଇ ଯେଉଁ ଐତିହାସିକ ଯାତ୍ରା ଏଠି ଆରମ୍ଭ ହୋଇଥିଲା, ଏ ଯାତ୍ରା ଏବେ କେଉଁଠି ପହଞ୍ଚିଛି, ତାକୁ ନେଇ ଏକ ନିରପେକ୍ଷ ବିଶ୍ଳେଷଣ ହେବା ବି ଦରକାର।

ଗଣତନ୍ତ୍ରର ଛ'ଦଶନ୍ଧିରୁ ଉର୍ଦ୍ଧ୍ୱ ବର୍ଷ ପରେ ପ୍ରକୃତରେ ଆମେ ଅଛୁ କେଉଁଠି ? ଏ ପ୍ରଶ୍ନର ଉତ୍ତର ହୁଏତ କିଛି ଲୋକଙ୍କ ପାଇଁ କିଛି ବିରକ୍ତି ଆଣିପାରେ। ଏହା କିନ୍ତୁ ସତ ଯେ, ଗଣତନ୍ତ୍ରରେ ଏ ଦେଶରୁ ଦାରିଦ୍ର୍ୟ କମିବାର ଯେଉଁ ସ୍ୱପ୍ନ ଥିଲା, ଏ ଦେଶ ଘିଅ ମହୁରେ ଭାସିବାର ଯେଉଁ ପ୍ରତ୍ୟାଶା ଥିଲା, ବ୍ରିଟିସ ଶାସନର ସ୍ୱଚ୍ଛତା ଭାରତୀୟ ଶାସନରେ ଆସିବାର ଯେଉଁ ଦାବି ଥିଲା; ଏବଂ ଗାନ୍ଧି ଉତ୍ତରାଧିକାରରୁ ଜନ୍ମ ନେଇ ଏ ଦେଶରେ ନୈତିକତା ବଳିଷ୍ଠ ହେବାର ଯେଉଁ ଆଶା ଥିଲା, ତା ନିଶ୍ଚୟ ଏ ପର୍ଯ୍ୟନ୍ତ ହୋଇନାହିଁ।

ଏ ସମ୍ପର୍କରେ ଏ ଲେଖକ ସଦ୍ୟ ପ୍ରକାଶିତ କିଛି ସର୍ଭେକ୍ଷଣର ରିପୋର୍ଟ ଦେବାକୁ ଚାହେଁ। ପ୍ରଥମେ ଜାତୀୟ ସାମ୍ପଲ୍ ସର୍ଭେ ସଂଗଠନ ଦେଇଥିବା ରିପୋର୍ଟ ବିଚାରକୁ ନିଆଯାଇପାରେ। ସାମ୍ପଲ ସର୍ଭେ କହେ, ୨୦୦୭ ଏବଂ ୦୮ ମସିହାରେ ଭାରତରେ ବେକାରୀ ବୃଦ୍ଧିର ହାର ଥିଲା ଦୁଇ ଦଶମିକ ଆଠ। ୨୦୦୯ ଏବଂ ୧୦ ମସିହାରେ କିନ୍ତୁ ଏଇ ହାର ବୃଦ୍ଧି ପାଇ ନଅ ଦଶମିକ ଚାରି ହୋଇଯାଇଛି। ସ୍ପଷ୍ଟ କହିଲେ ଏଇ ଦୁଇବର୍ଷ ଭିତରେ ଭାରତରେ ବେକାରଙ୍କ ସଂଖ୍ୟା ବଢ଼ିଛି। କମ୍ ନିଯୁକ୍ତି ମିଳିଛି ଏବଂ ସବୁଠାରୁ ବଡ଼କଥା ହେଲା ଚାକିରୀ ପାଇଥିବା ଚାକିରୀଆଙ୍କ ଭିତରେ ମାତ୍ର ୧୬ ପ୍ରତିଶତ ନିୟମିତ ଦରମା ପାଆନ୍ତି। ୪୩ ପ୍ରତିଶତ ଆତ୍ମନିଯୁକ୍ତିରେ ଅଛନ୍ତି ଏବଂ ୩୯ ପ୍ରତିଶତ ଏଠି ଠିକା ଶ୍ରମିକ ଏବଂ କର୍ମଚାରୀ ଭାବେ କାମ କରନ୍ତି।

ଜୀବିକା ଏବଂ ଜୀବନ ଧାରଣର ମାନ ଯେ ନିମ୍ନଗାମୀ ଏହାର ସୂଚନା ମିଳିଛି

ସ୍ୱାସ୍ଥ୍ୟ ସେବାରେ। ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ଭେ କହେ - ୨୦୦୭ରୁ ୧୦ ମସିହା ଭିତରେ ରକ୍ତହୀନତା ରୋଗରେ ଆକ୍ରାନ୍ତ ହୋଇଥିବା ୬ ମାସର ଶିଶୁଙ୍କ ସଂଖ୍ୟା ବଢ଼ିଛି। ରକ୍ତହୀନ ମା'ମାନଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି।

କାଶ୍ମୀର କଳି ତୁଟୁ ନାହିଁ। ସାମ୍ପ୍ରଦାୟିକତାବାଦ କମୁ ନାହିଁ। ମାଓବାଦୀଙ୍କ ହିଂସାର ଅବ୍ୟାହତି ନାହିଁ। ଅନ୍ଧ ବିଶ୍ୱାସର ଶେଷ ହୋଇନାହିଁ। ଦୁର୍ନୀତି ଭ୍ରଷ୍ଟାଚାର ଆକାଶ ଛୁଇଁଛି। ରାଷ୍ଟ୍ରୀୟ ସମ୍ପତ୍ତିକୁ ଲୁଟ କରିବାରେ କିଛି ବାବୁ, ପଦାଧିକାରୀ, ନେତା ଏଠି ଅହରହ ବ୍ୟସ୍ତ। ପିଢ଼ୀ ପିଢ଼ୀ ପାଇଁ ଏମାନେ ଅମାପ କଳା ଟଙ୍କା ବିଦେଶ ବ୍ୟାଙ୍କ ମାନଙ୍କରେ ଜମା ରଖିଛନ୍ତି ଏବଂ  ଅସଲ କଥା ହେଉଛି, ଆମେ ସମସ୍ତେ ଏହାକୁ ଦେଖି ବି ନ ଦେଖିଲା ପରି ରହିଯାଉଛୁ। କୁହାଯାଏ ଭାରତୀୟମାନେ 'ହଜୁର ମା ବାପ' ସିଣ୍ଡ୍ରୋମ ଭିତରେ ଫଶି ଯାଇଛନ୍ତି, ଯାହା ଇଂରେଜ ଶାସନ ଭିତରେ ଏଠି ଥିଲା। ପାଟି ସେବେ ଖୋଲୁ ନଥିଲା। 'ହଜୁର ମା ବାପ' କେବଳ ଶୁଭୁଥିଲା। ଆଜି ମଧ୍ୟ ସେଇ ଡ଼ାକ ଅଛି। ଇଂରେଜମାନେ ଏଠୁଁ ଚାଲିଯିବାର ୬୬ ବର୍ଷ ପରେ ବି।

ଗଣତନ୍ତ୍ରରେ ପ୍ରତିବାଦ କରିବା ଥାଏ। ଯେଉଁଠି ଗଣତନ୍ତ୍ରରେ ଏହା ନଥାଏ, ସେଠି ଗଣତନ୍ତ୍ରର ପୋଷାକ ଭିତରେ ରାଜତନ୍ତ୍ର ହିଁ ଶାସନ କରୁଥାଏ।

ଆମେ ଏଠି କେଉଁ କଥାକୁ ଦୃଢ଼ତାର  ସହ ବିରୋଧ କରୁନୁ। ସେଇଥିପାଇଁ ଆମ ନିର୍ବାଚିତ ପ୍ରତିନିଧିମାନେ କେମିତି ରାଜପୁତ୍ରର ନାଁ ନେଇ ସାରିଲେଣି। ଆଇନର ଶାସନ ଆଳରେ ଏମାନେ ମିଥ୍ୟା ଏନ୍‌କାଉଣ୍ଟର କରୁଛନ୍ତି। ନ୍ୟାୟ ଦେବା ଆଳରେ ଏଠି ଲାଞ୍ଚ ନେଇ ପକ୍ଷପାତିତା ହେଉଛି ଏବଂ ଗଣମାଧ୍ୟମର ସ୍ୱାଧୀନତା ଆଳରେ କିଛି ପତ୍ରକାରମାନେ 'ନୀରା ରାଡ଼ିଆ'ଙ୍କ ପରି କର୍ପୋରେଟ ଦଲାଲଙ୍କ ସହ ସମ୍ପର୍କ ରଖି ଶାସନରେ ପ୍ରଭାବ ରଖୁଛନ୍ତି।

ଭାରତୀୟ ଗଣତାନ୍ତ୍ରିକ ଯାତ୍ରାର ଏ ସବୁ ଶୁଭଙ୍କର ନୁହେଁ। ତଥାପି ବର୍ଷରୁ ବର୍ଷ ପରେ ଆମେ କହି ଚାଲିଛୁ, ଏ ସବୁ ସୁଧୁରିଯିବ। କେବେ ?

ଚଳିତ ବର୍ଷ ଏକ ସ୍ୱଚ୍ଛ ଦୁର୍ନୀତି ମୁକ୍ତ ଗଣତନ୍ତ୍ରର ହୁଏତ ଆଶା କରାଯାଇପାରେ।



# ଭୀରୁତା ନା ବାସ୍ତବବାଦିତା ?

ଭୀରୁତା ଏବଂ ବାସ୍ତବବାଦିତା ଭିତରେ ପ୍ରାର୍ଥକ୍ୟ ବହୁତ କମ୍। ବହୁତ ପତଳା। ଏତେ ପତଳା ଯେ, ଏହା ବାରିବା କଷ୍ଟ। ଅନେକ ସମୟରେ କିଛି ଲୋକଙ୍କ ପାଇଁ କିଛି ଘଟଣା ବାସ୍ତବବାଦୀ (ପ୍ରାଗ୍‌ମାଟିକ୍) ବୋଲି ଲାଗୁଥିଲେ ବି ଅନ୍ୟ କିଛି ଲୋକଙ୍କ ପାଇଁ ଏହା କାପୁରୁଷପଣିଆ ବୋଲି ଲାଗେ। ଆତ୍ମ ସମର୍ପଣକୁ ଅନେକ ଏକ ସୁଚିନ୍ତିତ କୌଶଳ କହି ବି ବାହାବା ନିଅନ୍ତି। ମାଲକାନାଗିରି ଜିଲ୍ଲାପାଳ ଭିନିଲ କ୍ରିଷ୍ଣା ଏବଂ କନିଷ୍ଠ ଯନ୍ତ୍ରୀ ପବିତ୍ର ମୋହନ ମାଝିଙ୍କ ମାଓବାଦୀଙ୍କ ଦ୍ୱାରା ଅପହରଣ ଘଟଣା ନେଇ ଦିନେ ଓଡ଼ିଶା ସମେତ ଦେଶ ସାରା ଏପରି ତର୍ଜମା ଆରମ୍ଭ ହୋଇଯାଇଥିଲା।

ପାଠକମାନଙ୍କୁ ଏ ଅପହରଣ କଥା ଜଣା। ତଥାପି ଏ ଆଲୋଚନାରେ ଏ ଅପହରଣର କିଛି ପ୍ରାସଙ୍ଗିକତା କଥା କହିବାକୁ ଇଛା। ଗତ ଦିନରେ ମାଲକାନଗିରି ଜିଲ୍ଲାପାଳ ଏବଂ ଜୁନିୟର ଇଞ୍ଜିନିୟରଙ୍କୁ ଜନ ଶିବିରରୁ ମାଓବାଦୀମାନେ ଅପହରଣ କରିନେଲେ। ଏମାନଙ୍କୁ ମାଓବାଦୀମାନେ ଯୁଦ୍ଧ ବନ୍ଦୀ ବୋଲି ସମ୍ବୋଧନ କଲେ। ଭାରତର ଗଣତାନ୍ତ୍ରିକ ବ୍ୟବସ୍ଥା ବିରୁଦ୍ଧରେ ମାଓବାଦୀମାନେ କରିଥିବା ଯୁଦ୍ଧର ଏହା ଅନ୍ୟ ଏକ ଅଂଶ ବୋଲି ପ୍ରଚାର ହେଲା।

ଯୁଦ୍ଧକାଳୀନ ମୁକ୍ତି ପାଇଁ ଏକ ଲମ୍ବା ତାଲିକା ଦେଲେ ମାଓବାଦୀ। ଗ୍ରୀନ୍‌ହଣ୍ଟ ଅପରେସନ ବନ୍ଦ କରିବା; କେନ୍ଦ୍ରୀୟ ସୁରକ୍ଷା ବଳକୁ ଓଡ଼ିଶାରୁ ପ୍ରତ୍ୟାହାର କରିବା; ଏବଂ ଜେଲରେ ବନ୍ଦୀ ଥିବା କିଛି ଦୁର୍ଦ୍ଦାନ୍ତ ମାଓବାଦୀଙ୍କୁ ଖଲାସ କରିବା ପରି ଦାବି ଏଇ ତାଲିକାରେ ଥିଲା। ଏବଂ ଅସଲ କଥା ହେଲା, ଏଇ ଦାବି ନେଇ ମୂଲଚାଲ କରିବାକୁ ମାଓବାଦୀମାନେ ନିଜ ତରଫରୁ ମଧ୍ୟସ୍ଥି ମଧ ଠିକ୍ କରି ଦେଲେ।

ଖବର ଯାହା, ଓଡ଼ିଶା ସରକାର ମାଓବାଦୀଙ୍କ ସମସ୍ତ ଦାବୀ ମାନିଲେ। ଏଥିପାଇଁ କୁଆଡ଼େ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା। ଜିଲ୍ଲାପାଳ ଏବଂ ଜୁନିୟର ଇଞ୍ଜିନିୟର ଶେଷରେ ମୁକ୍ତ ହୋଇଗଲେ। ଚୁକ୍ତିର ଏହା ହିଁ ଥିଲା ସବୁଠାରୁ ବଡ଼ ଆଶ୍ୱାସନାର କଥା। ମଣିଷ ଜୀବନ ତ ଅମୂଲ୍ୟ।

ଅପହରଣ ନାଟକର ଏ ଶେଷ ପରିଣତି ଏକ ଭୀରୁତା ନା ବାସ୍ତବବାଦିତା, ଏ ପ୍ରଶ୍ନ ସମ୍ପ୍ରତି ଆସୁଛି। ଭାରତର ପ୍ରଧାନମନ୍ତ୍ରୀ ଡ଼କ୍ଟର ମନମୋହନ ସିଂ ଅନେକ ଥର କହି

ଦେଲେଣି, ଦେଶର ଆଭ୍ୟନ୍ତରୀଣ ନିରାପତ୍ତା ପ୍ରତି ମାଓବାଦୀ ହିଁ ବଡ଼ ବିପଦ। ଗତ ୨୦୧୦ ମସିହାରୁ ମାଓବାଦୀଙ୍କ ସଶସ୍ତ୍ର ଆକ୍ରମଣରେ ପ୍ରାୟ ତିନିଶହ ନିରାପତ୍ତାରକ୍ଷୀ ସହୀଦ ହେଲେଣି। ଶହ ଶହ ନିରିହ ଲୋକ ମୃତ୍ୟୁ ବରଣ କଲେଣି। ଏବଂ କିଛି ମାଓବାଦୀଙ୍କ ମଧ ମୃତ୍ୟୁ ଘଟିଛି। ଏଇ କିଛି ବର୍ଷ ତଳେ ଛତିଶ ଗଡ଼ର ଦାନ୍ତେୱାଡ଼ାରେ ପ୍ରାୟ ୮୦ ଜଣ ଯୁବ ଜୱାନଙ୍କୁ ମାଓବାଦୀମାନେ ଯେପରି ନିର୍ମମ ଭାବେ ହତ୍ୟାକଲେ, ଭାରତର ଯୁଦ୍ଧ ଇତିହାସରେ ଏହା ହିଁ ଥିଲା ଏକ ବିରଳ ଘଟଣା।

ମାଓବାଦୀ ଆତଙ୍କବାଦୀ କି ନା ଏହା ଏଠି ବିଚାର୍ଯ୍ୟର କଥା ନୁହେଁ। ମାଓବାଦୀ ଯେ ହିଂସାରେ ବିଶ୍ୱାସ ରଖି ସତ୍ତା ପରିବର୍ତ୍ତନ ଚାହାଁନ୍ତି, ଏହା ହିଁ ଚରମ ସତ୍ୟ। ଏବଂ ହିଂସା ହିଁ ହେଉଛି ସବୁଠାରୁ ବଡ଼ ଘୃଣ୍ୟ ବସ୍ତୁ। ଏହାର ଆଦର୍ଶ ଏବଂ ରଙ୍ଗ ଯାହା ହେଉନା କାହିଁକି।

ବିଡ଼ମ୍ବନା ହେଲା, ଆତଙ୍କବାଦ ବିରୁଦ୍ଧରେ ଭାରତର ଶାସନ ଏବଂ କର୍ତ୍ତୃପକ୍ଷ ଯେପରି କଠୋର ହେବାକଥା ହେଉନାହାଁନ୍ତି। ଏବଂ ଯେଉଁମାନେ ବନ୍ଧୁକ ମୂନରେ ସମାଧାନର ବାଟ ଚାହାଁନ୍ତି ତାଙ୍କ ସହ ଯେପରି ବି ଦୃଢ଼ ହେବା କଥା ହେଉ ନାହାଁନ୍ତି। ଭାରତ ବର୍ଷ ଯେ ସମୟକ୍ରମେ ନରମ ରାଷ୍ଟ୍ରଟିଏ ହୋଇଯାଉଛି, ଆତଙ୍କବାଦ ସହ ମୁକାବିଲା ପାଇଁ ଥିବା ଆମର ସଂକଳ୍ପରୁ ଏହା ସୂଚନା ଆସୁଛି।

କିଛି ବର୍ଷ ତଳର ଏକ ଇତିହାସ ଏଇଠି ଏ ଆଲୋଚନାକୁ ଅଣାଯାଇପାରେ। ବୟସ୍କମାନଙ୍କର ଅବଶ୍ୟ ଏ ଇତିହାସ ମନେଥିବ। ଏବର ପିଲାମାନଙ୍କ ପାଇଁ ହୁଏତ ଏହା ଅଜଣା। କିନ୍ତୁ ଦୁର୍ଭାଗ୍ୟ କଥା ହେଲା, ଅନେକ ବୟସ୍କ ଭାରତୀୟ ଇତିହାସକୁ ମନେ ରଖିଥିଲେ ବି ଏହା ତାଙ୍କର ମନେ ନାହିଁ ବୋଲି ପ୍ରକାଶ କରନ୍ତି। ଅଜ୍ଞତା ଯେପରି ଏମାନଙ୍କ ପାଇଁ ଏକ ବିଳାସର କଥା।

୧୯୮୪ ମସିହା ଫେବୃୟାରୀ ମାସରେ ବ୍ରିଟେନର ବର୍ମିଂହାମରେ ଭାରତୀୟ କୂଟନୀତିଜ୍ଞ 'ରବୀନ୍ଦ୍ର ମାହେତ୍ରେ'ଙ୍କୁ ଜାମ୍ମୁ-କାଶ୍ମୀର ମୁକ୍ତି ମୋର୍ଚ୍ଚାର କିଛି ଆତଙ୍କବାଦୀ ଅପହରଣ କରିନେଲେ। ମାର୍ହେତ୍ର ନିଜ ଝିଅର ଜନ୍ମଦିନ ପାଳନ କରିବାକୁ କେକ୍‌ଧରି ଘରକୁ ଆସୁଥିଲେ। ଆତଙ୍କବାଦୀମାନେ କୂଟନୀତିଜ୍ଞଙ୍କ ମୁକ୍ତି ପାଇଁ କିଛି ସର୍ତ୍ତ ଦେଲେ। ଏଇ ସର୍ତ୍ତରେ ଥିଲା,ଭାରତ ସରକାର ତାଙ୍କୁ ଦଶ ଲକ୍ଷ ପାଉଣ୍ଡ ନଗଦ ଆକାରରେ ଦିଅନ୍ତୁ ଏବଂ ଜାମ୍ମୁ-କାଶ୍ମୀର ମୁକ୍ତିମୋର୍ଚ୍ଚା (ଜେକେଏଲ୍‌ଏଫ୍)ର ପ୍ରତିଷ୍ଠାତା ମକବୁଲ ବଟ୍ଟଙ୍କୁ ଭାରତ ସରକାର ଜେଲରୁ ଖଲାସ କରନ୍ତୁ।

ମକବୁଲ୍ ବଟ୍ଟ ନିରାପତ୍ତା ରକ୍ଷୀଙ୍କୁ ହତ୍ୟା ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହୋଇ ସେବେ ମୃତ୍ୟୁ ଦଣ୍ଡ ପାଇଥାଆନ୍ତି ଏବଂ ଫାଶି ଅପେକ୍ଷାରେ ଦିଲ୍ଲୀର ତିହାର ଜେଲରେ ଥାଆନ୍ତି।

ବଟ୍ଟଙ୍କୁ ଜେଲରୁ ଖଲାସ କରି କୂଟନୀତିଜ୍ଞ ମାହେତ୍ରାଙ୍କୁ ମୁକ୍ତ କରିବାକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ଉପରେ ଅସମ୍ଭବ ଚାପ ବି ପଡ଼ିଲା । ଦୀର୍ଘ ଦୁଇଦିନ ଅପେକ୍ଷା ଏବଂ ଆଲୋଚନା ପରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଠାରୁ ସ୍ପଷ୍ଟ ସନ୍ଦେଶ ଆସିଲା- ଆତଙ୍କବାଦୀଙ୍କ କୌଣସି ସର୍ତ୍ତକୁ ଭାରତ ସରକାର ମାନିପାରିବେ ନାହିଁ । ପରିଣାମ ଏହାର ଯାହା ବି ହୋଇପାରେ ।

ଇନ୍ଦିରାଙ୍କ ଏଇ ସ୍ପଷ୍ଟୋକ୍ତି ଶୁଣିବା ପରେ ଆତଙ୍କବାଦୀମାନେ କୂଟନୀତିଜ୍ଞ ମାହେତ୍ରାଙ୍କୁ ଗୁଳିକରି ହତ୍ୟାକଲେ ଏବଂ ବ୍ରିଟେନ୍‌ର ଏକ ଫାର୍ମ ହାଉସର ନଳା ପାଖରେ ତାଙ୍କ ମର ଶରୀରକୁ ଫିଙ୍ଗି ଦେଲେ । ଆତଙ୍କବାଦୀଙ୍କ ଏପରି ଜଘନ୍ୟ ଘୃଣ୍ୟ କାର୍ଯ୍ୟକୁ ରଙ୍ଗଦେଇ ନାଟକବାଜୀ କରିବାକୁ ସେତେବେଳେ ଭାରତ ବର୍ଷରେ ଚବିଶ ଘଣ୍ଟିଆ ଟି.ଭି. ଚାନେଲମାନ ନଥିଲା । ତଥାପି ଖବର କାଗଜମାନଙ୍କରେ ପ୍ରକାଶିତ ଖବର ହିଁ ଭାରତୀୟମାନଙ୍କୁ କ୍ଷୁବ୍ଧ କରିଥିଲା ।

ଆତଙ୍କବାଦୀ ମକବୁଲ ବଟ୍ଟଙ୍କ କ୍ଷମାପ୍ରାର୍ଥନା ଦରଖାସ୍ତ ସେବେ ଭାରତର ତତ୍କାଳୀନ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହଙ୍କ ପାଖରେ ବିଚାର ପାଇଁ ଥିଲା । ଶ୍ରୀମତୀ ଇନ୍ଦିରାଙ୍କ କ୍ୟାବିନେଟ ଏଇ ପ୍ରାର୍ଥନା ଯାଚିକାକୁ ପ୍ରତ୍ୟାଖ୍ୟାନ କରିବାକୁ ରାଷ୍ଟ୍ରପତିଙ୍କୁ ସୁପାରିଶ କଲେ ଏବଂ ରବୀନ୍ଦ୍ର ମାହେତ୍ରାଙ୍କ ହତ୍ୟାର ମାତ୍ର ପାଞ୍ଚଦିନ ପରେ ଆତଙ୍କବାଦୀ ମକବୁଲ ବଟ୍ଟଙ୍କୁ ଫାଶି ଖୁଣ୍ଟରେ ଝୁଲାଇ ଦିଆଗଲା ।

ଅନେକ ସମାଲୋଚକ ହୁଏତ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଏଇ ଟିଟ୍ ଫର ଟ୍ୟାଟ୍, ଜେସାକୁ ତେସା ନୀତି କୁ ଏକ ଦୀର୍ଘକାଳୀନ ସମାଧାନର ସୂତ୍ର ନୁହେଁ ବୋଲି କହିପାରନ୍ତି । କିନ୍ତୁ ଏଇ ଯୁକ୍ତିର ଅନ୍ତରାଳରେ କେଉଁଠି ନା କେଉଁଠି ଆମର ଏକ ଭୀରୁ ମାନସିକତା ଯେ ଲୁଚି ରହିଥାଏ, ଏହା ଅସ୍ୱୀକାର କରିହୁଏନି ।

ରବୀନ୍ଦ୍ର ମାହେତ୍ରାଙ୍କ ମୁକ୍ତି ନେଇ ଶ୍ରୀମତୀ ଗାନ୍ଧୀଙ୍କ ନିଷ୍ପତ୍ତି ଗୋଟିଏ ନୀତି ଉପରେ ପର୍ଯ୍ୟବେସିତ ଥିଲା । ଜଣେ ଅଫିସରଙ୍କୁ ହୁଏତ ଦୁର୍ଭାଗ୍ୟ କ୍ରମେ ଏ ଦେଶ ହରାଇପାରେ; ଏବଂ ସମୟ କ୍ରମେ ଏକ୍ଷତିର ଦୁଃଖ ଏ ଦେଶ ବି ଭୂଲିଯିବ, କିନ୍ତୁ ଆତ୍ମସମର୍ପଣରେ ଯେଉଁ ଗଭୀର ଦୁର୍ବଳତା ସୃଷ୍ଟି ହେବ ତାହା ସମୟକ୍ରମେ ବଢ଼ିବ ସିନା, କମିବ ନାହିଁ ।

ଇତିହାସର ଏଇ କଠୋର ଉଦାହରଣକୁ ଏ ଦେଶ ଭୂଲି ଯାଇଛି । ୧୯୮୯ରେ ଭି.ପି. ସିଂଙ୍କ ପ୍ରଧାନମନ୍ତ୍ରୀତ୍ୱ ବେଳେ ତତ୍କାଳୀନ ଭାରତର ଗୃହମନ୍ତ୍ରୀ ମୁଫ୍‌ତି ମହମ୍ମଦ ସଇଦ୍‌ଙ୍କ କନ୍ୟା ରୁବିଆ ସଇଦ୍‌ଙ୍କ ମୁକ୍ତି ପାଇଁ ଭାରତ ସରକାର ଅପହରଣକାରୀଙ୍କ ଦାବୀ ମାନିନେଇ ଆତଙ୍କବାଦୀଙ୍କୁ ଖଲାସ କରିଦେଲେ ଏବଂ ଏନ୍.ଡ଼ି.ଏ. ଶାସନ ବେଳେ ୧୯୯୯ରେ ଭାରତର ଖୋଦ୍ ବୈଦେଶିକ ମନ୍ତ୍ରୀ ଯଶବନ୍ତ ସିଂ ଅପହୃତ ବିମାନରେ ଥିବା ଯାତ୍ରୀଙ୍କ ମୁକ୍ତି ପାଇଁ କଠୋର ଆତଙ୍କବାଦୀ ଆଝାଁର ମାମୁଦଙ୍କୁ ନେଇ କାନ୍ଦାହାରରେ

ଛାଡ଼ି ଦେଇ ଆସିଲେ। ଏଇ ଆଝାର ଠିକ୍ ତାର ପରବର୍ଷ ଭାରତୀୟ ସଂସଦ ଉପରେ ଆକ୍ରମଣ କରିଥିଲା।

ସୁତରାଂ, ମାଲକାନଗିରି ଜିଲ୍ଲାପାଳଙ୍କ ଅପହରଣ ଘଟଣା ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରତି ଏକ ଚାଲେଞ୍ଜ୍। ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ପୃଥିବୀର ଅନେକ ଦେଶରେ ସମ୍ପ୍ରତି ଜନଜାଗରଣ ସୃଷ୍ଟି ହୋଇଥିଲେ ବି, ଭାରତୀୟ ଲାଲବାହିନୀ ଏଠି ଗଣତନ୍ତ୍ରର ହତ୍ୟାକରି ରକ୍ତଭିଜା ଏକଛତ୍ରବାଦୀ ଶାସନ ଚାହାଁନ୍ତି ଏବଂ ଏ ଦେଶର ଅନେକ ବୁଦ୍ଧିଜୀବୀ ବି ମାଓବାଦୀଙ୍କ ଏ ମିଶନକୁ ସମର୍ଥନ କରନ୍ତି। ଏ ପରିସ୍ଥିତିକୁ ସାମ୍‌ନା କରିବାକୁ ସମ୍ଭବତଃ ଭାରତ ବର୍ଷ ଏବେ ପ୍ରସ୍ତୁତ ହୋଇନାହିଁ।

ତଥାପି ମାଲକାନା ଗିରିର ଏ ଘଟଣା ପ୍ରକୃତରେ ଭୀରୁତା ନା ଏକ କୌଶଳ ପୂର୍ଣ୍ଣ ବାସ୍ତବତା, ଏକଥା ସମୟ କହିବ।



# ସର୍କସ୍ ସତ୍ୟାଗ୍ରହ

ଏଇ କିଛି ଦିନ ହେଲା ଭାରତ ବର୍ଷରେ ଗାନ୍ଧୀଜୀଙ୍କ କଳ୍ପିତ ସତ୍ୟାଗ୍ରହର ରୂପ ବଦଳି ଯାଇଛି । ଏହାର ଗତି, ପ୍ରକୃତି ଏବଂ ଗମ୍ଭୀରତାରେ ପରିବର୍ତ୍ତନ ଆସିଛି ।

ଆଜକୁ ଶହେ ଛଅ ବର୍ଷ ତଳେ ଅର୍ଥାତ ୧୯୦୭ ମସିହାରେ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଭାରତୀୟଙ୍କ ବିରୁଦ୍ଧରେ ଜାରି ହୋଇଥିବା କଳା ଆଇନ ବିପକ୍ଷରେ ଯେଉଁ ଅହିଂସା ଆନ୍ଦୋଳନ ଆରମ୍ଭ କରିଥିଲେ ତା'ର ସେ ନାଁ ରଖିଥିଲେ 'ସତ୍ୟାଗ୍ରହ' । ସତ୍ୟାଗ୍ରହର ଅର୍ଥ, ଯେଉଁଥିରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଥାଏ; ନିଷ୍ଠା ତଥା ଅହିଂସା ରହିଥାଏ; ଏବଂ ଭୟ ଶୂନ୍ୟତା ଥାଏ । ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ କଲାବେଳେ ବାପୁଜୀ ଠିକ୍ ଏଇ ତତ୍ୱକୁ ଆଧାର କରି ଆତ୍ମ ପରିବର୍ତ୍ତନ ଉପରେ ଜୋର ରଖିଥିଲେ । ଦକ୍ଷିଣ ଆଫ୍ରିକାର ଏ ସତ୍ୟାଗ୍ରହକୁ ଗାନ୍ଧିଜୀ ଭାରତ ଆଣି ଇଂରେଜଙ୍କ ବିରୁଦ୍ଧରେ ଏଠି ପ୍ରୟୋଗ ହିଁ କରିଥିଲେ । ଭାରତ ସ୍ୱାଧୀନତା ପାଇ ନଥିଲେ ଗାନ୍ଧିଜୀଙ୍କ ସତ୍ୟାଗ୍ରହର ଆଜି କିଛି ମାନେ ନଥାନ୍ତା ।

କିନ୍ତୁ ଦୁର୍ଭାଗ୍ୟ ଯେ, ଗାନ୍ଧିଜୀଙ୍କ ସତ୍ୟାଗ୍ରହ ଏଠି ଏବେ ସର୍କସ୍‌ଟିଏ ହୋଇଯାଇଛି । ତାମସା ଏବଂ ଥିଏଟରର ରୂପ ନେଇ ସାରିଛି । ସତ୍ୟାଗ୍ରହ ପ୍ରଦର୍ଶନ କରୁଥିବା ପ୍ରଦର୍ଶନକାରୀଙ୍କର ସେମିତି କିଛି ଗମ୍ଭୀରତା ନାହିଁ ।

ଏଇ ଅଳ୍ପଦିନ ତଳେ ଦିଲ୍ଲୀର ଗାନ୍ଧୀ ସମାଧୀପୀଠ ଠାରେ ଭାରତୀୟ ଜନତା ପାର୍ଟି ଏକ ଦିନିଆ ଅନଶନ ଏବଂ ସତ୍ୟାଗ୍ରହ ଆୟୋଜନ କରିଥିଲା । ଏଥିରେ ଯୋଗ ଦେଇଥିବା ବିଜେପିର କିଛି ବରିଷ୍ଠ ନେତା ଏବଂ ଲୋକସଭାର ବିରୋଧି ଦଳ ନେତ୍ରୀ ଥିବା ସୁଷମା ସ୍ୱରାଜ ନାଚିଲେ । ଏକ ହିନ୍ଦୀ ସିନେମାରେ ଥିବା ଦେଶାତ୍ମବୋଧକ ସଂଗୀତ ସହ ଏଇ ନାଚ ହୋଇଥିଲା । ସେଠି ଉପସ୍ଥିତ ନେତାମାନେ ସୁଷମାଙ୍କ ନାଚକୁ ଦେଖି ତାଳି ମାରିଲେ ଏବଂ ଉପଭୋଗ କଲେ । ଏଇ ଦୃଶ୍ୟ ଗଣମାଧ୍ୟମରେ ପ୍ରସାରିତ ହୋଇଥିଲା । ଏଇ ନାଚକୁ ପ୍ରଦର୍ଶନ ନକରି ଭାରତୀୟ ଗଣମାଧ୍ୟମ ଯେ କାହିଁକି ସେଠି ଆଲୋଚିତ ହୋଇଥିବା ପ୍ରସଙ୍ଗକୁ ପ୍ରସାର କଲା ନାହିଁ, ଏହା ପାଲଟା ପ୍ରଶ୍ନ ବି ହୁଏ । ସମ୍ଭବତଃ ଗଣମାଧ୍ୟମ ତାଙ୍କର ଟି.ଭି. ରେଟିଙ୍ଗ (ଟି.ଆର.ପି) ବୃଦ୍ଧି ପାଇଁ ଏହା କରି ପାରିଥାଆନ୍ତି ବୋଲି ଏ ପ୍ରଶ୍ନ ଭିତରେ ଆହେ । ପ୍ରକାଶଥାଉ କି ରାମଲୀଳା ମଇଦାନରେ ବାବା ରାମଦେବ ଏବଂ ତାଙ୍କର ସମର୍ଥକଙ୍କ ଉପରେ ହୋଇଥିବା ପୋଲିସ୍ କାର୍ଯ୍ୟାନୁଷ୍ଠାନ ବିରୁଦ୍ଧରେ ବିଜେପି ସତ୍ୟାଗ୍ରହ ଆୟୋଜିତ କରିଥିଲା ।

ଯୋଗ ଗୁରୁ ବାବା ରାମଦେବ ବର୍ତ୍ତମାନ ଆଉ ବେଶି ଯୋଗଗୁରୁ ନୁହଁନ୍ତି । ସେ ଏବେ ଏକ ସାମାଜିକ କର୍ମକର୍ତ୍ତା ହୋଇଯାଇଛନ୍ତି । ପାଠକେ ଜାଣନ୍ତି, ତାଙ୍କର ଏକ ଲମ୍ବା ଦାବୀ ତାଲିକା ନେଇ ବାବା ରାମଦେବ ରାମଲୀଳା ମଇଦାନରେ ଆୟୋଜନ କରିଥିବା ଏକ ଯୋଗ ଶିବିରରେ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଏହି ଦାବୀ ଭିତରେ ବିଦେଶୀ ବ୍ୟାଙ୍କମାନଙ୍କରେ ଗଚ୍ଛିତ ଥିବା ଭାରତୀୟଙ୍କ କଳାଟଂକା ପ୍ରସଂଗ ଥିଲା। ଏ ଲେଖକ ଏଠି ଏ ଦାବୀର ଯଥାର୍ଥତା କିମ୍ବା ଅଯଥାର୍ଥତା ଉପରେ କିଛି ଟିପ୍ପଣୀ ଦେଉନାହିଁ। ସମସାମୟିକ ଭାରତରେ ସତ୍ୟାଗ୍ରହର ସ୍ୱରୂପ କଥା ହିଁ କହୁଛି ।

ବାବାଙ୍କ ସତ୍ୟାଗ୍ରହ ଶିବିର ଶୀତ ତାପ ନିୟନ୍ତିତ ଥିଲା । ଏଥିରେ ଏ.ସି. ଲାଗିଥିଲା । ଚିକିତ୍ସା ପାଇଁ ଡାକ୍ତରଖାନା ଥିଲା । ଆକ୍ୱାଗାର୍ଡ ପିଇବା ପାଣିର ସୁବିଧା ଥିଲା । ଆରାମ ପାଇଁ ସମସ୍ତ ଆଧୁନିକ ବନ୍ଦୋବସ୍ତ ହୋଇଥିଲା । କିନ୍ତୁ ଯେଉଁ ହଜାର ହଜାର ଅନୁଗାମୀଙ୍କୁ ବାବା ତାଙ୍କର ସତ୍ୟାଗ୍ରହୀ ଭାବେ ଡ଼ାକି ଆଣିଥିଲେ ସମସ୍ତେ ଅନଶନ ସତ୍ୟାଗ୍ରହ ପାଇଁ ଦୈହିକ ଭାବେ ସମର୍ଥ ଥିଲେ କି ନା, ଏପରି ପ୍ରଶ୍ନ ବି ହୁଏ ।

ବାବାଙ୍କୁ ମନେଇବା ପାଇଁ ଯେଉଁ ସରକାରୀ ଉଦ୍ୟମ ହେଉଥିଲା, ସେଥିରେ ନିଜ ତରଫରୁ ନିଷ୍ପତ୍ତି ନେବାକୁ ବାବା ଏକମାତ୍ର ନେତୃତ୍ୱ ହିଁ ଥିଲେ । ସରକାରଙ୍କ ସହ ଆଲୋଚନା କରିବାକୁ ବାବା ଅନଶନ ସ୍ଥାନ ଛାଡ଼ି ପାଞ୍ଚତାରକା ହୋଟେଲକୁ ଚାଲି ଯାଉଥିଲେ । ଏସବୁ କ୍ୟାମେରା ସାମନାରେ ହିଁ ଘଟି ଯାଉଥିଲା ଏବଂ ବାବା ଯେତେବେଳେ ନିଜର ମହତ୍ୱାକାଂକ୍ଷା ଯୋଗୁଁ ସରକାରୀ ଆଲୋଚନାରେ ସନ୍ତୁଷ୍ଟ ହେଲେନି, ସରକାରଙ୍କ ତରଫରୁ ପୋଲିସ୍ କାର୍ଯ୍ୟାନୁଷ୍ଠାନ ହେଲା । ପୋଲିସ୍ କାର୍ଯ୍ୟାନୁଷ୍ଠାନ ଥିଲା ସ୍ୱାଧୀନୋତ୍ତର ଭାରତ ଇତିହାସରେ ଏକ ବୃହତ ନିନ୍ଦନୀୟ ଘଟଣା ।

ଅଭିଯୋଗ ହୁଏ, ବିମାନ ବନ୍ଦରରେ ବାବାଙ୍କୁ ପାଛୋଟି ଆଣିବାକୁ ଭାରତର ଚାରି ଜଣ ବରିଷ୍ଠ କେନ୍ଦ୍ରମନ୍ତ୍ରୀ ଯାଇ ପୁଣି ବାବାଙ୍କ ପ୍ରତି ପୋଲିସ୍ କାର୍ଯ୍ୟାନୁଷ୍ଠାନ କରିବା ନୀତିବାଦିତାର କଥା ନୁହେଁ । ଏହା ସତ୍ୟାଗ୍ରହୀଙ୍କ ପ୍ରତି ଅସମ୍ମାନ । ଗାନ୍ଧିଜୀଙ୍କ ପ୍ରତି ଅସମ୍ମାନ। କିନ୍ତୁ ସତ୍ୟାଗ୍ରହୀ ଟିଏ ଯେ ଶାସକର 'ଗାଜର ଏବଂ ଲାଠି' (କ୍ୟାରଟ୍ ଆଣ୍ଡ ଷ୍ଟିକ୍)ର ପ୍ରୟୋଗ ପ୍ରତି ସଚେତନ ହେବାର ଥିଲା ଏହା ମଧ୍ୟ ପ୍ରତିଅଭିଯୋଗରେ ଆସେ। ହୋଇପାରେ ବାବା ଗଣ ଆନ୍ଦୋଳନ ସହ ଅଭ୍ୟସ୍ତ ନଥିଲେ । ସତ୍ୟାଗ୍ରହର ପୂର୍ବ ଅଭିଜ୍ଞତା ନଥିଲା । ତା ନହୋଇଥିଲେ ବାବା ନିଜେ ନିଜର ସତ୍ୟାଗ୍ରହୀଙ୍କୁ ଛାଡ଼ି ଦେଇ ନିଜର ଆତ୍ମରକ୍ଷା ପାଇଁ (ଏକଥା ବାବା ନିଜେ ସ୍ୱୀକାର କରନ୍ତି) ସାଲୱାର ପଞ୍ଜାବୀ ପିନ୍ଧି ଏବଂ ଦୁପଟାରେ ମୁହଁ ଲୁଚାଇ ଲୁଚି ପଳାଇବାକୁ ଚେଷ୍ଟା କରି ନଥାନ୍ତେ । ସତ୍ୟାଗ୍ରହ କଲାବେଳେ ପୋଲିସ୍ ଘୋଡା ଟାପୁର ମାଡ କିପରି ସହ୍ୟ କରିବାକୁ ହେବ ଗାନ୍ଧିଜୀ ତାଙ୍କ ସତ୍ୟାଗ୍ରହୀଙ୍କୁ ପ୍ରସ୍ତୁତ କରି ରଖିଥିଲେ ।

ଏବେ ପୁଣି ଆନ୍ନା ହଜାରେ ଏବଂ ତାଙ୍କ ସାଥୀମାନେ ବାରମ୍ବାର ସତ୍ୟାଗ୍ରହର

ସ୍ଲୋଗାନ ଦେଉଛନ୍ତି । ଲୋକପାଳ ପାଇଁ ଆନ୍ନାଙ୍କ ସତ୍ୟାଗ୍ରହ ସଫଳ ହେବା ପରେ ଆନ୍ନା ଉଲ୍ଲସିତ ହୋଇ ଯାଇଛନ୍ତି । ଜନ୍ତର ମନ୍ତରରେ ଆନ୍ନା ହଜାରେ ଏବଂ ତାଙ୍କ ସହଯୋଗୀମାନେ ଦୁର୍ନୀତି ବିରୁଦ୍ଧରେ ସତ୍ୟାଗ୍ରହ କଲା ବେଳେ ଭାରତର ବିଭିନ୍ନ ସହରରେ ମହମବତୀ ଜାଳି ଏହାକୁ ସମର୍ଥନ କରାଯାଇଥିଲା ଏବଂ ଏହାର ସୁଯୋଗ ନେଇ ଆନ୍ନା ଭାରତରେ ଗଣତାନ୍ତ୍ରିକ ଅନୁଷ୍ଠାନ ପ୍ରତି ଆକ୍ଷେପ କରିଚାଲିଥିଲେ ।

ଗଣତାନ୍ତ୍ରିକ ସ୍ୱାଧୀନ ଭାରତରେ ଆମରଣ ଅନଶନକୁ ଆନ୍ଦୋଳନର ଏକ ପନ୍ଥା ଭାବେ ଗ୍ରହଣ କରାଯିବ କି ନା ଏଥି ନେଇ ସଂବିଧାନ ପ୍ରଣୟନ ସଭାରେ ଆଲୋଚନା ହୋଇଥିଲା । ଏହାକୁ ବିରୁଦ୍ଧ କରି ଡକ୍ଟର ବାବା ସାହେବ ଆମ୍ବେଦକର ଯୁକ୍ତି ରଖିଥିଲେ - ଅନଶନ ସତ୍ୟାଗ୍ରହ ପରାଧୀନ ଭାରତରେ ଦରକାର ଥିଲା । ସ୍ୱାଧୀନ ଭାରତରେ ଏହାର ଆଉ ଦରକାର ନାହିଁ । କାରଣ ଆମରଣ ଅନଶନ ହେଉଛି ଏକ ଅହିଂସ ବଳପ୍ରୟୋଗ । ଅନ୍ୟ କଥାରେ କହିଲେ, ଏହା ଏକ ନନ୍ ଭାଓଲେଣ୍ଟ ଫୋର୍ସ।

ଏହା ସ୍ୱୀକାର୍ଯ୍ୟ ଯେ ଗଣତନ୍ତ୍ରରେ ଗଣ ଆନ୍ଦୋଳନ ରହିବ । ସତ୍ୟାଗ୍ରହ ରହିବ । କିନ୍ତୁ ଏହାର ମାନେ ନୁହେଁ ଯେ, ସତ୍ୟାଗ୍ରହର ଦ୍ୱାହି ଦେଇ ତଥାକଥିତ ସତ୍ୟାଗ୍ରହୀଙ୍କ ଦ୍ୱାରା ଭାରତବର୍ଷର ନୀତି, ନିୟମ, ସଂବିଧାନିକ ବ୍ୟବସ୍ଥା ଏବଂ ନିର୍ବାଚିତ ପ୍ରତିନିଧିଙ୍କୁ ପ୍ରତ୍ୟାଖ୍ୟାନ କରାଯିବ । ଏମାନେ ସିଭିଲ୍ ସମାଜର ଆନ୍ନା ହଜାରେ ହୋଇ ପାରନ୍ତି କିମ୍ବା ଯୋଗ ଗୁରୁ ବାବା ରାମଦେବ ହୋଇପାରନ୍ତି। ଜନପ୍ରିୟତା ଏବଂ ଲୋକଙ୍କୁ ଆଶୀର୍ବାଦ ବିକି ଉପାର୍ଜିତ ହେଉଥିବା ଅର୍ଥର ଅପବ୍ୟବହାର ଉଚିତ ବି ନୁହେଁ ।

ଦୁର୍ନୀତି ଭାରତର ଏବେ କର୍କଟ ବ୍ୟାଧି। ଏହାର ନିରାକରଣ ହେବା ଦରକାର । କିନ୍ତୁ ଏହା ନିଶ୍ଚିତ ଯେ, କେବଳ ଆଇନରେ ଏହା ଦୂର କରିବା କଷ୍ଟ । କାରଣ ଦୁର୍ନୀତି ଏକ ନୈତିକ ଅପରାଧ । ବାପୁଜୀଙ୍କ ସତ୍ୟାଗ୍ରହରେ ନୈତିକ ମୂଲ୍ୟବୋଧ ଉପରେ କେବଳ ଗୁରୁତ୍ୱ ହିଁ ଥିଲା। ଏହା ପ୍ରାଥମିକ ସ୍ତରରେ ବ୍ୟକ୍ତି ଠାରୁ ହିଁ ଆରମ୍ଭ ହେଉଥିଲା । ସିଭିଲ୍ ସମାଜ ଏବଂ ବାବାଙ୍କ ସତ୍ୟାଗ୍ରହ ଅଭିଯାନ ପ୍ରଥମେ ନିଜର ଅନୁଗାମୀଙ୍କ ଠାରୁ ଆରମ୍ଭ ହେବା ଆବଶ୍ୟକ।

ଗାନ୍ଧିଜୀଙ୍କ କଳ୍ପିତ ସତ୍ୟାଗ୍ରହର ପବିତ୍ରତା ରହୁ ॥



# ନାଗରିକ ନିର୍ମାଣ

ଆନ୍ନା ହଜାରେଙ୍କ ଜନଲୋକପାଲ ନେଇ ଆନ୍ଦୋଳନ ବେଳେ କେବଳ ସଂସଦ ଏବଂ ରାଜନୈତିକ ନେତାଙ୍କ ଉପରେ ଆକ୍ରମଣ ହେଲା । ମନେ ହେଲା, ସତେ ଯେପରି ଭାରତରେ ଭ୍ରଷ୍ଟାଚାର ପାଇଁ ଭାରତୀୟ ରାଜନୈତିକ ଶ୍ରେଣୀ ହିଁ ଦାୟୀ ।

ମଞ୍ଚ ଉପରେ ବସିଥିବା ଆନ୍ନାଙ୍କ ସାମ୍‌ନାରେ ହିଁ ଆନ୍ଦୋଳନକାରୀ ନେତାମାନେ ସାଂସଦମାନଙ୍କୁ ନିଧୂମ ଶୋଧିଲେ । ସଂସଦରେ ସବୁ ଚୋର, ଲୁଟେରା, ଧୋକାବାଜ୍, ଅପାଠୁଆ ଏପରି କେତେ କ'ଣ ଭାଷାରେ ସେମାନେ କହିଲେ । ଆନ୍ଦୋଳନକୁ ଆହୁରି ତୀବ୍ର କରିବାକୁ ଆନ୍ନା ତାଙ୍କ ସମର୍ଥକ ମାନଙ୍କୁ ସାଂସଦଙ୍କ ଘର ଆଗରେ ଧାରଣା ଦେବାକୁ ନିର୍ଦ୍ଦେଶ ବି ଦେଲେ ଏବଂ ତୁରନ୍ତ ଏ ନିର୍ଦ୍ଦେଶ ମାନି ସମର୍ଥକମାନେ ନେତାମାନଙ୍କ ବାସଗୃହ ଆଗରେ ପ୍ରଦର୍ଶନ ଆରମ୍ଭ କରିଦେଲେ । ଘଣ୍ଟ ଘଣ୍ଟା ବାଜିଲା, ଗୀତ ବୋଲା ହେଲା । ଏ ସବୁର ସିଧାସଳଖ ପ୍ରସାରଣ ଟି.ଭି. ଚାନେଲମାନଙ୍କରେ ହେଲା । ଷ୍ଟୁଡ଼ିଓ ଆଲୋଚନାରେ ଭାଗ ନେଇ ପଣ୍ଡିତ, ବୁଦ୍ଧିଜୀବୀମାନେ ଦୁର୍ନୀତି ପାଇଁ ନେତାମାନଙ୍କୁ ଦୋଷ ଦେଲେ । ଗଣମାଧ୍ୟମର ଆଙ୍କରର ଏବଂ ଖବର ଦାତାମାନେ ଆନ୍ଦୋଳନର 'ଗ୍ରାଉଣ୍ଡ ଜିରୋ'ରୁ ଖବର ଦେଉଛନ୍ତି କହି ଉଚ୍ଚ ସ୍ୱରରେ ଚବିଶ ଘଣ୍ଟିଆ ଧାରାବିବରଣୀ ପରିବେଷଣ କଲେ । ଭାରତର ବିଭିନ୍ନ ସହର ମାନଙ୍କରେ ଆନ୍ଦୋଳନକୁ ସମର୍ଥନ କରି ମହମବତୀ ଜଳିଲା । ଏଥିରେ ମଧ୍ୟବର୍ଗୀ, ବୁଦ୍ଧିଜୀବୀ, ଓକିଲ, ଅବସରପ୍ରାପ୍ତ କର୍ମଚାରୀ, ଛାତ୍ର, ଛୋଟ ବ୍ୟବସାୟୀ ଏବଂ ସିନେମା ତାରକାମାନେ ଯୋଗ ଦେଲେ ଏବଂ ସାଂସଦଙ୍କ ବିରୁଦ୍ଧରେ କିଏ ବି ଭାଷଣ ଦେଇ ଯାହା କିଛି କହିଦେଲେ, ଭାଷଣକୁ ଲୋକେ ତାଳିମାରି ସମର୍ଥନ କଲେ । କୁହାଗଲା, ଏ ସମସ୍ତ କେବଳ ଭାରତୀୟ ଗଣତନ୍ତ୍ର ପାଇଁ କରାଯାଉଛି; ଦ୍ୱିତୀୟ ସଂଗ୍ରାମ ପାଇଁ କରାଯାଉଛି, ଯଦିଓ ବା ଏଥିରେ କିଛି ଫାସିବାଦୀ ଉପାଦାନ ଥିଲା ।

ପ୍ରଶ୍ନ ଆସେ, ଯଦି ଆନ୍ନା ଆନ୍ଦୋଳନକାରୀମାନେ ସାଂପ୍ରତିକ ଭାରତୀୟ ଗଣତନ୍ତ୍ରକୁ ଚାହୁଁନଥିଲେ; ଏବଂ ବର୍ତ୍ତମାନର ସ୍ୱାଧୀନତା ଉପରେ ସନ୍ତୁଷ୍ଟ ନଥିଲେ, ପ୍ରକୃତରେ ଏମାନେ କେଉଁ ଗଣତନ୍ତ୍ର ଏବଂ କେଉଁ ସ୍ୱାଧୀନତା ଚାହୁଁଥିଲେ ? ଇତିହାସ କହେ, ବର୍ତ୍ତମାନର ଏ ଗଣତନ୍ତ୍ର ଏବଂ ସ୍ୱାଧୀନତା ପାଇଁ ଲକ୍ଷ ଲକ୍ଷ ଭାରତୀୟ ଦୀର୍ଘ ପ୍ରାୟ ଦୁଇଶହ ବର୍ଷ ଧରି ଆନ୍ଦୋଳନ କରିଥିଲେ । ଶହ ଶହ ଲୋକ ପ୍ରାଣବଳୀ ଦେଇଥିଲେ ଏବଂ ଏହା ମଧ୍ୟ

ସ୍ୱୀକାର କରାଯାଏ, ଗଣତନ୍ତ୍ର ହିଁ ବିଶ୍ୱର ସର୍ବୋତ୍ତମ ଶାସନ ପଦ୍ଧତି ଏବଂ ଭାରତୀୟ ଗଣତନ୍ତ୍ର ଅନନ୍ୟ। ଏଇଥି ପାଇଁ ଯେ, ଏଠି ଏକ ନିର୍ଦ୍ଦିଷ୍ଟ ସମୟ ଭିତରେ ଲୋକଙ୍କ ମତ ନେଇ ନିର୍ବାଚନରେ ହିଁ କ୍ଷମତାର ହସ୍ତାନ୍ତର ତଥା କ୍ଷମତାର ନବୀକରଣ ଶାନ୍ତିପୂର୍ଣ୍ଣ ଭାବେ ହୁଏ।

ଏହା ସତ ଯେ, ଭାରତରେ ଭ୍ରଷ୍ଟାଚାର ବଢ଼ିଛି। ୧୯୯୦ ଦଶକରେ ଆର୍ଥିକ ଉଦାରୀକରଣ ଆରମ୍ଭ ହେବା ପରେ ଏ ଦେଶରେ ନେତା, ଅପରାଧି, ବ୍ୟବସାୟୀ ଏବଂ ଦଲାଲଙ୍କ ଭିତରେ କିଛି ଅପବିତ୍ର ସଂପର୍କ ସୃଷ୍ଟି ହୋଇଛି। ଏବଂ ଏହା ବି ସତ ଭାରତରେ ଅନେକ ବଡ଼ ବଡ଼ ରାଜନୈତିକ ଦୁର୍ନୀତିରେ ଏ ଦେଶର କିଛି ରାଜନେତାମାନେ ହିଁ ସଂପୃକ୍ତ ଏବଂ ଏ ସଂପୃକ୍ତି ରାଜନୈତିକ ଛବିକୁ ବିକୃତ କରିଦେଇଛି।

ପ୍ରକୃତରେ କ'ଣ ଏ ଦେଶରେ ଭ୍ରଷ୍ଟାଚାରକୁ ଏଠାର ସାଂସଦ, ବିଧାୟକ, ଏବଂ ରାଜନୈତିକ ନେତାମାନେ କେବଳ ଜନ୍ମ ଦିଅନ୍ତି, ପାଳନ୍ତି ଏବଂ ଏଥିରୁ ଲାଭବାନ୍ ହୁଅନ୍ତି ? ଏ ପ୍ରଶ୍ନ ଏବେ ଏକ ସମ୍ବେଦନଶୀଳ ପ୍ରଶ୍ନ।

ସଂପ୍ରତି ଭ୍ରଷ୍ଟାଚାର ଏକ ସାମଗ୍ରୀକ ଘଟଣା। ଭାରତୀୟ ସମାଜର ସବୁ ସ୍ତରକୁ ଏହା ଆକ୍ରାନ୍ତ କରି ସାରିଲାଣି। ପ୍ରାୟ ସବୁ ସିନେମା ତାରକାମାନେ ସଠିକ ଆୟକର ଦିଅନ୍ତି ନାହିଁ। ଓକିଲମାନେ ମହକିଲମାନଙ୍କ ଠାରୁ ନେଇଥିବା ଫିସ୍‌କୁ ଚେକ୍ ଆକାରରେ ନିଅନ୍ତି ନାହିଁ। ବ୍ୟବସାୟୀମାନେ ଟିକସ ଫାକନ୍ତି। ଭଲ ସ୍କୁଲରେ ନିଜ ପିଲାର ନାମ ଲେଖାଇବା ପାଇଁ ମଧ୍ୟ ଶିକ୍ଷିତ ବୁଦ୍ଧିଜୀବୀମାନେ ଲକ୍ଷ ଲକ୍ଷ ଟଙ୍କା ଲାଞ୍ଚ ଦିଅନ୍ତି। ଗଣମାଧ୍ୟମର କିଛି କର୍ମକର୍ତ୍ତା ବି କ୍ଷମତାର ପାଖା ପାଖି ହେବାକୁ ଲବି କରନ୍ତି। ଅମଲାତନ୍ତ୍ରୀମାନେ ଲାଞ୍ଚ ନ ନେଲେ ଫାଇଲ ଚଲାନ୍ତି ନାହିଁ। ଏବଂ ଆନ୍ନାଙ୍କ ସ୍ଲୋଗାନ ସହ ତାଳ ଦେଇ ଯେଉଁମାନେ ଲାଞ୍ଚ ନେବେ ନାହିଁ କିମ୍ବା ଦେବେ ନାହିଁ ବୋଲି ଉତ୍‌ଫୁଲିତ ହୋଇ ଘୋଷଣା କରିଥିଲେ, ସେମାନଙ୍କ ଭିତରୁ ଅନେକ ହୁଏତ ଅତୀତରେ ଲାଞ୍ଚୁଆ ପ୍ରଶାସକ ଥିବେ କିମ୍ବା ଏବେ ମଧ୍ୟ ଲାଞ୍ଚ ନେଉଥିବେ।

ସ୍ପଷ୍ଟ କହିଲେ ସମସାମୟିକ ଏ ଭାରତୀୟ ସମାଜ ଦୁର୍ନୀତି ରୂପକ ଏକ କର୍କଟ ରୋଗରେ ଏବେ ଆକ୍ରାନ୍ତ। ସମାଜର ସବୁ ସ୍ତରରେ ଅବକ୍ଷୟ ଘଟିଛି। ଏବଂ ଯେହେତୁ ଭାରତୀୟ ରାଜନୀତିକ ଶ୍ରେଣୀ ଏଇ ସମାଜରୁ ଆସିଛି, ଏ ସମାଜର ସଂସ୍କୃତି, ଆଚାର, ବ୍ୟବହାର ଏବଂ ଗତାନୁଗତିକତା ସହ ଏମାନେ ତେଣୁ ସଂପୃକ୍ତ। ସୁତରାଂ ରାଜନେତାମାନେ ସମାଜର ଏ ଅବକ୍ଷୟରୁ ବାଦ୍ ଯାଇ ନାହାନ୍ତି। ହଁ, ଏଇଆ ହୋଇପାରେ, ଲୋକପ୍ରତିନିଧି ଏବଂ କ୍ଷମତାର ପରିଚାଳକ ଭାବେ ରାଜନୈତିକ ନେତାମାନଙ୍କ ପାଇଁ ଦୁର୍ନୀତି କରିବାର ବେଶି ସୁଯୋଗ ରହିଛି।

ଏପରି ଆର୍ଥୀକ ତଥା ସାମାଜିକ ବାତାବରଣ ଭିତରେ ଆନ୍ନା ହଜାରେଙ୍କ

ଆନ୍ଦୋଳନର ସମର୍ଥନରେ ଭାରତର ବିଭିନ୍ନ ସହରରେ ଯେଉଁ ପ୍ରଦର୍ଶନ ହେଲା, ଏହାକୁ ରାଜନୈତିକ ନେତା ବିରୋଧ ନକରି ଉତ୍ତମ ନାଗରିକ ନିର୍ମାଣ ନିମନ୍ତେ ଏକ ସାମାଜିକ ଆନ୍ଦୋଳନରେ ପରିବର୍ତ୍ତନ କରି ଦେଇଥିଲେ ଭଲ ହୋଇଥାଆନ୍ତା। କାରଣ କୌଣସି ଏକ ସମାଜରେ ସବୁ କିଛିର ପରିବର୍ତ୍ତନ ଆଇନ, ନିୟମ, ନିର୍ଦ୍ଦେଶନାମାରେ ହୋଇଯାଏ ନାହିଁ। ବରଂ ସବୁର ପରିବର୍ତ୍ତନ ପାଇଁ ଏକ ସଶକ୍ତ ସାମାଜିକ ଆନ୍ଦୋଳନ ତଥା ଅଭିଯାନ ଦରକାର ହୋଇଥାଏ।

ମଧ୍ୟଯୁଗୀୟ ଭାରତରେଏକ ଉନ୍ନତ ନାଗରିକ ଗଠନ ପାଇଁ ଅନେକ ଆନ୍ଦୋଳନ ସଂଗଠିତ ହୋଇଛି। ଭକ୍ତି ଆଂନ୍ଦୋଳନ ଠାରୁ ଆରମ୍ଭ କରି ଆର୍ଯ୍ୟ ସମାଜ, ବ୍ରାହ୍ମ ସମାଜ ପରି ଆନ୍ଦୋଳନ ଆସିଛି। ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ରାଜା ରାମମୋହନ ରାୟ ଏପରି ଅନେକ ମନିଷୀ ନାଗରିକ ସଚେତନତା ପାଇଁ ଏଇ ଆନ୍ଦୋଳନ ମାନଙ୍କରେ ପ୍ରତ୍ୟକ୍ଷ ସଂପୃକ୍ତ ହୋଇଛନ୍ତି। ଏହାକୁ ସେମାନେ କେବଳ ସାମାନ୍ୟ ଆନ୍ଦୋଳନର ରୂପ ଦେଇ ନାହାନ୍ତି। ଏହାକୁ ସେମାନେ ଏକ ଅଭିଯାନରେ ପରିଣତ କରିଦେଇଛନ୍ତି। ଏବଂ ଏଇ ଆନ୍ଦୋଳନରୁ ସୃଷ୍ଟି ହୋଇଥିବା ନାଗରିକ ସଚେତନତା ପରବର୍ତ୍ତୀ ସମୟରେ ଯେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଆଧାର ହୋଇ ଯାଇଛି, ଏହା ସତ।

ସାଂପ୍ରତିକ ବିଶ୍ୱରେ ବିକଶିତ ରାଷ୍ଟ୍ରମାନଙ୍କ ଭିତରେ ଯେଉଁ ସବୁ ନାଗରିକ ସଚେତନତା ରହିଛି, ଏଇ ସଚେତନତା ଭାରତରେ ନାହିଁ। ଅବଶ୍ୟ ଭାରତ ଯେ ଏକ ବିକଶିତ୍ ରାଷ୍ଟ୍ର, ଏହା ବର୍ତ୍ତମାନ ଏକ ବିବଦମାନ ବିଷୟ। କିନ୍ତୁ ଏହା ନିଶ୍ଚିତ ଯେ ଏକ ସୁନ୍ଦର ନାଗରିକ ନିର୍ମାଣ ପାଇଁ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ, ସାମାଜିକ କର୍ମକର୍ତ୍ତା, ରାଜନୈତିକ ଗୋଷ୍ଠୀ ଏବଂ ଏପରିକି ତଥାକଥିତ ସିଭିଲ ସମାଜ ମଧ୍ୟରେ ଯେଉଁ ଚିନ୍ତା ରହିବା କଥା ରହିନାହି।

ସୁତରାଂ ଏକ ଭ୍ରଷ୍ଟାଚାର ମୁକ୍ତ ଭାରତ ଗଠନ କରିବାର ଆନ୍ଦୋଳନ ସହ ଉନ୍ନତ ନାଗରିକଟିଏ ତିଆରି ପାଇଁ ଅଭିଯାନ ହେବା ଏବେ ଜରୁରୀ। କାରଣ ମାନସିକତାର ପରିବର୍ତ୍ତନ ନ ଆସିଲେ ଏବଂ ଜବରଦସ୍ତ ଆଇନଟିଏ କରିଦେଲେ ତାର କିଛି ଅର୍ଥ ରହିବ ନାହିଁ। ଏହା ଆନ୍ନାଙ୍କ ଜନଲୋକପାଳ ବିଲ୍ ବି ହୋଇପାରେ।



# ଡ୍ୟାମ୍

ହୀରାକୁଦ ଡ୍ୟାମ୍‌କୁ ନେଇ ସବୁଠି ଏବେ ଚର୍ଚ୍ଚା ହେଉଛି- ହୀରାକୁଦ ଯୋଗୁଁ ହିଁ ୨୦୧୧ ମସିହାରେ ଓଡ଼ିଶାରେ ପ୍ରଳୟଙ୍କରୀ ବନ୍ୟା ହୋଇଗଲା। ଅଧାରୁ ଅଧିକ ଓଡ଼ିଶା ଜଳାର୍ଣ୍ଣବ ହେଲା। ଲକ୍ଷ ଲକ୍ଷ ଲୋକ ପ୍ରଭାବିତ ହେଲେ। ହଜାର ହଜାର ଏକର ଚାଷ ଜମି ଉଜୁଡ଼ିଗଲା। କୋଟି କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହେଲା। କିଛି ଲୋକ ମୃତ୍ୟୁ ବରଣ କଲେ। ଅନେକଙ୍କ ଘର ଭାଙ୍ଗିଗଲା। ଏ ବନ୍ୟା ବି ବିପିଏଲ୍ ଏବଂ ଏପିଏଲ୍ ଭିତରେ ପ୍ରାର୍ଥକ୍ୟ ଦେଖିନଥିଲା। ସମସ୍ତେ ନଦୀବନ୍ଧ ଉପରେ ଛରି ତଳେ ଜୀବନ କାଟିଥିଲେ।

ଏ ଥିଲା ସେବର୍ଷ ବନ୍ୟା ବିଭୀଷିକାର ଦୃଶ୍ୟ। ବନ୍ୟା ହେଲେ ଏପରି ଦୃଶ୍ୟ ସ୍ୱାଭାବିକ ହୋଇଥାଏ। ଅଭିଯୋଗ କିନ୍ତୁ ହେଉଛି-୨୦୧୧ର ବନ୍ୟା କୁଆଡ଼େ ମନୁଷ୍ୟକୃତ ଥିଲା। କାରଣ ହେଉଛି ହୀରାକୁଦର ଜଳ ଧାରଣ ପରିମାଣକୁ ସଠିକ୍ ପରିଚାଳନା କରାଯାଇନଥିଲା। ରୁଲ୍ କର୍ଭ ତତ୍ତ୍ୱକୁ ଅବଜ୍ଞା କରାଯାଇଥିଲା। ଏଥିରେ ତେଣୁ ଏକ ଅପରାଧିୟ ଉଦ୍ଦେଶ୍ୟ ରହିଛି।

ବନ୍ୟା ମଣିଷକୃତ ବୋଲି ଅଭିଯୋଗ ଶୁଣିଲେ କିପରି ଏହା ଅରୁଚିକର ଲାଗୁଛି। ପ୍ରାକୃତିକ ବିପତ୍ତିକୁ ମଣିଷ ତିଆରି କରିବ ବା କାହିଁକି? କରିବ ବା କିପରି? ଭୂମିକମ୍ପ ଏବଂ ଭୂସ୍ଖଳନ କ'ଣ ମଣିଷ ଦ୍ୱାରା ସୃଷ୍ଟି ହୋଇଥାଏ? ହୋଇପାରେ, ପରିବେଶ ପ୍ରଦୂଷଣ ଯୋଗୁଁ ଯଦି ପ୍ରାକୃତିକ ବିପର୍ଯ୍ୟୟ ହେଉଛି, ଏହା ମଣିଷକୃତ।

ମଣିଷକୃତ ବନ୍ୟା ଅଭିଯୋଗ ନେଇ ପ୍ରଶାସନିକ ସଫେଇ ମଧ୍ୟ ଆସିଲାଣି। ଛତିଶଗଡ଼ରେ ଅପ୍ରତ୍ୟାଶିତ ଭାବେ ପ୍ରବଳ ବର୍ଷା ହୋଇଗଲା। ଲକ୍ଷ ଲକ୍ଷ ଘନଫୁଟ ଜଳ ହୀରାକୁଦରେ ପ୍ରବେଶ କଲା। ଏ ସବୁ ଜଳକୁ ହୀରାକୁଦ ଡ୍ୟାମରେ ଅଟକାଇ ରଖିବା ସହଜ ନଥିଲା। ହୋଇଥିଲେ, ହୀରାକୁଦ ପ୍ରତି ବିପଦ ଆସିଯାଇଥାଆନ୍ତା। ଡ୍ୟାମ ରକ୍ଷା ପାଇଁ ମହାନଦୀକୁ ତେଣୁ ପୂର୍ଣ୍ଣଗର୍ଭା କରି ଦିଆଯାଇଥିଲା। ଅନେକ ତେଣୁ ପ୍ରଶ୍ନ କଲେଣି- ଛତିଶଗଡ଼ରେ ବର୍ଷା ହେଲେ ଏଣିକି କ'ଣ ଉପକୂଳର ଲକ୍ଷ ଲକ୍ଷ ଲୋକ ଉଚ୍ଚ ସ୍ଥାନକୁ ଯିବାକୁ ପ୍ରସ୍ତୁତି ଆରମ୍ଭ କରିଦେବେ? ଏ ହୀରାକୁଦ ତେଣୁ କାହିଁକି? ଆଜକୁ ପ୍ରାୟ ୬୦ବର୍ଷ ତଳେ ହୀରାକୁଦ ଡ୍ୟାମ୍ ତିଆରି ହେବା ବେଳେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ସ୍ପଷ୍ଟ କରି ଦେଇଥିଲେ, ଏ ଦେଶକୁ ସେ ଏକ ମନ୍ଦିର ଉପହାର ଦେଉଛନ୍ତି। ଓଡ଼ିଶା ପ୍ରତି ଏହା ବରଦାନ ହେବ। ଓଡ଼ିଶାରେ ଆଉ ବନ୍ୟା ହେବନି। ମରୁଡ଼ି ହେବନି।



ବିଜୁଳି ଆଲୁଅରେ ଓଡ଼ିଶା ଝଟକି ଉଠିବ। ହୀରାକୁଦ ହେବ ବହୁମୁଖୀ ନଦୀବନ୍ଧ ଯୋଜନା। ବନ୍ୟା ନିୟନ୍ତ୍ରଣ, ଜଳସେଚନ, ବିଜୁଳି ଉତ୍ପାଦନ ଏହାର ହେବ ଉଦ୍ଦେଶ୍ୟ। ଏ ଉଦ୍ଦେଶ୍ୟକୁ ହୀରାକୁଦର ଜଳଭଣ୍ଡାର କେତେ ସଫଳ କରିପାରିଛି, ଏ ପ୍ରଶ୍ନ ତେଣୁ ହେବା ସ୍ୱାଭାବିକ।

ଏ ରାଜ୍ୟର ଜଣେ ମନ୍ତ୍ରୀ କହିଦେଲେ- ଓଡ଼ିଶାର ବନ୍ୟାକୁ ନେଇ ଭଲ ପର୍ଯ୍ୟଟନ ଶିଳ୍ପଟିଏ କରିହେବ। ତାଙ୍କ ଭାଷାରେ ଇଏ ହେବ କାଲାମିଟ୍ ଟୁରିଜିମ୍। ବନ୍ୟା ଦୃଶ୍ୟକୁ ପ୍ରଦର୍ଶନ କରି ପର୍ଯ୍ୟଟକଙ୍କୁ ଓଡ଼ିଶା ପ୍ରତି ଅକୃଷ୍ଟ କରିହେବ। ରାଜ୍ୟ ପାଇଁ ଅର୍ଥ ଉପାର୍ଜନ କରିହେବ। ଯେଉଁଠି କେବେ ବନ୍ୟା ହୁଏ ନାହିଁ, ସେ ଦେଶ ଏବଂ ରାଜ୍ୟର ପର୍ଯ୍ୟଟକ ଓଡ଼ିଶାକୁ ବନ୍ୟା ଦୃଶ୍ୟ ଦେଖିବାକୁ ଆସିବେ। ଏଇ ଯେମିତି ଇସ୍ରାଏଲ ଏବଂ ରାଜସ୍ଥାନରେ ବନ୍ୟା ହୁଏନି। ସେଠାରେ ଲୋକେ ବନ୍ୟା କ'ଣ ଜାଣି ନାହାନ୍ତି। ସେମାନେ ଓଡ଼ିଶା ଆସି ପାରନ୍ତି।

ପ୍ରକୃତରେ ବିଦେଶୀ ପର୍ଯ୍ୟଟକଙ୍କୁ ଆମେ କେଉଁ ଦୃଶ୍ୟ ଦେଖେଇବୁ। ନଦୀରେ କିପରି ଶବ ଭାସି ଯାଉଛି; ଭାସି ଯାଉଥିବା ମଣିଷଟିଏ ନିଜର ଜୀବନ ରକ୍ଷା ପାଇଁ ହାତଟେକି କିପରି ଆକୁଳ ନିବେଦନ କରୁଛି। ଏଇ ଦୃଶ୍ୟ ଦେଖେଇବୁ, ନା, ନଦୀବନ୍ଧ ଉପରେ ମଣିଷ କିପରି ନିଜ ଗୃହପାଳିତ ପଶୁ ସହ ଜୀବନଯାପନ କରୁଛି, ପଲିଥିନ୍ ତଳେ ଗର୍ଭବତୀ ସ୍ତ୍ରୀଟିଏ କିପରି ଜନ୍ମ ଯନ୍ତ୍ରଣା ପାଉଛି? ଇଏତ ସବୁ ବନ୍ୟା ଦୃଶ୍ୟ। ବିଦେଶୀ ପର୍ଯ୍ୟଟକ ନିଶ୍ଚୟ ଏଥିରୁ ଆନନ୍ଦ ପାଇବେ। ଏହାର ଚିତ୍ର ଉତ୍ତୋଳନ କରି ବିଦେଶ ବଜାରରେ ବିକ୍ରୀ କରିବେ। ବନ୍ୟା ଦୃଶ୍ୟରେ ଯଦି ଆନନ୍ଦ ରହିଛି, ପର୍ଯ୍ୟଟକଙ୍କର ଖୋରାକ ରହିଛି, ତେବେ ଆଜକୁ ଶହେ ବର୍ଷ ତଳେ ଉତ୍କଳମଣି ଗୋପବନ୍ଧୁ ଓଡ଼ିଶାର ବନ୍ୟା ପ୍ରପୀଡ଼ିତଙ୍କ ପାଇଁ ଜୀବନ ଉତ୍ସର୍ଗ କରିଦେଇଥିଲେ କାହିଁକି?

ଅବଶ୍ୟ ଭାରତର କିଛି ବଡ଼ ବଡ଼ ଡ୍ୟାମ୍‌କୁ ନେଇ ପର୍ଯ୍ୟଟନ କେନ୍ଦ୍ରମାନ କରାଯାଇଛି। ତେହେରି ଡ୍ୟାମ୍, ଭାକ୍ରାନଙ୍ଗଲ ଡ୍ୟାମ୍, ନାଗାର୍ଜୁନ ସାଗର ଏବଂ ନର୍ମଦା ଡ୍ୟାମ୍‌କୁ ଦେଖିବାକୁ ପର୍ଯ୍ୟଟକମାନେ ଯାଆନ୍ତି। ହୀରାକୁଦକୁ ଦେଖିବାକୁ ହୀରାକୁଦରେ ଗାନ୍ଧୀ ମିନାର ଏବଂ ନେହେରୁ ମିନାର ନାଁରେ ଦୁଇଟି ଟାୱାର ରହିଛି। ଏହି ଟାୱାରରୁ ୨୬ କି.ମି. ଦୈର୍ଘ୍ୟ ବିଶିଷ୍ଟ ହୀରାକୁଦକୁ ପର୍ଯ୍ୟଟକ ଦେଖିପାରୁଛନ୍ତି। କିନ୍ତୁ ବନ୍ୟା ବିଭିଷିକାର ଦୃଶ୍ୟକୁ ପ୍ରଦର୍ଶନ କରି ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବାର ଚିନ୍ତା କିପରି ଉଦ୍ଭଟ ଲାଗେ।

ନଦୀମାନଙ୍କ ଉପରେ ଡ୍ୟାମ ତିଆରି କରିବାରେ ସମଗ୍ର ପୃଥିବୀରେ ଭାରତ ହେଉଛି ଏକମାତ୍ର ଦେଶ ଯାହାକୁ ଏ କୌଶଳ ଭଲ ଭାବେ ଜଣା। ଡ୍ୟାମ୍ ନିର୍ମାତା ଭାବେ ଭାରତର ନାଁ ରହିଛି। ସ୍ୱାଧୀନତା ପରେ ବି ଏ ଦେଶରେ ଏ ପର୍ଯ୍ୟନ୍ତ ପ୍ରାୟ ତେୟାଳିଶି ଶହ ବଡ଼ ବଡ଼ ନଦୀବନ୍ଧ ଯୋଜନା ତିଆରି ହୋଇସାରିଲାଣି। ଏଥିରୁ ଅର୍ଦ୍ଧାଧିକଙ୍କର ବୟସ ୨୦ ବର୍ଷରୁ ବି ଊର୍ଦ୍ଧ୍ୱ ହୋଇଗଲାଣି ଏବଂ ଏବେ ମଧ୍ୟ ଶହ ଶହ ଡ୍ୟାମ୍ ନିର୍ମାଣାଧୀନ ଅଛି। ହୀରାକୁଦ ପରି ସବୁ ଡ୍ୟାମ୍ ତିଆରି ବେଳେ ସ୍ୱପ୍ନ ବଣ୍ଟା ଯାଇଥିଲା ଯେ ଡ୍ୟାମ୍ ହେଲେ ଏଠି ଆଉ ବନ୍ୟା ମରୁଡ଼ି ହେବନି। ବିଜୁଳି ଉତ୍ପାଦନରେ ଏ ଦେଶ ବଳକା ରାଷ୍ଟ୍ରଟିଏ ହୋଇଯିବ। କିନ୍ତୁ ପ୍ରାୟ ଚାରି ହଜାରରୁ ଅଧିକ ଡ୍ୟାମ୍ ସତ୍ତ୍ୱେ ବି ଭାରତରେ ବିଭିନ୍ନ ରାଜ୍ୟରେ ବନ୍ୟାର ପ୍ରଳୟ କମି ନାହିଁ। ମରୁଡ଼ିର ହତାଶା ଯାଉନାହିଁ। ବିଜୁଳି ପାଇଁ ଆଣବିକ କେନ୍ଦ୍ର ପ୍ରତିଷ୍ଠା ନିମନ୍ତେ ଆମେରିକା ପାଖରେ ନେହୁରା ହେବାକୁ ପଡୁଛି। ଡ୍ୟାମ୍‌ର ତେଣୁ ଆବଶ୍ୟକତା କ'ଣ ? ହୀରାକୁଦର ଦରକାର କେତେ ?

"ୱାଲଡ୍ ରିଭର୍ସ ରିଭ୍ୟୁ"ରେ ଥିବା ନଦୀ ବନ୍ଧ ଯୋଜନା ଉପରେ ଏକ ରିପୋର୍ଟ ଏବେ ଲେଖକର ନଜରକୁ ଆସିଲା। ରିପୋର୍ଟରେ ଅଛି- ପୃଥିବୀରେ ଥିବା ୧୭୭ଟି ବଡ଼ ବଡ଼ ନଦୀରେ ଜଳ ପ୍ରବାହ ମୁକ୍ତ ଭାବେ ହେଉନି। ଡ୍ୟାମ୍ ଦ୍ୱାରା ଏହାର ମୁକ୍ତ ଜଳ ପ୍ରବାହକୁ ଅଟକାଇ ନଦୀମାନଙ୍କୁ ସଙ୍କୁଚିତ କରାଯାଇଛି। ନଦୀ ପୃଥିବୀର ଏକ ଉତ୍ତମ ସଞ୍ଚାଳନ ପ୍ରକ୍ରିୟା। ଅନ୍ୟ କଥାରେ କହିଲେ ଏକ ଭଲ ସର୍କୁଲେଟରି ସିଷ୍ଟମ୍। ମଣିଷର ଏଇ ସିଷ୍ଟମ୍‌କୁ ଯଦି କେଉଁଠି ବାଧା ଆସେ, ଯେପରି ହୃଦୟ ଉପରେ ଏହାର ପ୍ରଭାବ ପଡ଼େ ଏବଂ ଜୀବନ ନଷ୍ଟ ହେବାର ଭୟ ଥାଏ, ନଦୀକୁ ଡ୍ୟାମ୍ ଦ୍ୱାରା ଅଟକାଇ ଶ୍ୱାସରୁଦ୍ଧ କରିଦେବାରେ ଏହା ସୃଷ୍ଟି ପାଇଁ ଅନୁକୂଳ ହେଉନାହିଁ।

ରିଭ୍ୟୁରେ ଏକଥା ବି ଅଛି- ନଦୀ ଉପରେ ଡ୍ୟାମ୍ ପଟୁମାଟିକୁ ରୋକୁଛି। କୃଷି ଜମିର ଉର୍ବରତାକୁ କ୍ଷତି କରୁଛି। ଜଙ୍ଗଲ ଜମି ନଷ୍ଟ କରୁଛି। ଉପକୂଳକୁ ଶୃଙ୍ଖଳା ରଖୁଛି ଏବଂ ନଦୀବନ୍ଧ ଯୋଜନା ହେତୁ ବିସ୍ଥାପନର ଦୁଃଖ ସାମାଜିକ ଅଶାନ୍ତି ସୃଷ୍ଟି କରୁଛି। 'ରିଭ୍ୟୁ'ର ସଂପାଦକ ସ୍ପଷ୍ଟ ଭାବେ ତେଣୁ କହି ଦିଅନ୍ତି- ନଦୀ ଉପରେ ଡ୍ୟାମ୍ କରିବାର ଆବଶ୍ୟକତା ନାହିଁ। ପୁରୁଣା ଡ୍ୟାମ୍‌କୁ ଭାଙ୍ଗିଦେବା ଦରକାର ହେଉଛି। ନଦୀମାନଙ୍କୁ ତାଙ୍କ ଇଚ୍ଛାରେ ମୁକ୍ତ ଭାବେ ପ୍ରବାହିତ ହେବାକୁ ସୁଯୋଗ ଦେବା ଉଚିତ୍।

'ୱାଲଡ୍ ରିଭର୍ସ ରିଭ୍ୟୁ'ର ସଂପାଦକଙ୍କ ଏପରି ମନ୍ତବ୍ୟ ପ୍ରତି ଏ ଲେଖକଙ୍କ ସମେତ ଅନେକଙ୍କର ଏବେ ହୁଏତ ସହମତି ନଆସିପାରେ। କିନ୍ତୁ ହୀରାକୁଦକୁ ନେଇ ଓଡ଼ିଶାର ବନ୍ୟା ବିପତ୍ତି ଏପରି ଲାଗି ରହିଲେ, ଭବିଷ୍ୟତରେ ହୀରାକୁଦର ପ୍ରାସଙ୍ଗିକତାକୁ ନେଇ ପ୍ରଶ୍ନ ଆସିବା ଏକ ସହଜ ପ୍ରଶ୍ନ ହୋଇଯାଇପାରେ।

ପୃଥିବୀର ଅନେକ ଡ୍ୟାମ୍‌କୁ ତ ଏବେ ଭାଙ୍ଗି ଦିଆଗଲାଣି।



# ଲୋକପାଳ କାହିଁକି ?

ପୁରା ୨୦୧୧ ମସିହା ଲୋକପାଳ ପ୍ରସଙ୍ଗ ନେଇ ଏକ ବ୍ୟସ୍ତ ବର୍ଷ ଥିଲା। ସାମାଜିକ କର୍ମୀ ଆନ୍ନା ହଜାରେ ଏଥିନେଇ ତିନି ତିନି ଥର ଅନଶନ କରିଥିଲେ। ରାସ୍ତା ଉପରେ ହଜାର ହଜାର ଲୋକଙ୍କର ଆନ୍ନା ଆନ୍ଦୋଳନ ସମର୍ଥନରେ ପ୍ରଦର୍ଶନ ଥିଲା। ଭାରତରେ ରାଜନୈତିକ ଶ୍ରେଣୀଙ୍କ ପାଇଁ ଏ ବର୍ଷ ବି ଥିଲା ବିରକ୍ତିକର ବର୍ଷ। ସଂସଦ ଏବଂ ଜନସଂସଦ ଭିତରେ ବଡ଼ କିଏ, ଏଥିନେଇ ସାଧାରଣରେ ଚର୍ଚ୍ଚା ମଧ୍ୟ ଚାଲିଥିଲା। ବିଡ଼ମ୍ବନା ଯେ, କେନ୍ଦ୍ରର ୟୁପିଏ ସାରକାରଙ୍କର ସମସ୍ତ ପ୍ରତିଶ୍ରୁତି ସତ୍ତ୍ୱେ ବି ଲୋକପାଳ ବିଲ୍ ସଂସଦର ଉଭୟ ଗୃହରେ ପାରିତ ହୋଇ ପାରିଲାନି।

ଲୋକପାଳ ବିଲ୍ ପାସ୍ ହୋଇସାରିଛି ଲୋକସଭାରେ। ରାଜ୍ୟସଭାରେ ଏହା ଅମିମାଂସିତ ଅଛି। ଶିତୁଆ ଡିସେମ୍ବର ୨୯ ତାରିଖର ମଧ୍ୟରାତ୍ରରେ ଲୋକପାଳ ନେଇ ରାଜ୍ୟସଭାରେ ଭୋଟ ନକରି କଂଗ୍ରେସ ପରିଚାଳିତ ୟୁପିଏ ସରକାର ପଳାୟନ କରିଛନ୍ତି ବୋଲି ଅଭିଯୋଗ ହେଉଛି।

ପଳାୟନ ଏବଂ ପଶ୍ଚାତ୍ ଗମନ ଭିତରେ ପାର୍ଥକ୍ୟ ଥାଏ। ପଶ୍ଚାତ୍ ଗମନକୁ ଇଂରାଜୀରେ ରିଟ୍ରିଟ୍ କହନ୍ତି। ପ୍ରାୟତଃ ଏଇ ରିଟ୍ରିଟ ବା ପଛକୁ ଫେରିଯିବା ଶବ୍ଦକୁ ଯୁଦ୍ଧ ବେଳେ ସେନା ପରିଚାଳନାରେ ବେଶି ପ୍ରୟୋଗ କରାଯାଇଥାଏ। କୁହାଯାଏ, ଜଣେ ଭଲ ଜେନେରାଲ ହିଁ କେବଳ ପଛକୁ କେମିତି ଫେରିହେବ ଜାଣିଥାଏ। ଏହା କୌଶଳର କଥା। ଆଉଥରେ ପ୍ରସ୍ତୁତି କରି ଆକ୍ରମଣ କରିବାର ପ୍ରକ୍ରିୟା। ରାଜ୍ୟସଭାରେ ସଂଖ୍ୟା ଗରିଷ୍ଠତା ନଥିବା କଂଗ୍ରେସ ଦଳ ହାରିଯିବାକୁ ପସନ୍ଦ ନକରି ପରବର୍ତ୍ତୀ ସମୟରେ ପୁଣିଥରେ ପ୍ରସ୍ତୁତ ହୋଇ ଆସିବାକୁ ରିଟ୍ରିଟ କରିଥାଇ ପାରନ୍ତି ବୋଲି ରାଜନୈତିକ ବିଶ୍ଳେଷକମାନେ ମତ ଦିଅନ୍ତି।

ଏ ଲେଖକ ଅନେକ ଥର ଏଇ ସ୍ତମ୍ଭରେ ଲୋକପାଳ କାହିଁକି ବୋଲି ପ୍ରଶ୍ନ କରିଛି। ଯଦିଓ, ଏ ଦେଶରେ ଦୁର୍ନୀତି ଏକ ଭୟଙ୍କର କର୍କଟ ରୋଗ ପରି ବ୍ୟାପି ଯାଇଛି, ତଥାପି ଏହାର ନିରାକରଣ ପାଇଁ ଯେ ଏଠି ଆଇନର ଅଭାବ ରହିଛି, ଏପରି ବିତର୍କ କାହିଁକି ଠିକ୍ ଲାଗୁ ନାହିଁ। ସତକଥା ହେଲା, ଦୁର୍ନୀତି ନିରାକରଣ ପାଇଁ ଏଠି ଅନେକ ଆଇନ ରହିଛି। ଦୁର୍ନୀତି ନିରୋଧକ ଅନେକ ସଂସ୍ଥା ଅଛି। କିନ୍ତୁ ଗୋଟିଏ ମାତ୍ର ଅଭାବ

ରହିଛି, ଏହି ଆଇନ ସବୁ ସଠିକ୍ ଭାବେ ପାଳିତ ହୋଇପାରୁନାହିଁ। ଏବଂ ଦୁର୍ନୀତି ନିରୋଧକ ସଂସ୍ଥା ସେତେ ସଶକ୍ତ ହୋଇନାହାନ୍ତି।

ଦୁର୍ନୀତି ବିରୁଦ୍ଧରେ ଲଢ଼ିବାକୁ ଦୁର୍ନୀତି ନିରୋଧକ ସଂସ୍ଥା ଭାବେ ଏଠାରେ କଂପ୍ଟ୍ରୋଲର ଏବଂ ଅଡ଼ିଟର ଜେନେରାଲ (ସିଏଜି) ଅଛନ୍ତି। ସି.ବି.ଆଇ., ସି.ଭି.ସି. ଏବଂ ସର୍ବୋପରି ନ୍ୟାୟପାଳିକା ରହିଛନ୍ତି। ସାଂବିଧାନିକ ଏବଂ ନ୍ୟାୟିକ ଅନୁଷ୍ଠାନ ଭାବେ ଏମାନଙ୍କର ବୟସ ବେଶ୍ ପୁରୁଣା। ଏମାନଙ୍କର ଭିତ୍ତିଭୂମି ଏବଂ ପରିଚାଳନାଗତ ଅନୁଭୂତି ରହିଛି। ଦୁର୍ନୀତି ବିରୁଦ୍ଧରେ ପଦକ୍ଷେପ ନେବାରେ ଏମାନେ ଯେ ପୁରା ଚୁପ୍ ହୋଇଯାଇଛନ୍ତି ତାହା ଠିକ୍ ନୁହେଁ। ଏମାନେ ବି ଚଳଚଞ୍ଚଳ ଅଛନ୍ତି। କିନ୍ତୁ ଏଇ ସବୁ ସାଂବିଧାନିକ ସଂସ୍ଥାକୁ ଆହୁରି ସଶକ୍ତ ନକରି ଲୋକପାଳ ପରି ଆଉ ଏକ ସଂସ୍ଥା ଗଠନ କରିବାରେ ଲାଭ କ'ଣ ବୋଲି ତେଣୁ ପ୍ରଶ୍ନ ହେବା ସ୍ୱାଭାବିକ।

ଯାହା ଜଣାଯାଏ, ଭାରତରେ ଦୁର୍ନୀତି ନିରାକରଣ ପାଇଁ ଗୋଟିଏ ମାତ୍ର ସୁପର ସଂସ୍ଥା ରହିବ। ସେ ହେବ ଲୋକପାଳ। ଲୋକପାଳଙ୍କ ଅଧୀନରେ ପ୍ରଧାନମନ୍ତ୍ରୀଙ୍କ ଠାରୁ ପିଅନ ଏବଂ ଏନ୍‌ଜିଓଙ୍କ ଠାରୁ ସରକାରୀ ଉଦ୍ୟୋଗରେ କାର୍ଯ୍ୟରତ କର୍ମଚାରୀମାନେ ରହିବେ। ପ୍ରକାଶ ଥାଉକି, କେନ୍ଦ୍ର, ରାଜ୍ୟ ତଥା ପବ୍ଲିକ ସେକ୍ଟରରେ କର୍ମଚାରୀଙ୍କ ସଂଖ୍ୟା ଏବେ ପ୍ରାୟ ତିନିକୋଟିରୁ ଅଧିକ। ଏମାନଙ୍କର ଦୁର୍ନୀତି ଅଭିଯୋଗର ବିଚାର ପାଇଁ ଲୋକପାଳର ଯେଉଁ କର୍ମଚାରୀ ରହିବେ ଏମାନଙ୍କର ସଂଖ୍ୟା ପଚାଶ ହଜାରରୁ ଅଧିକ ହିଁ ହେବ। ଏ ସଂଖ୍ୟାକୁ ଆନ୍ନାଟିମ୍ ବି ସ୍ୱୀକାର କରନ୍ତି। ଭାରତରେ ଲୋକପାଳ ନାଁରେ ଅନ୍ୟ ଏକ ବୃହତ୍ତ ଅମଲାତନ୍ତ୍ର ତିଆରି ହୋଇଯିବ। ଏମାନଙ୍କର ଦରମା ଏବଂ ଭତ୍ତାର ଖର୍ଚ୍ଚ ସାଧାରଣ ଟିକସ ଦାତା ଏଠି ଦେବେ। ଲୋକପାଳର ଏଇ କର୍ମଚାରୀମାନେ ଯେ ଦୁର୍ନୀତିଗ୍ରସ୍ତ ହେବେ ନାହିଁ, ଏହାର ଗ୍ୟାରେଣ୍ଟି ନାହିଁ।

ସ୍ପଷ୍ଟ କହିଲେ, କୌଣସି ନିୟନ୍ତ୍ରଣ ନଥିବା ଲୋକପାଳ ଭାରତରେ ଦିନେ ହୁଏତ ବହୁମୁଣ୍ଡ ବିଶିଷ୍ଟ ଅସୁରଟିଏ ହୋଇଯିବ। ଲୋକଙ୍କ ଦ୍ୱାରା ନିର୍ବାଚିତ ହୋଇ ନଥାଇ ବି ନିର୍ବାଚିତ ଲୋକଙ୍କୁ ଅନୁଶାସିତ କରିବ। ପ୍ରସ୍ତାବିତ ଲୋକପାଳ ଦିନେ ହୁଏତ ପ୍ରଧାନମନ୍ତ୍ରୀଙ୍କୁ ଅଭିଯୁକ୍ତ କରି ରାଜନୈତିକ ଅସ୍ଥିରତା ସୃଷ୍ଟି କରିବ। ଗଣତନ୍ତ୍ରରେ ଅନିୟନ୍ତ୍ରିତ ଲୋକପାଳଙ୍କୁ କିପରି ଭସ୍ମାସୁର ଭାବେ ଜନ୍ମ ଦିଆଯାଉଛି, ଏହା ହିଁ ଆଶ୍ଚର୍ଯ୍ୟ।

ସତକଥା ହେଲା, ଭାରତୀୟ ରାଜନୈତିକ ଶ୍ରେଣୀ ମଧ୍ୟରେ ତାଳମେଳ ରହେନାହିଁ। କିନ୍ତୁ ସିଭିଲ ସମାଜର ଆନ୍ଦୋଳନକୁ ସାମନା କରିବାକୁ ଏମାନଙ୍କର ସାହାସ ନାହିଁ। ଭୟ ଆସୁଛି, ସିଭିଲ ସମାଜ ଆନ୍ଦୋଳନକୁ ସମର୍ଥନ କରୁଥିବା ମଧ୍ୟବର୍ଗୀମାନଙ୍କର କ୍ରୋଧ କାଳେ ରାଜନେତାଙ୍କ ବିରୁଦ୍ଧରେ ଭୋଟ ବେଳେ ପ୍ରତିଫଳିତ ହୋଇପାରେ। ଭାରତର କାର୍ଯ୍ୟପାଳିକା ଏବଂ ରାଜନୀତି ସହ ଲୋକପାଳ ନାଁରେ ଅନ୍ୟ ଏକ ସୁପର

ଅମଲାତାନ୍ତ୍ରିକ ଅନୁଷ୍ଠାନ ଯେ କେତେଦୂର ଯଥାର୍ଥ, ଭାରତର ମଧ୍ୟବିତ୍ତ ଶ୍ରେଣୀ ମଧ୍ୟ ବୁଝିବା ଦରକାର।

ଲୋକପାଳ ହେଲେ ଯେ ଭାରତର ଦୁର୍ନୀତିର ସଂପୂର୍ଣ୍ଣ ନିରାକରଣ ହୋଇପାରିବ, ଏଥିନେଇ ସନ୍ଦେହ ରହିଛି। ଲୋକପାଳର ସାଂପ୍ରତିକ ପ୍ରବକ୍ତା ଖୋଦ୍ ଆନ୍ନା ହଜାରେ ବି କହନ୍ତି- ଲୋକପାଳ ହେଲେ ଭାରତରେ ଦୁର୍ନୀତି ପଚାଶରୁ ଷାଠିଏ ଭାଗ ମାତ୍ର କମିବ। ଏପରି ପରିସଂଖ୍ୟାନ ଦେବାରେ ଆନ୍ନା ନିଶ୍ଚିତ ଭୁଲ ନୁହଁନ୍ତି। କାରଣ ଯୌତୁକ ବିରୁଦ୍ଧରେ ଏଠାରେ କଠୋର ଆଇନ ଥଲେ ବି ଯୌତୁକ କମିନାହିଁ। ଘରୋଇ ହିଂସା ବିରୁଦ୍ଧରେ ଆଇନ ଥିଲେ ବି ଘରୋଇ ହିଂସା ଚାଲିଛି। ଏବଂ ହତ୍ୟାକଲେ ଫାସିଦଣ୍ଡ ମିଳିବାର ବ୍ୟବସ୍ଥା ଭାରତର ପିଙ୍ଗଳ କୋର୍ଡ଼ରେ ରହିଥିଲେ ମଧ୍ୟ ଭାରତରେ ଜଣେ ଅନ୍ୟ ଜଣଙ୍କୁ ହତ୍ୟା କରିପାରୁଛି। ସୂତରାଂ ଦୁର୍ନୀତିର ସଂପୂର୍ଣ୍ଣ ନିରାକରଣ ପାଇଁ ଯୋଗ୍ୟନଥିବା ଲୋକପାଳ ପରି ଏକ ଗଣତନ୍ତ୍ର ବିରୋଧି ଆଇନ କାହିଁକି ବୋଲି ପ୍ରଶ୍ନ କରିବା ଅଯୁକ୍ତିକ ନୁହେଁ।

ଏ ଆଲୋଚନାର ଏ ଶେଷକଥା। ଶେଷକଥା ହେଲା- ଦୁର୍ନୀତି ଏକ ମାନସିକ କଥା। ଇଚ୍ଛା, ଲୋଭ ଏବଂ ଅଭାବର ପ୍ରଶ୍ନ। ଲୋଭଗ୍ରସ୍ତ ମାନସିକତାକୁ ଯେ ଆଇନଟିଏ ନିୟନ୍ତ୍ରିତ କରିପାରିବ, ଏହା ଏକ ପ୍ରଶ୍ନବାଚୀ। ସୁତରାଂ ଦୁର୍ନୀତି ବିରୁଦ୍ଧରେ ପାଟି କରୁଥିବା ମଧ୍ୟବର୍ଗୀମାନେ ଆତ୍ମନିୟନ୍ତ୍ରିତ ହେବା ଦରକାର।

ଲୋକପାଳ ପରି ମଧ୍ୟଯୁଗୀୟ ଲେଭିଆଥାନ ଅସୁରର ଭାରତରେ ଆବଶ୍ୟକ ନାହିଁ। ପ୍ରଚଳିତ ଆଇନ ହିଁ ଦୁର୍ନୀତି ନିବାରଣ ପାଇଁ ଏଠି ଯଥେଷ୍ଟ। କେବଳ ଏହାର ସଠିକ୍ କାର୍ଯ୍ୟକାରିତାର ଏଠାରେ ଆବଶ୍ୟକତା ରହିଛି।



# ବାବୁଙ୍କ ଆଚରଣ

ଭାରତୀୟ ଅମଲାତନ୍ତ୍ରୀ ଅଧିକାରୀ, ଅନ୍ୟ କଥାରେ କହିଲେ ବାବୁମାନଙ୍କ ବିରୁଦ୍ଧରେ ଏବେ ଅଭିଯୋଗ ହେଲା, ଏ ବାବୁମାନେ ଅସଂବେଦନଶୀଳ ଏବଂ ନିଷ୍ଠୁର। ଏମାନେ ମୋଟେ ଆଉ ସାଧାରଣ ଲୋକଙ୍କ ପ୍ରତି ଦରଦୀ ନୁହଁନ୍ତି। ବ୍ରିଟିଶ ଶାସନରୁ ଧାର କରି ଆଣିଥିବା ଆମର ଏ ବାବୁ ସାମ୍ରାଜ୍ୟ ସଂପ୍ରତି ସେଇ ପୁରୁଣା ଲୁହା ଫ୍ରେମ୍ କରା କୋଠରୀ ଭିତରେ ଥିଲେ ବି ବ୍ରିଟିଶ ପଦାଧିକାରୀଙ୍କ ପରି ଶିଷ୍ଟ ତଥା ଭଦ୍ର ହୋଇପାରିନି।

ଏଇ ଯେମିତି ବହୁଚର୍ଚ୍ଚିତ ପିପିଲି ଗଣବଳାତ୍କାରରେ ଜଣେ ଅସବର୍ଣ୍ଣ ପିଡ଼ୀତାଙ୍କ ପ୍ରତି ପ୍ରଶାସନିକ ଅବହେଳା ନେଇ ସଂପ୍ରତି ଚର୍ଚ୍ଚା ଚାଲିଛି। ଖବର ଯାହା, ପିଡ଼ୀତା ପ୍ରଥମେ ଥାନାବାବୁଙ୍କ ପାଖକୁ ଯାଇଥିଲେ। ନିଜ ଉପରେ ଆକ୍ରମଣ ନେଇ ଏଫ୍.ଆଇ.ଆର୍. ଦେଇଥିଲେ। ଅଥଚ ଥାନାବାବୁ ପିଡ଼ୀତାଙ୍କର ଆପତ୍ତି ଫର୍ଦ୍ଦ ରଖିନଥିଲେ।

ପ୍ରଶ୍ନ ଏଠି ଜଣେ ସବର୍ଣ୍ଣ ବା ଅସବର୍ଣ୍ଣ ମହିଳାଙ୍କ କଥା ନୁହେଁ। ଏହା ଏକ ଅସହାୟ ପିଡ଼ୀତା ମହିଳାଙ୍କର କଥା। ଯନ୍ତ୍ରଣା ପାଉଥିବା ବ୍ୟକ୍ତିଙ୍କୁ ଅନୁକଂପା ଦେଖାଇ ଯନ୍ତ୍ରଣା ଉପସମ ମଲମ ବୋଳି ଦେବାର ମାନସିକତାକୁ ସଂଭବତଃ ଆମ ବାବୁମାନେ ଭୁଲିଗଲେଣି।

ଧର୍ଷଣ ପିଡ଼ୀତାଙ୍କ ପ୍ରତି ସେଇ ଏକା କଥା ବି ହେଲା କୁଆଡ଼େ ଡ଼ାକ୍ତରଖାନାରେ। ଡ଼ାକ୍ତରମାନେ ଦଳିତ ଯୁବତୀଙ୍କ ଦୁଃଖ ବୁଝିଲେନି। ଚିକିତ୍ସା ପାଇଥିଲେ ପିଡ଼ୀତା ଅନେକ ଦିନ କୋମାରେ ରହି ମୃତ୍ୟୁବରଣ କରିନଥାନ୍ତା।

ପୋଲିସ ଏବଂ ଡ଼ାକ୍ତରଙ୍କ ନିଷ୍ଠୁରତା ଯଦି ସତ ହୋଇଥାଏ, ଏହା ସାଂଘାତିକ। ଭାରତୀୟ ବାବୁମାନଙ୍କର ଆଚରଣରେ ନିଶ୍ଚୟ ଏହା ଏକ କଳାଦାଗ। ଅବଶ୍ୟ ଏ ସବୁ ଉପରେ ସଂପ୍ରତି ନ୍ୟାୟିକ ବିଚାର ଚାଲିଛି।

କେବଳ ପିପିଲି ଘଟଣା ନୁହେଁ। ସାଧାରଣ ଲୋକଙ୍କ ପ୍ରତି ଅମଲାତନ୍ତ୍ରୀ ବାବୁମାନଙ୍କ ଆଚରଣ ନେଇ ଏପରି ଅନେକ ଉଦାହରଣ ଭାରତ ସାରା ଦେଖିବାକୁ ମିଳେ। ପ୍ରଶ୍ନ ଆସେ, ଇଏ କି ସିଭିଲ୍ ସର୍ଭାଣ୍ଟ। ଏମାନେ ସର୍ଭାଣ୍ଟ ହୋଇପାରନ୍ତି। ସିଭିଲ କିନ୍ତୁ ନୁହଁନ୍ତି। ଏମାନଙ୍କ ଗଣତାନ୍ତ୍ରିକକରଣ ହୋଇଥାଇପାରେ। କିନ୍ତୁ ସାଧାରଣ

ଲୋକଙ୍କ ପ୍ରତି ଯେଉଁ ସଂବେଦନଶୀଳତା ବା ସେନ୍‌ସିଟାଇଜେସନ୍ ରହିବା କଥା ତାହା ଏମାନଙ୍କ ପାଖରେ ନାହିଁ।

ଏଇ ଆଲୋଚନାର ଆରମ୍ଭରେ ଏ ଲେଖକ ଭାରତୀୟ ଅମଲାତନ୍ତ୍ରକୁ ବ୍ରିଟିଶ ଅମଲାତନ୍ତ୍ରର ଏକ ସଂପ୍ରସାରଣ ବୋଲି କହିଥିଲା। କିନ୍ତୁ ଦୁର୍ଭାଗ୍ୟ ଯେ, ଏହା ବ୍ରିଟିଶ ସଂପ୍ରସାରିତ ଅମଲାତନ୍ତ୍ର ହେଲେ ବି ଏଥିରେ ବ୍ରିଟିଶ ବାବୁମାନଙ୍କର ଶିଷ୍ଟ ଆଚରଣ ନାହିଁ।

୧୯୧୩ ମସିହାରେ ରାଞ୍ଚି ସରକାରୀ ଛାପାଖାନା ବ୍ରିଟିଶ ଶାସନରେ ଥିବା ଇଂରେଜୀ ବାବୁମାନଙ୍କ ଆଚରଣ ନେଇ ଏକ ନିର୍ଦ୍ଦେଶାବଳୀ ଛାପିଥିଲା। ଏ ନିର୍ଦ୍ଦେଶାବଳୀରେ କେନ୍ଦ୍ରୀୟ ଭାରତରେ ଥିବା ଯୁବ ଇଂରେଜ ଅଫିସରଙ୍କ ପ୍ରତି ଗଭର୍ଣ୍ଣର ଜେନେରାଲଙ୍କ ସଂଦେଶ ଦେଇଥିଲେ। ଭାରତୀୟ ଲୋକଙ୍କୁ ସାମନା କଲାବେଳେ ଅଫିସରମାନେ କିପରି ଭଦ୍ର ଏବଂ ଶିଷ୍ଟାଚାର ଯୁକ୍ତ ରହିବେ, ଏକଥା ସରକାରୀ ନିର୍ଦ୍ଦେଶାବଳୀରେ ଥିଲା। ସେଇ ନିୟମାବଳୀର କିଛି ଅଂଶ ଏ ଆଲୋଚନାରେ ଏଇଠି ଏ ଲେଖକ ଉଦ୍ଧୃତ କରିବାକୁ ଚାହେଁ।

ବଡ଼ଲାଟ୍‌ଙ୍କ ତାଗିଦ୍ ଥିଲା- ଇଂରେଜ ଅଫିସରମାନେ ସ୍ଥାନୀୟ ଭାଷା ଶିଖିବେ। ପ୍ରଥାକୁ ଆପଣେଇବେ। ପରିବେଶ ସହ ନିଜକୁ ଖାପ ଖୁଆଇବେ।

ସାଧାରଣ ଲୋକଙ୍କ ଆପତ୍ତି ଶୁଣିବା ବେଳେ ପଦାଧିକାରୀ ଅସହିଷ୍ଣୁ ହେବେନି। କଥା ଉପରେ କଥା କହିବେନି। ପୂରା କଥା ଶୁଣିବାକୁ ଚେଷ୍ଟା କରିବେ। ଅଙ୍ଗୁଳି ନିର୍ଦ୍ଦେଶ କରି ଆପତ୍ତିକାରୀଙ୍କୁ କିଛି ନିର୍ଦ୍ଦେଶ ଦେବେନି। ମହିଳାଙ୍କ କଥା ଶୁଣିଲା ବେଳେ ବାବୁ ଜଣକ ବେଶ୍ ସତର୍କ ରହିବେ। ମହିଳାଙ୍କ ସହ ପରିହାସ ହେବେନି। ଏବଂ ଅଫିସରଙ୍କ ବିନା ଅନୁମତିରେ ପିଅନ ବା ପି.ଏ. ସାକ୍ଷାତ ପାଇଁ ଆସିଥିବା ବ୍ୟକ୍ତିକୁ ଫେରାଇ ଦେବେ ନାହିଁ।

ପିଅନ ଠାରୁ ସରକାରୀ ବାବୁଙ୍କ ପର୍ଯ୍ୟନ୍ତ ଲାଞ୍ଚ ବା କୌଣସି ଟିପସ୍ ନେବା ଥିଲା ମନା। ଅନେକ ଖର୍ଚ୍ଚ କରି ଏବଂ ଯାତ୍ରାର ଯନ୍ତ୍ରଣା ନେଇ ବାବୁଙ୍କ ଦେଖା କରିବାକୁ ଆସିଥିବା ବ୍ୟକ୍ତିକୁ ସାକ୍ଷାତ ନଦେଇ ଫେରାଇ ଦେବାକୁ କେବଳ ଏକ ଅସଦାଚରଣ ଭାବେ ଗଣା ନଯାଇ ଏହାକୁ ଏକ ଅପରାଧିୟ ଆଚରଣ ଭାବେ ଗ୍ରହଣ କରିବାକୁ ବ୍ରିଟିଶ ପଦାଧିକାରୀଙ୍କୁ ସୂଚାଇ ଦିଆଯାଇଥିଲା।

ଇଂରେଜ ଅଫିସରଙ୍କ ପାଇଁ ଆଚରଣ ବିଧି ଥିଲା ବାସ୍ତବରେ ଅନନ୍ୟ। କୌଣସି ତଳ କର୍ମଚାରୀକୁ ସଂବୋଧନ କଲାବେଳେ ଉଚ୍ଚ ପଦାଧିକାରୀ ମିଷ୍ଟର କିମ୍ବା ମିସେସ୍ କହୁଥିଲେ। ବୟସ୍କ କର୍ମଚାରୀଙ୍କ ପ୍ରତି ସମ୍ମାନ ରଖୁଥିଲେ। ଦପ୍ତରର ସବୁ କର୍ମଚାରୀଙ୍କ

ନାଁ ସେ ମନେ ରଖୁଥିଲେ।  ବ୍ୟକ୍ତିଗତ 'ଇଗୋ' ବା ଅହଂ ଉପରେ ମାତ୍ରାଧିକ ଆକର୍ଷଣ ରହିଲେ ତଳ ପଦାଧିକାରୀଙ୍କ ପ୍ରତି କ୍ରୋଧ ଆସିବ ବୋଲି ଏହାକୁ ବଡ଼ ଇଂରେଜୀ ପଦାଧିକାରୀଙ୍କୁ  ପ୍ରଶିକ୍ଷଣ ଦେବାବେଳେ ସତର୍କ କରାଇ ଦିଆଯାଇଥିଲା।

ସାଂପ୍ରତିକ ଭାରତୀୟ ଅମଲାତନ୍ତ୍ରରେ ଥିବା ମୂଳ ସ୍ଥିତି ଏବେ ନିଆରା। ବାବୁ ସାମ୍ରାଜ୍ୟକୁ ପ୍ରଭୂତ୍ୱବାଦ ଆଚ୍ଛାଦିତ କରି ରଖିଛି। ଶାସକ ଏବଂ ଶାସିତର ଏକ ଭ୍ରମ ଏହା ସୃଷ୍ଟି କରିଛି।

ଭାରତୀୟ ବାବୁଙ୍କୁ ସାକ୍ଷାତ କରିବାକୁ ଗଲେ ଏବେ ଘଣ୍ଟା ଘଣ୍ଟା ଅପେକ୍ଷା କରିବାକୁ ପଡ଼େ। ଦୁଆର ଆଗରେ ନାଲିବତୀ ଜଳାଇ ବାବୁ ବ୍ୟସ୍ତ ଅଛନ୍ତି ବୋଲି ସୂଚନା ମିଳେ। ପ୍ରକୃତରେ ବାବୁ କିନ୍ତୁ ବ୍ୟସ୍ତ ନଥାନ୍ତି।  ନିଜ କଂପ୍ୟୁଟରରେ ଏକାକୀ ସେ ବସି ଗେମ୍ ଖେଳୁଥାଆନ୍ତି। କିମ୍ବା ରଂଗୀନ ମାଗାଜିନର ପୃଷ୍ଠା ଓଲଟାଉ ଥାଆନ୍ତି ଅଥବା ଫୋନ୍‌ରେ କାହା ସହ ମନଖୋଲି ଗପୁ ଥାଆନ୍ତି। ଅନେକ ସମୟରେ ଏପରି ବି ହୁଏ, ଟେବୁଲ ଆରପଟେ ସାମନାରେ ଛିଡ଼ା ହୋଇ ଆପତ୍ତି କରୁଥିବା ବ୍ୟକ୍ତିର କଥା ନଶୁଣି ବାବୁ ଜଣକ ନିଜ ମୋବାଇଲରେ କାହାକୁ ଏସ୍.ଏମ୍.ଏସ୍. ଦେଉଥାଆନ୍ତି।

ବାବୁଙ୍କ ଅନୁମତି ନନେଇ କୌଣସି ସାକ୍ଷାତକାରୀକୁ ବାଟରୁ ଫେରାଇ ଦେବା ବର୍ତ୍ତମାନର ବାବୁମାନଙ୍କ ପି.ଏ. ଏବଂ ପିଅନମାନଙ୍କର ଏକ ସାଧାରଣ ଆଚରଣ। ରେସିଡ଼େନ୍‌ସରେ ଦେଖା କରିବାକୁ ଗଲେ ତ ଭିତରୁ ଖବର ଆସେ, ବାବୁ ବାଥ୍ ରୁମ୍‌ରେ ଅଛନ୍ତି କିମ୍ବା ପୂଜାରେ ବସିଛନ୍ତି। ସଂବୋଧନରେ ମିଷ୍ଟର କିମ୍ବା ମିସେସ୍ ନ ଯୋଡ଼ି କାହାକୁ ନାଁ ଧରି ଡ଼ାକିବା ବର୍ତ୍ତମାନର ଅମଲାତନ୍ତ୍ରରେ ସ୍ୱାଭାବିକ ଧାରା। ବୟସର କିଛି ବାଛ ବିଚାର ଏବେ ନାହିଁ।

ହଁ ପାଠକ ବନ୍ଧୁ! ଏହା ସତ ଯେ, ସ୍ୱାଧୀନତା ପରେ ଏଠି ଆମେ ଏକ ସଂବେଦନଶୀଳ ତଥା ପ୍ରତିଶ୍ରୁତିବଦ୍ଧ ଅମଲାତନ୍ତ୍ର ଚାହିଁଥିଲୁ। ସାଧାରଣ ଜନତାର ଟିକସରୁ ଦରମା ନେଇ ପରିବାର ପାଳୁଥିବା ଏବଂ ଅୟସ କରୁଥିବା ଅମଲାତନ୍ତ୍ର ଯେ "ଆମ୍ ଆଦମୀ" ପ୍ରତି ଏତେ ନିଷ୍ଠୁର ହେବ, ଏହା ଚାହିଁ ନଥିଲୁ।

ସତକଥା ହେଲା, ଭଲ ଆଚରଣ ଦେଖାଇବା ଭୁଲ କଥା ନୁହେଁ କିମ୍ବା ଏହା ଅନୁକଂପା ବି ଅନୁଗ୍ରହ ନୁହେଁ। ଅମାପ ସୁବିଧା ପାଉଥିବା ଭାରତୀୟ ବାବୁ ତେଣୁ ତା'ର କର୍ତ୍ତବ୍ୟ କରିବା ଉଚିତ୍।

ନଚେତ୍ ଏ ବାବୁ ସାମ୍ରାଜ୍ୟ ଭାଙ୍ଗିଯିବାକୁ ବେଶି ସମୟ ଲାଗିବନି।



# ନିର୍ବାଚନ ଓ ଗଣତନ୍ତ୍ର

ଏବେ ସାଧାରଣରେ ପ୍ରଶ୍ନଟିଏ ଆସିଲାଣି- କେବଳ ନିର୍ବାଚନ କ'ଣ ଗଣତନ୍ତ୍ର ? ଅବଶ୍ୟ ଏ ପ୍ରଶ୍ନର ଉତ୍ତର ବହୁତ କଷ୍ଟ। ତଥାପି ଏହା ସତ ଯେ, ଗଣତନ୍ତ୍ରରେ ନିର୍ବାଚନ ଏତେ ଗୁରୁତ୍ୱପୂର୍ଣ୍ଣ ଯେ, ନିର୍ବାଚନକୁ ବାଦ୍ ଦେଇ ଗଣତନ୍ତ୍ରର କଳ୍ପନା କରି ହୁଏନି। ସେଇଥିପାଇଁ କୁହାଯାଏ, ନିର୍ବାଚନ ହେଉଛି ଗଣତନ୍ତ୍ରର ସର୍ବଶେଷ ଏବଂ ସର୍ବୋତ୍କୃଷ୍ଟ ଉପକରଣ।

କିନ୍ତୁ ଅନ୍ୟ ଏକ ମତ ଆସେ- ଲୋକଙ୍କ ଦ୍ୱାରା ଲୋକଶାସନ ପ୍ରତିଷ୍ଠା ପାଇଁ ନିର୍ବାଚନ ଶେଷ ଉତ୍କୃଷ୍ଟ ପନ୍ଥା ନୁହେଁ। ଅନେକ ସମୟରେ ଏହା ନକଲି ଲାଗେ। ହାତ ସଫେଇ କରି ଏହାକୁ ଏକତରଫା କରାଯାଏ। ଏଇ ଯେମିତି ଏକଛତ୍ରବାଦୀ ଏବଂ ସାମ୍ୟବାଦୀ ଦେଶମାନଙ୍କରେ ହେଉଛି। ସେଠି ମଧ୍ୟ ଶାସନ ପାଇଁ ପ୍ରତିନିଧି ନିର୍ବାଚନ ମାଧ୍ୟମରେ ଆସନ୍ତି। ନିର୍ବାଚିତ ପ୍ରତିନିଧି ୯୮ରୁ ୯୯ ପ୍ରତିଶତ ଭୋଟ ପାଇଥାଏ। ଏବେ ପୂର୍ବତନ ସୋଭିଏତ ରୁଷର ରାଷ୍ଟ୍ରମାନଙ୍କରେ ଯେଉଁ ନିର୍ବାଚନ ହେଉଛି, ତାର ପରିଣତି ଠିକ୍ ଏଇଆ। ସୁତରାଂ ଗଣତନ୍ତ୍ର ପାଇଁ ନିର୍ବାଚନ ଯେତିକି ଶୁଭଙ୍କର, ନକଲି ନିର୍ବାଚନ ସେତିକି ଅଶୁଭଙ୍କର।

ଭାରତର ପ୍ରତି ନିର୍ବାଚନ ଶେଷରେ ଅଭିଯୋଗ ହୁଏ- ନିର୍ବାଚନ ଏଠି ଠିକ୍ ଭାବେ ହେଲାନାହିଁ। ଜାତି, ଧର୍ମ, ଭାଷା ଏବଂ ଆଞ୍ଚଳିକ ସଂକୀର୍ଣ୍ଣତାକୁ ନେଇ ନିର୍ବାଚନ ହେଲା। ଅର୍ଥବଳ ଏବଂ ବାହୁବଳ ପ୍ରୟୋଗ କରି ନିର୍ବାଚନ ଜିତାଗଲା। ଏହା ଗଣତନ୍ତ୍ର ପ୍ରତି ଉପହାସ।

ଓଡ଼ିଶାରେ ଗତ ପଞ୍ଚାୟତ ନିର୍ବାଚନ ନେଇ ମଧ୍ୟ ଅଭିଯୋଗ ଆସିଥିଲା। ଏହି ଅଭିଯୋଗ ହେଲା- ପଞ୍ଚାୟତ ନିର୍ବାଚନରେ ଶାସକ ଦଳର ଏ ଅଭୁତପୂର୍ବ ବିଜୟ, ଅନ୍ୟ କଥାରେ କହିଲେ କ୍ଲିନ୍ ସୁଇପ୍ ମୋଟେ ନିରପେକ୍ଷ ଏବଂ ସ୍ୱଚ୍ଛ ନୁହେଁ। କ୍ଷମତାବଳ, ବାହୁବଳ ଏବଂ ଅର୍ଥବଳ ପ୍ରୟୋଗ କରି ଭୋଟରଙ୍କୁ ପ୍ରଲୋଭିତ କରାଯାଇଛି। କିଛି ଅସାଧୁ ଅମଲା, ପୋଲିସ, ଠିକାଦାର, ନିର୍ବାଚନ ଦଲାଲ ଏବଂ ସ୍ୱାର୍ଥାନ୍ୱେଷୀ କର୍ପୋରେଟ୍ ହାଉସ୍, ନିର୍ବାଚନରେ ଶାସକ ଦଳକୁ ସାହାଯ୍ୟ କରିଛନ୍ତି। ଏସବୁ ହୋଇଛି, କାରଣ ଶାସକ ଦଳ ଏଠି ଦୀର୍ଘଦିନ ଶାସନରେ ରହିଛି। ଏବଂ ନିଜ ପାଇଁ କିଛି ପ୍ରତିଶ୍ରୁତିବଦ୍ଧ

କମିଟେଡ୍ ଗୋଷ୍ଠୀ ତିଆରି କରି ପାରିଛି । କିନ୍ତୁ ଏପରି ଅଭିଯୋଗ କରି ଦୀର୍ଘ ୧୨ ବର୍ଷର ବିଜେଡ଼ି ଶାସନର ବିକାଶର ଧାରାକୁ ଯେ ବିରୋଧି ଦଳ ଅପମାନିତ କରୁଛନ୍ତି, ଏପରି ସଫେଇ ମଧ୍ୟ ଶାସକ ଦଳରୁ ହୁଏ।

ଅଭିଯୋଗ ଏବଂ ଉତ୍ତର ଯାହା ହେଉନା କାହିଁକି, ଓଡ଼ିଶାରେ ଏଠି ଏକ ନିର୍ବାଚନ ଶେଷରେ ଯେ ସାମ୍ବିଧାନିକ ସ୍ଥାନୀୟ ଗଣତନ୍ତ୍ରର ପ୍ରତିଷ୍ଠା ହୋଇସାରିଛି ଏହା ସ୍ୱୀକାର୍ଯ୍ୟ। ନିର୍ବାଚନରେ ସ୍ୱଚ୍ଛତା ଏବଂ ଅସ୍ୱଚ୍ଛତା ଏକ ଭିନ୍ନ ପ୍ରସଙ୍ଗ।

ଗତ ସ୍ତମ୍ଭରେ ଏ ଲେଖକ ଏଠି ଲେଖିଥିଲା- ଭାରତରେ ନିର୍ବାଚନ ଆସିଲେ ସବୁ ସମତଳ ହୋଇଯାଏ। ଜାତି, ଧର୍ମ, ଆଞ୍ଚଳିକତାର ବାଛ ବିଚାର ରହେନାହିଁ। ଗରିବ ଦଳିତ ଲୋକର ନୁଆଁଣିଆ ପିଣ୍ଡା ନଥିବା ଚାଳଘର ଦୁଆରେ ବସି ନେତାଟି, ପଖାଳ ଖାଏ। ଲଙ୍ଗଳା ପିଲାଟିକୁ ତାର ଗେଲ କରେ। ଅଥଚ ସେଇ ନେତା ବି ଅନେକ ସମୟରେ ଜାତି, ଧର୍ମକୁ ଆଧାର କରି ଭୋଟ ମାଗେ। ଏହାକୁ ନେଇ ସେ ଭୋଟବ୍ୟାଙ୍କ ସୃଷ୍ଟି କରେ। ପଚାରିଲେ ଉତ୍ତର ଦିଏ, ଯୁଦ୍ଧ ଏବଂ ପ୍ରେମରେ କିଛି ଧାରାବାହିକ ନିୟମ ନଥାଏ। ନିର୍ବାଚନ ଯୁଦ୍ଧ ଜିତିଲେ ତ କ୍ଷମତା ଆସିବ। ଉପାୟ ଯାହା ହେଉନା କାହିଁକି ?

ଗତ ଉତ୍ତର ପ୍ରଦେଶ ବିଧାନସଭା ନିର୍ବାଚନରେ ପ୍ରଚାର ବେଳେ କଂଗ୍ରେସର ଯୁବନେତା ରାହୁଲ ଗାନ୍ଧୀ କହିଦେଲେ- ସାମ୍‌ପିତ୍ରୋଡ଼ା ଜାତିରେ ଜଣେ ବଢ଼େଇ। ସେ ଜଣେ ଓବିସି।

ଏମିତି ଉକ୍ତି ନେଇ ଏବେ ବିତର୍କ ଆରମ୍ଭ ହୋଇଯାଇଛି। ବିରୋଧିମାନେ କହିଲେଣି- ରାହୁଲଙ୍କୁ ସାମପିତ୍ରୋଡ଼ାଙ୍କର ଜାତି ସଂପର୍କରେ କହିବାର କ'ଣ ଥିଲା ? ନିଜକୁ ଆଧୁନିକ ବୋଲି ଦାବି କରୁଥିବା ଏ ଦେଶର ଭାବି ପ୍ରଧାନମନ୍ତ୍ରୀଙ୍କ ପାଇଁ ଏ ଶୋଭା ଦେଖାଯାଉନାହିଁ। ଭୋଟ ଜିତିବା ପାଇଁ ଯେ କୌଣସି ଦଳ ଏବଂ ନେତା ଯେକୌଣସି ଉପାୟ ବି ଗ୍ରହଣ କରିପାରେ। ଏଠି ପ୍ରତିଷ୍ଠିତ ଆଦର୍ଶର କିଛି ମାନେ ନାହିଁ। କିନ୍ତୁ ନିଜର ଅଧ୍ୟବସାୟ ବଳରେ ସାମପିତ୍ରୋଡ଼ା ଯଦି ନିଜ ଜାତିର ପ୍ରତିବନ୍ଧକକୁ ଅତିକ୍ରମ କରି ପ୍ରଯୁକ୍ତି ଏବଂ ଔଦ୍ୟୋଗିକ ବିଦ୍ୟାର ଶୀର୍ଷକୁ ଉଠିଥାଇ ପାରନ୍ତି ଏବଂ ଏଇକଥା କହିବାକୁ ରାହୁଲ ଚାହିଁ ଥାଆନ୍ତି, ଏହା ତାଙ୍କର ଏକ ସକରାତ୍ମକ ଇଚ୍ଛା ହୋଇପାରେ।

ଏହା ସ୍ୱୀକାର୍ଯ୍ୟ ଯେ, ଜାତି ଧର୍ମ ପରି ଆବେଗିକ ପ୍ରସଙ୍ଗକୁ ବାଦ ଦେଇ ଆଉ ନିର୍ବାଚନ ହେଉ ନାହିଁ। ଟଙ୍କା, ଗୁଣ୍ଡା, ଭୋଜିଭାତ ବିନା ନିର୍ବାଚନ ପ୍ରଚାରର ଚିନ୍ତା କରି ହେଉନି।

ସେଇଥିପାଇଁ କୁହାଯାଉଛି- ତାତ୍ତ୍ୱିକ ଭାବେ ନିର୍ବାଚନ ଏଠି ଶୁଦ୍ଧ ନୁହେଁ। ଗଣତନ୍ତ୍ର ତେଣୁ ସେଥିପାଇଁ ଅଶୁଦ୍ଧ। କାରଣ ଉଭୟେ ଗଣତନ୍ତ୍ର ଏବଂ ନିର୍ବାଚନ ପରସ୍ପର ସହ ନିବିଡ଼ ଭାବେ ସଂଶ୍ଲିଷ୍ଟ। ଜଣଙ୍କର ଶୁଦ୍ଧତା ଏବଂ ଅଶୁଦ୍ଧତାକୁ ନେଇ ଅନ୍ୟଟି ପ୍ରଭାବିତ ହୁଏ।

ହଁ ପାଠକ ବନ୍ଧୁ! ଏ ପ୍ରଶ୍ନ ମଧ୍ୟ ଆସେ, ଯଦି ଗଣତନ୍ତ୍ର ପ୍ରତିଷ୍ଠା ପାଇଁ କେବଳ ନିର୍ବାଚନ ଯଥେଷ୍ଟ ଦରକାରୀ ନୁହେଁ, ତେବେ ନିର୍ବାଚନର ବିକଳ୍ପ କ'ଣ? ଏ ପ୍ରଶ୍ନର ଉତ୍ତର ଆସୁଛି- ନିର୍ବାଚନର ବିକଳ୍ପ ହେଉଛି ଭାଗିଦାରୀ ଗଣତନ୍ତ୍ର- ପାଟିସିପାଟରି ଡେ଼ମୋକ୍ରାସି। ସଂସଦ ବଦଳରେ ଜନସଂସଦ। ଜନସଂସଦର ସ୍ୱରୂପ ହେଲା, ରାସ୍ତା ଉପରେ ଲୋକେ ଭିଡ଼ ଜମାଇ ନିଷ୍ପତ୍ତି ନେବେ- ଏ ଦେଶର ଆଇନ କ'ଣ ହେବ। ନୀତି ଏବଂ ବିକାଶର ଧାରା କ'ଣ ହେବ। ଏବଂ ଯଦିଓ କିଛି ପ୍ରତିନିଧି ନିର୍ବାଚିତ ହେବେ, ଏମାନେ ଲୋକଙ୍କ ଦ୍ୱାରା କିପରି ନିୟନ୍ତ୍ରିତ ହେବେ ଏବଂ ଲୋକଙ୍କ ପାଖରେ ଏମାନଙ୍କୁ ପ୍ରତ୍ୟାହାର କରିବାର କ୍ଷମତା କିପରି ରହିବ।

ସତକଥା ହେଲା ଏସବୁ ଶୁଣିବାକୁ ଭଲ ଲାଗେ। ପ୍ରୟୋଗ ଏହାର ଅସମ୍ଭବ। ଲକ୍ଷ ଲକ୍ଷ ଲୋକଙ୍କୁ ନେଇ ସୃଷ୍ଟି ହେଉଥିବା ଭିଡ଼ ଏବଂ କ୍ରାଉଡ୍‌ର ଚରିତ୍ର ମାପିବା କଷ୍ଟ। ଜର୍ମାନୀର ଗ୍ରୀନ ପାର୍ଟି ଭାଗିଦାରୀ ଗଣତନ୍ତ୍ର ଏବଂ ନିର୍ବାଚନ ବିରୁଦ୍ଧରେ ଆନ୍ଦୋଳନ କରି ଏବେ ସେଠି ସେ ନିଜେ ନିର୍ବାଚନରେ ଭାଗନେଇ ସାରିଲେଣି।

ଏ ଲେଖକ କିନ୍ତୁ ନିର୍ବାଚନକୁ ଗଣତନ୍ତ୍ରର ଏକ ଉତ୍କୃଷ୍ଟ ଆୟୁଧ ଭାବେ ବିବେଚନା କରେ। ଏହାକୁ ଏକ ପବିତ୍ର ମାଧ୍ୟମ ଭାବେ ଗଣେ। ଏବଂ ନିର୍ବାଚନରେ ଯେତିକି ତ୍ରୁଟି ଦେଖାଦେଉଛି ଏହା ଯେତିକି ପଦ୍ଧତିଗତ ତ୍ରୁଟି ସେତିକି ବି କୁତ୍ସିତ ବ୍ୟକ୍ତିଗତ ତ୍ରୁଟି ବୋଲି ଗ୍ରହଣ କରେ।

ସୁତରାଂ ଶହେ କୋଡ଼ିଏ କୋଟିର ବିଶାଳ ଭାରତୀୟ ଗଣତନ୍ତ୍ରର ସ୍ଥାୟିତ୍ୱ ପାଇଁ ଏ ନିର୍ବାଚନ ରହୁ। ନିର୍ବାଚନରେ କିନ୍ତୁ ସଂସ୍କାର ଆସୁ। ନିର୍ବାଚନ ଜିତି କ୍ଷମତା ଦଖଲ ପାଇଁ ତଣ୍ଟିକଟା ପ୍ରତିଯୋଗିତା କରୁଥିବା ନେତା ଏବଂ ରାଜନୈତିକ ଦଳ ନିଜ ଘୋଷିତ ଆଦର୍ଶ ପ୍ରତି ନିଷ୍ଠାବାନ୍ ହୁଅନ୍ତୁ। ଏବଂ ସାଧାରଣ ଭୋଟର ବି ନିଜ ଭୋଟ ଦାନକୁ ଏକ ପବିତ୍ର କର୍ତ୍ତବ୍ୟ ବୋଲି ଭାବୁ। ନିର୍ବାଚନକୁ ନେଇ ଉଭୟ ପଦ୍ଧତି ଏବଂ ବ୍ୟକ୍ତିଗତ ମାନସିକତାରେ ପରିବର୍ତ୍ତନ ଆସୁ।

ଏବଂ ଅସଲ କଥା ହେଲା, ନିର୍ବାଚନରେ କେବେ ହାରିବା ନଥାଏ। କେବଳ ଯାହା ଅନ୍ୟ ଏକ ନିର୍ବାଚନକୁ ଅପେକ୍ଷା କରିବା ଥାଏ। ନେକ୍ସ୍‌ଟ୍ ଟାଇମ୍ ...



# ଶିଶୁ ଓ ନଗ୍ନତା

ଦୁର୍ଭାଗ୍ୟ ଯେ, ଆମ ଜାଣତରେ ଆମେ ଆମ ଶିଶୁମାନଙ୍କର ଯୌନକରଣ କରୁଛୁ। ଅନ୍ୟ ଭାଷାରେ ଏହା ସେକ୍ସୁଆଲାଇଜେସନ୍ ଅଫ୍ ଚାଇଲଡ୍ ଏବଂ ସବୁଠାରୁ ବଡ଼ ଦୁର୍ଭାଗ୍ୟ ହେଉଛି, ପିଲାମାନଙ୍କର ଏଇ ଯୌନକରଣକୁ ଆମେ ସବୁ ଦେଖୁଛୁ; ସହ୍ୟ କରୁଛୁ ଏବଂ ଉପଭୋଗ କରୁଛୁ। ନିଜ ପିଲାଙ୍କୁ ଅର୍ଦ୍ଧନଗ୍ନ କରି କୌଣସି ଏକ ପ୍ରତିଯୋଗୀତାକୁ ପଠାଇ ଦେଇ ଯଦି କିଏ ବେଶି ଖୁସି ହେଉଛି ସେ ହେଉଛନ୍ତି ପିଲାର ଅଭିଭାବକ। ଯୁବ ବାପ ମା'।

ଛୋଟ ପିଲାଙ୍କୁ ନେଇ ନଗ୍ନତା ପ୍ରଦର୍ଶନ ପ୍ରତିଦିନ ଆମ ଘରିପଟେ ହେଉଛି। କିଛି ଉଦାହରଣ ଏଇଠି ଦିଆଯାଇପାରେ। ଆପଣ କେବେ ବଡ଼ ବଡ଼ ମଲ୍‌କୁ ଯାଆନ୍ତୁ। ସେଠାରେ ଛୋଟ ପିଲାଙ୍କ ପାଇଁ ଥିବା ପୋଷାକ ଦେଖନ୍ତୁ। ପୋଷାକରେ ଯୌନ ଉଦ୍ଦିପକ ଭାଷା ଓ ଡ଼ିଜାଇନ୍ ଥାଏ। ବାର ତେର ବର୍ଷର ଝିଅ ପିଲାଙ୍କ ପାଇଁ ଟି. ସାର୍ଟମାନ ଆପଣଙ୍କ ନଜରକୁ ଆସିବ। ଟି.ସାର୍ଟରେ ଲେଖାଥାଏ- 'ଆଇ ଆମ୍ ସେକ୍ସି ଫର୍ ମାଇ ସାର୍ଟ'। 'ସେକ୍ସି' ଶବ୍ଦକୁ ବାଇଗିଣିଆ ରଙ୍ଗରେ ବଡ଼ ଅକ୍ଷରରେ ଲେଖା ଥିବ। କୌଣସି ବାପ ମା' ଏଇ ପୋଷାକକୁ ନିଶ୍ଚୟ କିଣି ନେଉଥିବେ ଏବଂ ଏହାକୁ ପିନ୍ଧାଇ ପିଲାଙ୍କୁ ବାହାରକୁ ନେଉଥିବେ।

ଛୋଟ ପିଲାଙ୍କର କୌଣସି ଏକ ଇଂରାଜୀ ମିଡ଼ିୟମ ସ୍କୁଲରେ ହେଉଥିବା ବାର୍ଷିକୋତ୍ସବ ମନୋରଂଜନ କାର୍ଯ୍ୟକ୍ରମରେ ଭାଗ ନେଉଥିବା ପିଲାଙ୍କର ଏଇ ଯୌନକରଣର ଦୃଶ୍ୟ ଆପଣ ଦେଖିବେ। ଏଇ ପିଲାମାନେ ଯୌନ ଉଦ୍ଦିପକ ପୋଷାକ ପିନ୍ଧିଥିବେ। ଏମାନେ ନାଚ କରୁଥିବେ ଏବଂ ପଛରୁ 'ଶିଲା କୀ ଜବାନୀ' ପରି ହିନ୍ଦି ସିନେମାର ଗୀତ ବାଜୁଥିବ। ଏ ସବୁର ନାଁ ଦିଆଯାଇଛି ରେକର୍ଡ଼ ଡ୍ୟାନ୍ସ। ଅଡ଼ିଏନ୍ସରେ ବସିଥିବା ଦର୍ଶକମାନେ ଏସବୁ ଦେଖି ତାଳି ମାରୁଥିବେ। ଏହା ସତ ଯେ, ଆଠ ନଅ ବର୍ଷର ଝିଅ ପାଇଁ ଏପରି ସଂଗୀତ ଏବଂ ନାଚର ଅର୍ଥ ବୁଝିବା କଷ୍ଟ। କିନ୍ତୁ ଅବଚେତନ ମନରେ ଏହା ଯେ ଏକ ଫ୍ରଏଡ଼ିୟ ଯୌନ ତରଙ୍ଗ ସୃଷ୍ଟି କରେ, ଏହାକୁ ମନୋସ୍ତତ୍ୱବିତ୍‌ମାନେ ସ୍ୱୀକାର କରନ୍ତି। ଯେଉଁ ତରଙ୍ଗ ହିଁ ଶୈଶବରୁ କୈଶୋର ଆସିଲା ବେଳେ ଶିଶୁକୁ ପ୍ରଭାବିତ କରିଥାଏ।

ଏଇ କିଛିଦିନ ତଳେ ଏ ଲେଖକ ଏକ ଟି.ଭି. ସୋ ରେ ପିଲାଙ୍କ ନାଚ ଏବଂ 'ର୍ୟାମ୍ପ ସୋ' ପ୍ରତିଯୋଗୀତା ଦେଖୁଥିଲା। ଯେଉଁ ପିଲାମାନେ ଏଥିରେ ଭାଗ ନେଇଥିଲେ ସେ ସମସ୍ତଙ୍କର ବୟସ ନଅ ଦଶ ବର୍ଷ ଭିତରେ ହେବ। ପିଲାଙ୍କ ନାଚ ପୋଷାକରେ ନଗ୍ନତାର ଛାପ ଥିଲା। ଏବଂ ଯେଉଁମାନେ ଫେସନ ର୍ୟାମ୍ପ ସୋ'ରେ ଭାଗ ନେଉଥିଲେ, ଏମାନଙ୍କ ଭିତରୁ ଅଧିକାଂଶ ହାଇହିଲ ଯୋତା, ଲୋ କଟ୍ ଟି.ସାର୍ଟ ପିନ୍ଧିଥିଲେ। ଏବଂ ପ୍ରତି ପ୍ରତିଯୋଗୀ ନାଚ ଏବଂ ର୍ୟାମ୍ପ ସୋ ପ୍ରଦର୍ଶନ କଲାପରେ ବିଚାରକମାନେ ପ୍ରଦର୍ଶନକୁ ନେଇ ଯେଉଁ ମନ୍ତବ୍ୟ ଦେଉଥିଲେ, ତାହା ଥିଲା ବେଶି ଘୃଣ୍ୟ ଏବଂ ନଗ୍ନ। ବିଚାରକମାନେ ଛୋଟ ପିଲାଙ୍କର ଚହାଣୀ, ଅଙ୍ଗଭଙ୍ଗୀ, ମୁଦ୍ରା ପ୍ରଦର୍ଶନକୁ ଜବରଦସ୍ତ ପ୍ରଶଂସା କରୁଥିଲେ। ଏବଂ ଏଥିରେ କିପରି ଯୌନ ଉଦ୍ଦୀପନାର ଆଭାସ ରହିଛି ତାହା ବର୍ଣ୍ଣନା କରୁଥିଲେ। ସେଇ ଅନୁସାରେ ସେମାନେ ପ୍ରତିଯୋଗୀଙ୍କର ନମ୍ବର ବି ଦେଉଥିଲେ। ଏପରି ଦୃଷ୍ଟିଭଙ୍ଗୀ ଥିବା ଲୋକମାନଙ୍କୁ ନେଇ ପ୍ରତିଯୋଗୀତାର ପ୍ରାୟୋଜକ ମାନେ କିପରି ଜଜ୍ କରୁଛନ୍ତି, ଏହା ଆଶ୍ଚର୍ଯ୍ୟ ଲାଗିଲା।

ହଁ ପାଠକ ବନ୍ଧୁ! ନାଚ, ସଂଗୀତ ଏବଂ କୌଣସି ଫେସନ ପ୍ରତିଯୋଗୀତାରେ ଆମର ଛୋଟ ପିଲାଏ ଭାଗନେବା ନେଇ ଏ ଲେଖକର କୌଣସି ସଂରକ୍ଷଣ ଭାବ ନାହିଁ। କିନ୍ତୁ ପରୋକ୍ଷ ଯୌନକରଣରୁ ପିଲାଙ୍କୁ ରକ୍ଷା କରିବାକୁ ଯେଉଁ ଅଭିଭାବକୀୟ ଦାୟିତ୍ୱବୋଧ ରହିବା କଥା ତାହା ରହୁ ବୋଲି ଏ ଦାବୀକୁ ଏ ଲେଖକ ସମର୍ଥନ କରେ।

ପଶ୍ଚିମା ଉନ୍ନତ ରାଷ୍ଟ୍ରମାନଙ୍କରେ ଛୋଟ ପିଲାଙ୍କ ଅଭିଭାବକମାନେ ନିଜ ପିଲାଙ୍କ ପ୍ରତି ବେଶ୍ ସତର୍କ ଏବଂ ରକ୍ଷଣଶୀଳ ହୋଇଥାଆନ୍ତି। କୌଣସି ଏକ ଅଜଣା ଲୋକ ଯେତେବେଳେ ଛୋଟ ପିଲା ସହ ଲାଗେ ସେମାନେ ଏଥିନେଇ ଖୁବ୍ ପ୍ରତିକ୍ରିୟାଶୀଳ ହୋଇ ଉଠନ୍ତି। ପିଲାଙ୍କ ଦେହରେ ଜଣା ବା ଅଜଣା ବ୍ୟକ୍ତି ହାତ ମାରିଦେବାକୁ ଏଇ ବାପ ମା'ମାନେ ପ୍ରତିବାଦ ଜଣାନ୍ତି। ନିର୍ଯ୍ୟାତନା ଅପେକ୍ଷା ଏଥିରେ ରୋଗ ସଂକ୍ରମଣର ଆଶଂକା ଥାଏ ବୋଲି ଏମାନଙ୍କର ଯୁକ୍ତି।

କିନ୍ତୁ ଦୁଃଖର କଥା ହେଲା, ଭାରତରେ ଛୋଟ ପିଲାମାନଙ୍କୁ କିପରି ଏକ ଜାତୀୟ ସାମାଜିକ ସଂପତ୍ତି ଭାବେ ଆମେ ନେଉ। କୌଣସି ଏକ ରେଷ୍ଟୁରାଣ୍ଟ ହେଉ, ମାର୍କେଟ ସ୍ଥାନ ହେଉ, କିମ୍ବା ଲିଫ୍ଟ ହେଉ, କୌଣସି ଏକ ଛୋଟ ପିଲାଟି କହାପାଖକୁ ଚାଲିଗଲେ, କୌଣସି ଚିହ୍ନା ଜଣା ନଥିବା ସତ୍ତ୍ୱେ ବି ଆମେ ସେ ପିଲାଙ୍କୁ ଗେଲ କରିଦେଉ। କେତେ ଭଲ ବୋଲି ସମ୍ଭାଷଣ କରୁ। ପିଲାଙ୍କ ପ୍ରତି ବାହାର ଲୋକଙ୍କର ଏପରି ଆଚରଣକୁ ଦୂରରେ ଥାଇ ପିଲାର ବାପ ମା'ମାନେ ଉପଭୋଗ କରନ୍ତି। ପୋଷାକ ପିନ୍ଧା ଏବଂ ପିଲାର ଦରୁଟି କଥାକୁ କିଏ ତାରିଫ କରିଦେଲେ ଏମାନେ ଆନନ୍ଦ ପାଆନ୍ତି। ଏବଂ ପିଲାର ଏ ଆକର୍ଷଣ ଏବଂ 'ସ୍ମାର୍ଟନେସ୍' କହି ଏଇ ଅଭିଭାବକମାନେ ଖୁସି

ଜାହିର କରନ୍ତି। କିନ୍ତୁ ଏଇ ଆକର୍ଷଣ ଏବଂ ଆକର୍ଷିତ ହୋଇ ଆସୁଥିବା ଅନେକ ଲୋକ ଯେ ବେଳେବେଳେ କେମିତି ପିଲାଙ୍କ ପାଇଁ ବିପଦ ହୋଇଯାଆନ୍ତି, ସମ୍ଭବତଃ ଏହା ଆମ ବିଚାରରେ ନଥାଏ।

ଯାହା ଜଣାଯାଏ, ବିଦେଶରେ ବିଦ୍ୟାଳୟ ମାନଙ୍କରେ ସଂଗୀତ, ନାଚ ଏବଂ କନ୍‌ସର୍ଟ କାର୍ଯ୍ୟକ୍ରମରେ ଭାଗନେଉଥିବା ଛୋଟ ପିଲାମାନଙ୍କର ଫଟୋ ଉଠାଇବାକୁ ମନାଥାଏ। ଏପରିକି ବାପ ମା'ମାନେ ଏ ଫଟୋ ଉଠାଇ ପାରନ୍ତି ନାହିଁ। ଭୟଥାଏ, କାଳେ ହୁଏତ ଏଇସବୁ ଫଟୋ ଯୌନ ଲୁଣ୍ଠନକାରୀମାନଙ୍କ ହାତରେ କେବେ ପଡ଼ିଯାଇପାରେ।

ସ୍ପଷ୍ଟ କହିଲେ, ଶୈଶବକୁ ଯୌନ କରଣରୁ ରକ୍ଷା କରିବାକୁ ଆମେ କିପରି ଏବେ ବେଶ୍ ନରମ ହୋଇଯାଉଛୁ। କୌଣସି ଏକ ମାଗାଜିନ୍‌ର କଭର ପୃଷ୍ଠାରେ ଜଣେ ବାର ବର୍ଷର ଝିଅର ମଡ଼େଲ ଛବି ଦେଖିଲା ବେଳେ ଏହା ପ୍ରତି ଭୃକୁଞ୍ଚନ କରୁନାହୁଁ। କିମ୍ବା ଅର୍ଦ୍ଧ ନଗ୍ନ ଅବସ୍ଥାରେ ଟି.ଭି.ରେ ପିଲାଙ୍କ ର୍ୟାମ୍ପ ସୋ' କୁ ବିରୁଦ୍ଧ କରୁନାହୁଁ।

ଭାରତରେ ଶିଶୁ ଯୌନ ନିର୍ଯ୍ୟାତନା ନେଇ ଜାତୀୟ ଶିଶୁ ସୁରକ୍ଷା ଆୟୋଗଙ୍କର ଏକ ସର୍ଭେକ୍ଷଣ ରିପୋର୍ଟ ଏବେ ଆସିଛି। ଏଠାରେ ଶିଶୁଙ୍କ ପ୍ରତି ଯେତେ ନିର୍ଯ୍ୟାତନା ହେଉଛି, ସେଥିରୁ ଯୌନ ନିର୍ଯ୍ୟାତନା ଦେଉଥିବା ଲୋକଙ୍କ ଭିତରୁ ପ୍ରାୟ ୩୦ ପ୍ରତିଶତ ହେଉଛନ୍ତି ପୀଡ଼ିତ ଶିଶୁମାନଙ୍କର ଆତ୍ମୀୟ। ଏମାନେ ବାପା, ଭାଇ, ଦାଦା, କଜିନ୍ ହୋଇପାରନ୍ତି। ୬୦ଭାଗ ଲୋକ ପରିବାରର ବନ୍ଧୁ ବା ପଡ଼ୋଶୀ ହୋଇପାରନ୍ତି। ଏବଂ ଅନ୍ୟ ଦଶ ଭାଗ ଲୋକ ଅଜଣା ଏବଂ ଅଚିହ୍ନା। ଶୈଶବରେ ଯୌନ ନିର୍ଯ୍ୟାତିତ ହୋଇଥିବା ମାନସିକ ଅସନ୍ତୁଳନ ଜୀବନର ଶେଷ ପର୍ଯ୍ୟନ୍ତ ରହିଥାଏ ଏବଂ ଅବଚେତନ ମନର ଏକ ଝଟକା ଏବଂ ଦ୍ୱନ୍ଦ୍ୱ ଭାବେ ଅନେକ ସମୟରେ ଶୈଶବର ଏ ଅଭୁଲା ଅନୁଭୂତି ମନକୁ ଆସେ ଏବଂ ଆନ୍ଦୋଳିତ କରେ। ଅବସାଦର ଏହା କାରଣ ହୋଇଥାଏ। ଶିଶୁ ନିର୍ଯ୍ୟାତନାର ଦାରୁଣ ଉଦାହରଣ ହେଉଛି 'ନିଥାରି' ଘଟଣା।

ଏ ଆଲୋଚନା ଦୀର୍ଘ ନକରି ଏଇଠି ଶେଷ କରିବାକୁ ଇଚ୍ଛା। ଶେଷକଥା ହେଲା, କୌଣସି ଏକ ଜନପ୍ରିୟ ସାଂସ୍କୃତିକ କାର୍ଯ୍ୟକ୍ରମରେ ପିଲାଙ୍କ ଭାଗିଦାରୀ ଖରାପ କଥା ନୁହେଁ। କିନ୍ତୁ ପିଲାଙ୍କ ଆକର୍ଷଣ ତଥା ଫୁର୍ତ୍ତି ଆଳରେ ପୋଷାକ, ସଂଗୀତ, ମଡ଼େଲିଂକୁ ଆଧାର କରି ଶୈଶବକୁ ଯେଉଁ ଯୌନକରଣ କରାଯାଉଛି, ଭାରତୀୟ ସମାଜ ପାଇଁ ଏହା ଶୁଭଙ୍କର ହେଉନାହିଁ।

ଶିଶୁକୁ ତେଣୁ ନଗ୍ନ ଖେଳନାଟିଏ କରାନଯାଉ।



# ନେତା ଟାର୍ଗେଟ୍

ରାଜନେତାଙ୍କୁ ଚାପୁଡ଼ା ମାରିବା କିମ୍ବା ଜୋତା ଫିଙ୍ଗିବା ବର୍ତ୍ତମାନର ଆଧୁନିକ ଭାରତରେ ପ୍ରତିବାଦର ଏକ ନୂଆ ମାଧ୍ୟମ ହୋଇଯାଇଛି। ପ୍ରତିରୋଧ କରିବାର ଏହା ଯେପରି ଏକ ନୂତନ ପରିଭାଷା। ନେତା ଉପରେ ଆକ୍ରମଣ ହେବା ପରେ ସାଧାରଣ ଜନତାଙ୍କ ଭିତରେ ଏଥିନେଇ ମିଶ୍ରିତ ପ୍ରତିକ୍ରିୟା ମଧ୍ୟ ଆସୁଛି। ଅନେକ ଖୁସି ଜାହିର କରୁଛନ୍ତି। ଆକ୍ରମଣକାରୀଙ୍କୁ ବଧେଇ ଜଣାଉଛନ୍ତି। ଏବଂ ଅନେକ ମଧ୍ୟ ଏଥିନେଇ ଦୁଃଖ ପ୍ରକାଶ କରୁଛନ୍ତି। ସତକଥା ହେଲା, ହିଂସାରେ ଯଦି ସବୁ ସମସ୍ୟାର ସମାଧାନ ହୋଇଯାଉଥାଆନ୍ତା, ଏ ପୃଥିବୀ କେବେଠୁଁ ଏକ ଶାନ୍ତିର ସ୍ୱର୍ଗ ହୋଇଯାଆନ୍ତାଣି।

ଭାରତର କୃଷିମନ୍ତ୍ରୀ ଶରଦ ପାୱାରଙ୍କୁ ହରବିନ୍ଦର ସିଂ ନାମକ ଜଣେ ଶିଖ୍ ଯୁବକ କିଛିଦିନ ତଳେ ଶକ୍ତ ଚାପୁଡ଼ାଟିଏ ମାରିଲା। ନିଜର ଛୁରୀ ବାହାର କରି ମନ୍ତ୍ରୀଙ୍କୁ ଚିରି ଦେବ ବୋଲି ଧମକ ଦେଲା। ନିଜର ଅପରେସନ କରା ଗାଲରେ ବସିଥିବା ଶକ୍ତ ଚାପୁଡ଼ାର ଯନ୍ତ୍ରଣାକୁ ସହ୍ୟ କରିବାକୁ ଯାଇ ବୟସ୍କ ରାଜନେତା 'ପାୱାର' ନିଜ ହାତରେ ଗାଲ ଆଉଁସି ଦେଲେ। ଏସବୁ ଦୃଶ୍ୟ ଟେଲିଭିଜନରେ ଦେଖାଯାଉଥିଲା। ଯୁବକ ଜଣକ ମାଡ଼ ମାରି ସଫେଇ ଦେଉଥିଲା, ଭାରତରେ ଦରଦାମ୍ ବୃଦ୍ଧି ପାଇଁ ଶରଦ ପାୱାର ଦାୟୀ।

ଏଇ ଶିଖ୍ ଯୁବକ ଜଣକ କୁଆଡ଼େ ଏକ ଅଭ୍ୟାସଗତ ଅପରାଧୀ। ଶରଦ ପାୱାରଙ୍କ ପ୍ରତି ଅସଦାଚରଣ କରିବା ପୂର୍ବରୁ ସେ ଭାରତର ପୂର୍ବତନ ଟେଲିକମ୍ ମନ୍ତ୍ରୀ ସୁଖରାମଙ୍କୁ ମଧ୍ୟ ଚାପୁଡ଼ା ମାରିଥିଲା। ସେତେବେଳେ ବି ସେ ସଫେଇ ଦେଇଥିଲା, ଭାରତର ଦୁର୍ନୀତି ପାଇଁ ସୁଖରାମ ଦାୟୀ।

କୁହାଯାଉଛି, ରାଜନେତାଙ୍କ ପ୍ରତି ଏ ଆକ୍ରମଣାତ୍ମକ ବ୍ୟବହାର ହେଉଛି ନେତାଙ୍କ ପ୍ରତି ସଂପ୍ରତି ସୃଷ୍ଟି ହୋଇଥିବା ସାଧାରଣ ଜନତାର କ୍ରୋଧର ପ୍ରତିଫଳନ। ସ୍ୱାଧୀନତା ପାଇ ଏଠି ଗଣତାନ୍ତ୍ରିକ ଶାସନ ଗଠିତ ହେବା ବେଳେ ଲୋକେ ସ୍ୱପ୍ନ ଦେଖିଥିଲେ,- ଏଦେଶ ଏଣିକି ଘିଅ ମହୁରେ ଭାସିବ। ଲୋକଙ୍କ ଦ୍ୱାରା ନିର୍ବାଚିତ ଲୋକ ପ୍ରତିନିଧିମାନେ ଲୋକଙ୍କ ସମସ୍ୟା ପ୍ରତି ସଂବେଦନଶୀଳ ହେବେ। କିନ୍ତୁ ଦୁର୍ଭାଗ୍ୟ ଯେ, ସ୍ୱାଧୀନତାର ଛଅ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ପରେ ବି ଏ ସ୍ୱପ୍ନ ସାକାର ହୋଇନାହିଁ। ଦାରିଦ୍ର୍ୟ ବଢ଼ିଛି। ଅପରାଧ ବଢ଼ିଛି। ଭ୍ରଷ୍ଟାଚାର ବଢ଼ିଛି ଏବଂ ରାଜନେତାଙ୍କ କପ୍‌ବୋର୍ଡ଼ ଭିତରୁ ସ୍କାମ୍ ଏବଂ ସ୍କାଣ୍ଡାଲର କଙ୍କାଳମାନ ପ୍ରତିଦିନ ବାହାରୁଛି। ସ୍ୱାଧୀନତା ପୂର୍ବରୁ ଭାରତୀୟ ନେତାଙ୍କର ଯେଉଁ

ଛବିଟିଏ ସାଧାରଣ ଜନତା ଏଠି ତିଆରି କରିଥିଲା, ସେ ବିକୃତ ବୋଲି ଧାରଣା ଆସିଛି। ସେଇଥିପାଇଁ ସାଧାରଣ ଜନତାଙ୍କର କ୍ରୋଧ।

ଏଇ କିଛିମାସ ପୂର୍ବେ ବି ଭାରତର ଗୃହମନ୍ତ୍ରୀ ଚିଦାମ୍ବରମ୍‌ଙ୍କୁ ଜଣେ ଶିଖ୍ ପତ୍ରକାର ସାମ୍ବାଦିକ ସମ୍ମିଳନୀରେ ଯୋତା ଦେଖାଇ ମାରିବାକୁ କହିଥିଲା। ୧୯୮୪ ମସିହାର ଘଟଣା ଉପରେ ଚିଦାମ୍ବରମ୍ କୁଆଡ଼େ ସେଇ ସାମ୍ବାଦିକ ସମ୍ମିଳନୀରେ ଉତ୍ତର ଦେଇନଥିଲେ।

ସାଧାରଣରେ କାହାକୁ ଯୋତା ଦେଖାଇବା କାର୍ଯ୍ୟକୁ ପୃଥିବୀସାରା ଏକ ଘୃଣ୍ୟ ତଥା ଅଭଦ୍ରତାର ସଂକେତ ଭାବେ ଗଣାଯାଏ। ଯେଉଁ ଧାରଣା ବି ଭାରତରେ ରହିଛି।

ଆମେରିକାର ରାଷ୍ଟ୍ରପତି ଜର୍ଜ ବୁଶ୍‌ଙ୍କ ଉପରକୁ ଯୋତା ଫିଙ୍ଗା ହେଲା। ବୁଶ୍ ରାଷ୍ଟ୍ରପତି ପଦ ଛାଡ଼ିବା ପୂର୍ବରୁ ବିଦାୟ ଉତ୍ସବ କରିବାକୁ ଇରାକ୍ ଯାଇଥିଲେ। ଇରାକ ଜନତାଙ୍କ ତରଫରୁ ଏ ଯୋତାର ଚୁମ୍ବନ ନିଅ କହି ଜଣେ ଇରାକୀ ଟେଲିଭିଜନର ପତ୍ରକାର ଯୋତା ଫିଙ୍ଗିଥିଲା। ଚିନ୍ ପ୍ରଧାନମନ୍ତ୍ରୀ 'ଭାନ୍ ଜିଆବୋ'ଙ୍କୁ ମଧ୍ୟ ଯୋତା ମାଡ଼ ହୋଇସାରିଲାଣି। ଦୁର୍ଭାଗ୍ୟ ଯେ ନେତାଙ୍କୁ ଟାର୍ଗେଟ୍ କରି ଯୋତାମାଡ଼ର ଇଏ ଏବେ ନୂଆ ସଂସ୍କୃତି। ଶରଦ ପାୱାର, ଚିଦାମ୍ବରମ, ଆଡ଼ଭାନୀ, କାଲମାଡ଼ି, ସୁଖରାମ ଭଳି ଅନେକ ନେତା ଏ ସଂସ୍କୃତିର ଏବେ ଶିକାର। ହୋଇପାରେ, ଏହା ଜଗତିକରଣର ପ୍ରଭାବ କିମ୍ବା ଚବିଶ ଘଣ୍ଟିଆ ଟି.ଭି. ଚ୍ୟାନେଲର ମୁକ୍ତ ସୂଚନା ପ୍ରବାହର ପରିଣତି। ହୋଇପାରେ, ଚର୍ଚ୍ଚାରେ ରହିବାକୁ ଆକ୍ରମଣକାରୀମାନେ ଚାହାନ୍ତି।

କ୍ରୋଧ ମଣିଷର ଏକ ସହଜାତ ପ୍ରବୃତ୍ତି। କିନ୍ତୁ କ୍ରୋଧ ଯେତେବେଳେ ହିଂସାରେ ପ୍ରତିଫଳିତ ହୁଏ, ଏହା ସମାଜ ପ୍ରତି ବିପଦ ହୋଇଥାଏ ଏବଂ ଯେତେବେଳେ ଏଇ ହିଂସାକୁ କୌଣସି ଏକ କ୍ରୋଧର ସଠିକ୍ ପରିଚାଳନା କହି କିଛି ପ୍ରତିଷ୍ଠିତ ବ୍ୟକ୍ତି ସମର୍ଥନ ଜଣାନ୍ତି, ଏହା ଆହୁରି ବିପଦପୂର୍ଣ୍ଣ ହୋଇଯାଏ। ଏଇ ଯେମିତି ଗାନ୍ଧୀବାଦୀ ନେତା ଆନ୍ନା ହଜାରେ, ଶରଦ ପାୱାରଙ୍କ ମାଡ଼ କଥା ଶୁଣୁ ଶୁଣୁ ପ୍ରତିକ୍ରିୟା ଦେଲେ- "କ'ଣ ଗୋଟିଏ ଚାପୁଡ଼ା" ? ଆନ୍ନାଙ୍କ ସମ୍ମୁଖରେ ବସିଥିବା ଲୋକମାନେ ଏପରି ମନ୍ତବ୍ୟ ଶୁଣି ସମର୍ଥନ କରି ହସି ଦେଲେ। ଏସବୁ ଥିଲା ଟି.ଭି. ଚ୍ୟାନେଲର ଦୃଶ୍ୟ। ଏପରି ମନ୍ତବ୍ୟ ଦେଇ ଶରଦ ପାୱାରଙ୍କ ପ୍ରତି ଆହୁରି ମାଡ଼ ହେବା ଦରକାର ବୋଲି ଆନ୍ନା ଚାହୁଁଥିଲେ ନା, ମାଡ଼ର ପରିମାଣ କେତେ ତାହା ଜାଣିବାକୁ ପ୍ରଶ୍ନ କରୁଥିଲେ, ଏହା ଏକ ବିବଦମାନ କଥା। ଗାନ୍ଧୀଜୀ କେବେ ବି ତାଙ୍କ ଜୀବଦଶା ଭିତରେ ନିଜର ବିରୋଧୀଙ୍କ ପ୍ରତି କଠୋର ଭାଷା ବ୍ୟବହାର କରିନଥିଲେ। ଟିମ୍ ଆନ୍ନାର ଅନ୍ୟ ଜଣେ ଚର୍ଚ୍ଚିତ ସଦସ୍ୟ କିରଣ ବେଦୀ ତାଙ୍କ ଟୁଇଟରରେ ମଧ୍ୟ ଲେଖିଲେଣି,- "ଲୋକପାଳ ବିଲ୍ ପାଶ୍ ନହେଲେ ନେତାଙ୍କୁ ଆହୁରି ମାଡ଼ ହେବ"।

ଏସବୁ ସିଭିଲ ସମାଜର ସଭ୍ୟ। ଗାନ୍ଧୀଟୋପି ପିନ୍ଧି ଏମାନେ ଗାନ୍ଧୀଙ୍କ ପରି ଦେଖାଯିବାକୁ ଚେଷ୍ଟା କରନ୍ତି। ହିଂସାରେ ସମାଧାନର ବାଟ ଅଛି କହି ଯଦି ଗାନ୍ଧୀବାଦର

ଏପରି ଅର୍ଥାନ୍ତରିକରଣ ହେଉଥାଏ, ଏହା ଦୁର୍ଭାଗ୍ୟଜନକ।

ସତରେ ଏବେ ଆମେ ଯାଉଛୁ କୁଆଡ଼େ ? ଏହା ଖାଲି ବିରକ୍ତି କିମ୍ବା ଅସହାୟତାର ପ୍ରଶ୍ନ ନୁହେଁ। ଏହା ଏକ ଆତ୍ମସମୀକ୍ଷାର କଥା। ଏ ଦେଶର ଗଣତାନ୍ତ୍ରିକ ରାଜନୈତିକ ସମାଜର ସ୍ଥାୟୀତ୍ୱର କଥା।

ପୃଥିବୀର ଅନେକ ରାଷ୍ଟ୍ର ସଂପ୍ରତି 'ବାନାନା ରିପବ୍ଲିକ୍' ହୋଇଗଲେଣି। ବାନାନା ରିପ୍ଲବିକ୍‌ମାନେ ଯେଉଁଠି ଆଇନର ଶାସନ ଚାଲେ ନାହିଁ। ଆଇନ ଶୃଙ୍ଖଳା ନଥାଏ। ରାସ୍ତା ଉପରେ ଶାସକ ଏବଂ ପ୍ରଜା ପରସ୍ପର ପ୍ରତି ଦୈହିକ ଆକ୍ରମଣ ଏବଂ ପ୍ରତିଆକ୍ରମଣରେ ଥାଆନ୍ତି। ଏବଂ ଏଇଟା ବି ସତ ଯେ ୧୯୪୦ ଏବଂ ୫୦ ଦଶକରେ ଭାରତ ସହ ଯେଉଁ ସବୁ ରାଷ୍ଟ୍ର ସ୍ୱାଧୀନ ହୋଇ ଗଣତନ୍ତ୍ରକୁ ଆବୋରି ନେଇଥିଲେ, ସେଥିରୁ ଅର୍ଦ୍ଧାଧିକ ରାଷ୍ଟ୍ରରେ ଏବେ ଗଣତାନ୍ତ୍ରିକ ଶାସନ ନାହିଁ। ସେଠାରେ ଏକଛତ୍ରବାଦୀ ସାମରିକ ଶାସକମାନେ ସଂସଦ ଗୃହରେ ତାଲା ପକାଇ ଦେଇଛନ୍ତି। ସୁତରାଂ, ରାଜନେତାଙ୍କ ପ୍ରତି ସାଧାରଣ ଜନତାର କ୍ରୋଧର କାରଣ ନେଇ ସମୀକ୍ଷା ହେବା ଜରୁରୀ। ଏଇ କାରଣରେ ନିଜେ ରାଜନେତା ଅଛନ୍ତି ଏବଂ ଗଣମାଧ୍ୟମ ବି ରହିଛନ୍ତି।

ନେତାଙ୍କ ଆଚରଣକୁ ଏ ଜନତା ଦେଖେ। ସବୁ ଜାଣେ। ନିର୍ବାଚିତ କରି ଜଣେ ନେତାକୁ ସଂସଦ ବା ବିଧାନସଭାକୁ ପଠାଇବା ବେଳେ ସାଧାରଣ ଭୋଟରଟିଏ ଚାହିଁଥାଏ,- ତା ନେତା ତା ସମସ୍ୟା କଥା ସଂସଦ ଏବଂ ବିଧାନସଭାରେ କହୁ। ଆଲୋଚନା କରୁ। ବିତର୍କରେ ଭାଗନେଇ ଦେଶର ବିକାଶ ପାଇଁ ନୂଆ ନୂଆ ପ୍ରସ୍ତାବ ଦେଉ। କିନ୍ତୁ ଯେତେବେଳେ ସେଇ ନେତାମାନେ ସଂସଦ ଗୃହରେ ପରସ୍ପର ପ୍ରତି ଅସଦାଚରଣ କରନ୍ତି; ବିତର୍କ ନକରି ସଂସଦ ବନ୍ଦ କରନ୍ତି, ଏ ପ୍ରଭାବ ସାଧାରଣ ଜନତା ଉପରେ ପଡ଼େ। ସାଧାରଣରେ କ୍ରୋଧ ଜନ୍ମ ନିଏ। ଏବଂ ଦ୍ୱିତୀୟ କଥାଟି ହେଲା କ୍ରୋଧ ଜନିତ ହିଂସାକୁ ଭାରତୀୟ ବୈଦ୍ୟୁତିକ ଗଣମାଧ୍ୟମ ଯେପରି ଭାବରେ ପ୍ରଚାର କରେ, ଏଠାରେ ଯେ ଏକ ସଭ୍ୟ ସିଭିଲ ସମାଜଟିଏ ଅଛି ତା'ର ସୂଚନା ମିଳେନି। ଅନେକ ଟି.ଭି. ଚ୍ୟାନେଲ ନିଜର ଟି.ଆର୍.ପି. ବୃଦ୍ଧି ପାଇଁ ପ୍ରତିଯୋଗୀତା ଯୋଗୁଁ ଅନେକ ଅଦରକାରୀ କଥାକୁ ବି ପ୍ରଦର୍ଶନ କରନ୍ତି। ଶରଦ ପାୱାରଙ୍କୁ ଚାପୁଡ଼ା ମାଡ଼ର ବାରମ୍ବାର ପ୍ରସାର କିପରି ଅରୁଚିକର ଲାଗୁଥିଲା।

ନେତାଙ୍କ ଆଚରଣ ପ୍ରତି ସାଧାରଣ ଜନତାର କ୍ରୋଧ ଥାଇପାରେ। କିନ୍ତୁ ଏହାର ପରିପ୍ରକାଶ ପାଇଁ ନେତାଙ୍କ ସହ ରାସ୍ତା ଉପରେ ଯୁଦ୍ଧ କରିବା ସମୀଚୀନ ନୁହେଁ। ସଧାରଣ ଜନତା ପାଖରେ ତ ଶକ୍ତିଶାଳୀ ଅସ୍ତ୍ରଟିଏ ଅଛି- ସେ ହେଉଛି ଭୋଟ୍। ଅପାରଗ ନେତାଙ୍କୁ ଶିକ୍ଷା ଦେବାକୁ ଆମର ପୂର୍ବ ପୁରୁଷମାନେ ୬୩ବର୍ଷ ତଳେ ଅମକୁ ଏଇ ବ୍ୟାଲଟ ପେପରର ଅସ୍ତ୍ରଟିଏ ଦେଇଛନ୍ତି।

ଏହାର ସଠିକ୍ ବ୍ୟବହାର ହେଉ...।



# ଆଣବିକ ପରିବାର

ଏବେ ମୋର ଜଣେ ଅତ୍ମୀୟ ମୋ ଘରକୁ ପଶୁ ପଶୁ କହିଲେ- "ତୁ ଏତେ ଦୂରରେ ଘର କରିଛୁ। ମୋତେ ଖୋଜି ଖୋଜି ଆସିବାକୁ ପଡ଼ିଲା"। ତାଙ୍କୁ ନମସ୍କାର କରି କହିଲି- "ମୋତେ ଆଗରୁ ଖବର ଦେଇଥିଲେ ମୁଁ ଯାଇ ଷ୍ଟେସନରୁ ନେଇ ଆସିଥାନ୍ତି"। ମୋ ସ୍ତ୍ରୀ ତାଙ୍କୁ ନମସ୍କାର କଲା ଏବଂ ପାଖରେ ଛିଡ଼ା ହୋଇଥିବା ସାନ ପୁଅକୁ କହିଲା- "ନମସ୍କାର କର। ସେ ପରା ଜେଜେ ହେବେ।

ପୁଅ ତାଙ୍କୁ ନମସ୍କାର କଲା ଏବଂ କିଛି ଦୂରକୁ ଯାଇ ସେ ମୋତେ ପଚାରିଲା- "ବାପା ସେ କିଏ ? ମୁଁ ଉତ୍ତର ଦେଲି- "ସେ ମୋ ବାପାଙ୍କ ମାଉସୀ ପୁଅ ଭାଇ"।

ସାନପୁଅ ମୋର ସେଦିନ ଏ ସଂପର୍କର ହିସାବ କଲା ଏବଂ ଟିକିଏ ହସିଦେଇ ଚାଲିଗଲା। ସେ ହସରୁ ମୋତେ ଜଣାଗଲା, 'ବାପାଙ୍କ ମାଉସୀ ପୁଅ ଭାଇ' ଏପରି ସଂପର୍କର ସାମାଜିକ ସ୍ୱୀକୃତି ଥିଲେ ବି ଏହାକୁ ଯେ ଏଠି ବଞ୍ଚେଇ ରଖାଯାଇ ପରୁଛି, ଏହାହିଁ ତା' ପାଇଁ ଆଶ୍ଚର୍ଯ୍ୟ ବୋଧେ ଥିଲା।

ହଁ, ପାଠକ ବନ୍ଧୁ ! ଆଜିର ପିଢ଼ୀର ପିଲାମାନେ ପରିବାରର ଏତେ ଦୂର ସଂପର୍କୀୟଙ୍କ ସହିତ ମୋଟେ ଅଭ୍ୟସ୍ତ ନୁହଁନ୍ତି। ଏମାନେ ଏମାନଙ୍କର ସଂପର୍କ କେବଳ ନିଜ ବାପା ବୋଉ ଏବଂ ଭାଇ ଭଉଣୀ ସହ ସୀମିତ ରଖିଥାଆନ୍ତି। କାରଣ ପଚାରିଲେ କହନ୍ତି- ସେମାନେ ଆଣବିକ ପରିବାରରେ ଅଛନ୍ତି। ସେମାନେ ନ୍ୟୁକ୍ଲିୟରଡ୍। ପରିବାରକୁ ଛାଡ଼ି ଦେଲେ ଏଠି ସମସ୍ତେ କଜିନ୍ ଏବଂ ଆଣ୍ଟି। ତା' ପୁଣି ଅସ୍ପଷ୍ଟ। ଦୁର୍ବଳ।

୧୯୬୦ ଏବଂ ୧୯୭୦ ଦଶକ ପୂର୍ବରୁ ଆମେ ଯେଉଁମାନେ ଜନ୍ମ ହୋଇଛେ ଆମେ ସମସ୍ତେ ପ୍ରାୟ ଯୌଥ ପରିବାରରୁ ଆସିଛେ। ବାପା, ବୋଉ, କକା, ଖୁଡ଼ି, ଜେଜେ, ଜେଜେ ମା'ଙ୍କୁ ନେଇ ଥିଲା ଆମ ପରିବାର। ପାରିବାରିକ ମୂଲ୍ୟବୋଧ, ପରଂପରା ଏବଂ ବିକାଶ ପାଇଁ ସମସ୍ତଙ୍କର ଉଦ୍ଦେଶ୍ୟ ଥିଲା ଏକ।

ପରିଚୟ ମଧ୍ୟ ନିଜର ବ୍ୟକ୍ତିଗତ ପ୍ରତିଷ୍ଠା ବା ବାପାଙ୍କ ପ୍ରତିଷ୍ଠାକୁ ଆଧାର କରି କେବଳ ଜଣା ଯାଉନଥିଲା। ଅମୁକଙ୍କର ନାତି, ପୁତୁରା, ଭଣଜା ଭାବେ ମଧ୍ୟ ପରିଚୟ ମିଳୁଥିଲା। ଘରକୁ ସଂପର୍କୀୟମାନେ ଆସିବାରେ କିଛି ନିୟମ କରା ସମୟ ନଥିଲା।

ଏବଂ ବନ୍ଧୁଟିଏ ଘରକୁ ଆସିଲେ 'କାହିଁକି ଆସିଛ' ଏବଂ 'କେବେ ଫେରିବ' ବୋଲି କିଏ ପ୍ରଶ୍ନ କରୁନଥିଲେ। ପିଲାଙ୍କ ଘରେ ବନ୍ଧୁ ଶୋଉଥିଲେ। ଏବଂ ପିଲାଙ୍କ ପାଇଁ ତଳେ ବିଛଣା ପରାଯାଉଥିଲା।

ଇଏ ଥିଲା ଆମ ଯୌଥ ପରିବାରର ସ୍ୱରୂପ। ପରିବାରର ଜଣେ, ଅନ୍ୟଜଣେ ସଦସ୍ୟର ଅଭାବ, ଆବଶ୍ୟକତା ଏବଂ ଆବେଗକୁ ବୁଝୁଥିଲା। ଯନ୍ତ୍ରଣାକୁ ବାଣ୍ଟୁଥିଲା।

ଯୌଥ ପରିବାରର ଏ ଚରିତ୍ର ଏବେ ବଦଳିଛି। ଏବଂ ଏହା ବଦଳରେ ଏଠି ଏକ ଛୋଟ ଆଣବିକ ପରିବାରର ଅଭ୍ୟୁଦୟ ହୋଇଛି। ଆଣବିକ ପରିବାର କହିଲେ ଯେଉଁଠି ବାପା, ବୋଉ ଏବଂ ଅବିବାହିତ ପିଲାଙ୍କୁ ନେଇ ପରିବାରଟି ଥାଏ। ଶିଳ୍ପ ବିପ୍ଳବ ପରେ ଏଇ ପାରିବାରିକ ପଦ୍ଧତିକୁ ଆଦର ମିଳିଛି। ଏବଂ ସମାଜର ଏକ ମଡ଼େଲ ଭାବେ ଏହା ଜଣାଯାଉଛି।

ଆଣବିକ ପରିବାର ଆଦୃତ ହୋଇଛି ଏଇଥି ପାଇଁ ଯେ, ଏଥିରେ ବ୍ୟକ୍ତିଗତ ସ୍ୱାଧୀନତା ରହିଛି। ପରିବାରର ସବୁ ସଦସ୍ୟ ଗୋଟିଏ ପ୍ରକାର ଜୀବନଶୈଳୀକୁ ଆପଣେଇ ନିଅନ୍ତି। ସମସ୍ତଙ୍କ ରୁଚି ଏବଂ ପସନ୍ଦ ପ୍ରାୟ ଏକା ଥାଏ। ଏଥିରେ ଭୂମିକା ଜନିତ କୌଣସି ଦ୍ୱନ୍ଦ ନଥାଏ। ଠିକ୍ ଯେମିତି ପୁଅ ବାହା ହୋଇ ଘରକୁ ବୋହୂ ଆସିଲେ ପୁଅର ପରିବାର ପ୍ରତି ଆନୁଗତ୍ୟର ତୁଳନା କରି ଘରେ ଦ୍ୱନ୍ଦ ଆସେ। ଆଣବିକ ପରିବାର ବିସ୍ତାରିତ ହେଲେ ଏ ଦ୍ୱନ୍ଦ ଆସୁଛି। ସମାଜବିଜ୍ଞାନୀଙ୍କ ଭାଷାରେ ଏ 'ରୋଲ୍ କନ୍‌ଫ୍ଲିକ୍ଟ'।

ପୃଥିବୀରେ ଶିଳ୍ପ ବିପ୍ଳବ ପରେ ପୃଥିବୀ ସାରା ଯୌଥ ପରିବାର ଭାଙ୍ଗିବାକୁ ଆରମ୍ଭ କରିଥିଲା। ଏହାର କାରଣ ଥିଲା, ଶିଳ୍ପାୟନ ପରେ ସହରୀକରଣ ଆରମ୍ଭ ହୋଇଥିଲା। ଚାକିରୀ ପାଇଁ ଲୋକେ ଗାଁ ଛାଡ଼ି ସହରକୁ ଆସିଥିଲେ। କର୍ମସ୍ଥଳୀରେ ଏମାନେ ଘର ବାନ୍ଧିଥିଲେ। ନିଜ ସ୍ତ୍ରୀ ଏବଂ ପିଲାଙ୍କୁ ଧରି ସଂସାର କରିଥିଲେ। ପରିବାରର ଅନ୍ୟ ସଦସ୍ୟ ଗାଁରେ ରହୁଥିଲେ।

ଶିଳ୍ପାୟନର ପ୍ରଭାବ ଭାରତରେ ମଧ୍ୟ ଭାରତୀୟ ସମାଜ ଉପରେ ପଡ଼ିଥିଲା। ସହରୀ ଦେଶାନ୍ତରୀକରଣର ପ୍ରଭାବ ଭାରତରେ ଅନୁଭବ ହୋଇଥିଲା। ସହରୀ ଦେଶାନ୍ତରୀକରଣ ବା ଅର୍ବାନ ମାଇଗ୍ରେସନର ପ୍ରଥମ କର୍ତ୍ତା ଥିଲେ ଏ ଦେଶର ଉଚ୍ଚ ଜାତିର ଲୋକମାନେ। ଏମାନେ ପ୍ରଥମେ ଚାକିରୀ ପାଇଁ ଗାଁରୁ ସହରକୁ ଆସିଥିଲେ। ପରବର୍ତ୍ତୀ ସମୟରେ ଏମାନେ ମଧ୍ୟବର୍ଗୀ ଏବଂ ବୃତ୍ତି ଭିତ୍ତିକ ଗୋଷ୍ଠୀ ତିଆରି କରିଥିଲେ। ଏବଂ ଏଇମାନେ ହିଁ ଆଣବିକ ପରିବାର ଗଢ଼ିଥିଲେ। କାରଣ ଏମାନେ ଶିକ୍ଷିତ ଥିଲେ। ସହରୀକରଣ ଏବଂ ପଶ୍ଚାତ୍‌କରଣକୁ ବୁଝିବାକୁ ଏମାନେ ସମର୍ଥ ଥିଲେ। ଏବଂ ପାଶ୍ଚାତ୍ୟ ସଂସ୍କୃତିକୁ ଅନୁକରଣ କରି କେବଳ ନିଜ ସୁଖ ଉପରେ ପ୍ରାଧାନ୍ୟ ଦେବାକୁ ଏମାନେ ଚାହିଁଥିଲେ।

ଜଗତିକରଣ ଏବେ ଏଇ ଆଣବିକ ପରିବାରକୁ ଆହୁରି ଶକ୍ତ କରିଦେଇଛି। ପୁରୁଣା ଆଣବିକ ପରିବାରର ସ୍ୱରୂପରେ ବି ପରିବର୍ତ୍ତନ ଆସିଛି। କେବଳ ରୋଜଗାର କରୁଥିବା ସ୍ୱାମୀ, ଘର ପାଳୁଥିବା ସ୍ତ୍ରୀ ଏବଂ ପିଲାଙ୍କୁ ନେଇ ଯେ ଅଣୁ ପରିବାରଟିଏ ହେବ, ଏ ଧାରଣା ବଦଳିଛି। ପରିବାରରେ ଏବେ ଚାକିରି କରୁଥିବା ସ୍ୱାମୀ, ସ୍ତ୍ରୀ, ପିଲା କିମ୍ବା ଏକକ ସ୍ତ୍ରୀ ବା ପୁରୁଷକୁ ନେଇ ପରିବାର ଅଥବା ସ୍ୱାମୀ ପିଲା ବା ସ୍ତ୍ରୀ ପିଲାଙ୍କୁ ନେଇ ପରିବାର ଏଠି ଗଠିତ ହେଉଛି। ଅଣୁ ପରିବାରର ଇଏ ଉପ-ପରିବାର।

କେବଳ ଭାରତରେ ନୁହେଁ, ସାରା ପୃଥିବୀରେ ପରିବାର ସଂପ୍ରତି ଏକ ନମ୍ବର ସମସ୍ୟା। ଭାଙ୍ଗିଯାଇ ଛୋଟ ଛୋଟ ହେଉଥିବା ପରିବାର ଯେ ଏଠି ଦେଶ ତଥା ସମାଜ ପାଇଁ ମୋଟେ ହିତକର ହେଉନାହିଁ, ଏହା ସମସ୍ତେ ଅନୁଭବ କଲେଣି। ଜିମିକାର୍ଟର ଆମେରିକାର ରାଷ୍ଟ୍ରପତି ଥିବା ବେଳେ ପରିବାରର ସୁରକ୍ଷା ନେଇ ଏକ ଜାତୀୟ ନୀତି ପ୍ରଣୟନ କରିବାକୁ ପ୍ରଥମେ ଆହ୍ୱାନ ଦେଇଥିଲେ। ଯେଉଁ ଆମେରିକୀୟ ସଂସ୍କୃତି ପରିବାର ଭାଙ୍ଗିଥିଲା, ସେଇ ସଂସ୍କୃତିର ପ୍ରଥମ ନାଗରିକ, ପରିବାର ରଖିବାକୁ ଉଦ୍ୟମ ଆରମ୍ଭ କରିଥିଲେ। ଏହା ହିଁ ଥିଲା ଆଶ୍ଚର୍ଯ୍ୟ।

ଭାରତରେ ମଧ୍ୟ ଏକ ଜାତୀୟ ପରିବାର ନୀତି ନେଇ ଦାବୀ ଆସିଲାଣି। ସ୍ୱାମୀ ସ୍ତ୍ରୀ ଚାକିରୀ କରୁଥିବା ଆଣବିକ ପରିବାରରେ ଏକମାତ୍ର ପିଲାଟିଏ ଯେତେବେଳେ ଘରେ ଏକାବସି ଆଲବମ୍ ଦେଖି ସମୟ କାଟେ; ଆଲବମର ଖଳ ଚରିତ୍ରକୁ ନିଜର ଆଦର୍ଶ ଭାବେ ଗଣେ; ଏବଂ ନିଃସଙ୍ଗତାର ଦୂର ପାଇଁ ନିଶା ସେବନ କରେ, ଏଇ ଅବସ୍ଥାକୁ ଦେଖି ଅନେକ ତେଣୁ କହିଲେଣି- ପାରସ୍ପରିକ ଅଭାବ ବୋଧ ଏବଂ ଆବେଗିକ ଅସନ୍ତୁଳନ ବୁଝିବାକୁ ଯୌଥ ପରିବାରର ଦରକାର ହେଲାଣି। ଏବଂ ୨୦୧୧ ଜନଗଣନାରେ ଯୌଥ ପରିବାର ସଂଖ୍ୟା ଯେ ଗତ ଜନଗଣନା ଠାରୁ ଅଧିକ ହୋଇଛି, ଏ ସୂଚନା ଏବେ ଆସିଛି।

ପରିବାର ତେଣୁ କୁଟୁମ୍ବ ଭାବେ ରହୁ। କାରଣ ପରିବାର ହେଉଛି ଏ ସମାଜର ସର୍ବଶ୍ରେଷ୍ଠ ସକ୍ଆବକର୍ତ୍ତର। କ୍ଲାନ୍ତ ହୋଇପଡ଼ିଥିବା ମଣିଷଟିଏ ଯେତେବେଳେ ବିଶ୍ରାମ ଖୋଜେ, ସେ ସେବେ ପରିବାରର ଆଶ୍ରା ଖୋଜେ।



# ବୟସ୍କ ବୋଝ ନୁହଁନ୍ତି

ଆଜି ଏ ସ୍ତମ୍ଭରେ ଏ ଲେଖକର ଏ ଲେଖା, ଭାରତ ବାହାରେ ଚାକିରିରୁ ଅବସର ନେଇଥିବା ଏବଂ ସରକାରଙ୍କ ନିର୍ଦ୍ଧାରିତ ବୟସ ଅନୁସାରେ ବରିଷ୍ଠ ନାଗରିକ ହୋଇଯାଇଥିବା ଅସଂଖ୍ୟ ବୟସ୍କମାନଙ୍କୁ ସମର୍ପିତ।

ବୟସ ଓଜନିଆ ନୁହଁ, କିମ୍ବା ବୟସ୍କ ବୋଝ ନୁହଁ। ବୟସ କେବଳ ଜିଇଁବା ଶିଖାଏ ଏବଂ ବୟସ୍କ ଜୀବନର ଅନୁଭୂତିକୁ ସମାନ ଭାବେ ବାଣ୍ଟେ। ଏ ପ୍ରକ୍ରିୟା ଆଜିର ନୁହେଁ। ମାନବ ସୃଷ୍ଟିର ପ୍ରାରମ୍ଭରୁ ଏହା ଚାଲି ଆସିଛି। ସେଇଥିପାଇଁ ବୋଧେ ଏ ସୃଷ୍ଟିର ଧାରାବାହିକତା ରହିଛି।

ଏ ଲେଖକ ଏଇ କିଛିମାସ ତଳେ ଜଣେ ସହକର୍ମୀଙ୍କ ଅବସର ଉତ୍ସବରେ ଯୋଗ ଦେଇଥିଲା। ଅବସର ଦିନ ସହକର୍ମୀ ଜଣଙ୍କ ପିଲାଙ୍କ ପରି କଇଁ କଇଁ କାନ୍ଦିଲେ। ପ୍ରଶ୍ନ କଲାରୁ ଉତ୍ତର ଆସିଲା, ଆଜି ତାଙ୍କର ମୃତ୍ୟୁ ହୋଇଗଲା।

ଏବଂ ଏଇ କିଛିଦିନ ତଳେ ବି ଆର୍ଥିକ ଭାବେ ସ୍ୱଚ୍ଛଳ ଥିବା ପୁଅ ବୋହୂଙ୍କ ଦ୍ୱାରା ଶାରୀରିକ ଯନ୍ତ୍ରଣା ପାଇ ଜଣେ ୯୦ବର୍ଷିୟ ବୃଦ୍ଧାଙ୍କର କରୁଣ କାହାଣୀ ଏ ଲେଖକ ଶୁଣୁଥିଲା। ବୃଦ୍ଧା କହୁଥିଲେ- ତାଙ୍କର ଏକମାତ୍ର ପୁଅ ତାଙ୍କୁ ଆଉ ଘରେ ରଖି ପାଳିବାକୁ ପ୍ରସ୍ତୁତ ନାହିଁ। ବାର୍ଦ୍ଧକ୍ୟ ଭତ୍ତା ଆଣି ସେଥିରେ ଚଳିବାକୁ ବାଧ କରୁଛି। ଦୀର୍ଘ ଅନେକ ବର୍ଷ ଧରି ସକ୍ଷମ ଥାଇ ଘରର ସମୃଦ୍ଧି କରିଥିବା ବୃଦ୍ଧ ଏବଂ ବୃଦ୍ଧାଟିଏ ବୟସ ଭାରରେ ଅବଶ ପଡ଼ିଲା ବେଳେ କିପରି ପରିବାର ପାଇଁ ଅଲୋଡ଼ା ହୋଇ ଯାଉଛନ୍ତି। ବୃଦ୍ଧ ଏବଂ ବୃଦ୍ଧାଙ୍କ ପ୍ରତି ଏ ଅଲୋଡ଼ାପଣ ସଂପ୍ରତି ଏକ ଗୁରୁତର ସାମାଜିକ ପ୍ରସଙ୍ଗ।

ଉପର ବର୍ଣ୍ଣିତ ଦୁଇଟି ପ୍ରସଙ୍ଗ ଏବେ ଦୁଇଟି ପ୍ରଶ୍ନ ଆଣିଛି। କିଛି ଲୋକଙ୍କ ପାଇଁ ବୟସ କାହିଁକି ଭାରି ଲାଗୁଛି। ଏବଂ କିଛି ଲୋକଙ୍କ ପାଇଁ ବୟସ୍କମାନେ କାହିଁକି ବୋଝ ହୋଇ ଯାଇଛନ୍ତି। ଏଇଠି କିଛି ଲୋକ କହୁଛି ଏଇଥି ପାଇଁ ଯେ, ବୟସର ଭାର ସମସ୍ତଙ୍କ ପାଇଁ ଗମ୍ଭୀର ନୁହେଁ କିମ୍ବା ଘରେ ବୟସ୍କଙ୍କୁ ଯାତନା ଦେବା ସାମୁହିକ ଘଟଣା ନୁହେଁ। କାରଣ ପରିଣତ ବୟସ ଏବେ ଏକ ଆପେକ୍ଷିକ ତତ୍ତ୍ୱ। ବ୍ୟକ୍ତି ବ୍ୟକ୍ତି ଠାରୁ ଏହାର ଓଜନ ଅଲଗା ଲାଗେ। ଏବଂ ସମୟକୁ ଚାହିଁ ଏହା ସ୍ଥିର ହୋଇଥାଏ।

ଗତ ୧୦୧୨ ଏପ୍ରିଲ ମାସ ୨୭ ତାରିଖ ଦିନ ମଞ୍ଚ ତଥା ଚଳଚିତ୍ର ଅଭିନେତ୍ରୀ

ଜୋହର ସେଗଲଙ୍କୁ ୧୦୦ବର୍ଷ ପୁରିଲା। ଏ ପର୍ଯ୍ୟନ୍ତ ବି ସେ ସିନେମାରେ ଅଭିନୟ ଛାଡ଼ି ନାହାନ୍ତି। ଗତ କିଛିଦିନ ତଳେ ପାକିସ୍ଥାନରେ ରହୁଥିବା ନିଜ ୯୭ ବର୍ଷିୟା ଭଉଣୀଙ୍କ ସହ ସେ ଦିଲ୍ଲୀର ଏକ ଥିଏଟରରେ 'ଏକ୍ ଥୀ ନାନୀ' ନାମକ ନାଟକରେ ଅଭିନୟ କରୁଥିଲେ। ଜୋହର ଏବେ ବି ସକାଳୁ ସକାଳୁ ଉଠି ପଢ଼ନ୍ତି। ସାମାନ୍ୟ ବ୍ୟାୟାମ କରନ୍ତି, ଉର୍ଦ୍ଦୁ କବିତା ଆବୃତ୍ତି କରନ୍ତି। କହନ୍ତି ବୟସ ତ ଏକ ସଂଖ୍ୟା, ଭାରି କାହିଁକି ଲାଗିବ ?

ଅଠାନବେ ବର୍ଷୀୟ ଲେଖକ ଖୁସବନ୍ତ ସିଂଙ୍କ ଜୀବନ ମଧ୍ୟ ବୟସକୁ ଚ୍ୟାଲେଞ୍ଜ କରି ଚାଲିଛି। ସଂଧ୍ୟା ହେଲେ ନିଜର ଷ୍ଟଡ଼ି ରୁମକୁ ସାମାନ୍ୟ ଅନ୍ଧାର କରି ସେ ଗ୍ଲାସେ ସ୍କଚ୍ ପିଅନ୍ତି। ନିଜର ଆତ୍ମସମୀକ୍ଷା କରନ୍ତି। ନୂଆ ଲେଖା ପାଇଁ ପ୍ଲଟ ବାଛନ୍ତି। ପ୍ରତି ସପ୍ତାହରେ ଏବେ ବି ଖୁସବନ୍ତ ସିଣ୍ଡିକେଟେଡ଼ ସ୍ତମ୍ଭ ଲେଖୁଛନ୍ତି। ପ୍ରତିବର୍ଷ ତାଙ୍କର ନୂଆ ନୂଆ ବହି ପ୍ରକାଶ ପାଉଛି। ପଚାରିଲେ କହନ୍ତି- ବୟସ କିଛି ନୁହଁ, ହମ୍‌ବଗ।

ସୀତାର ବାଦକ ରବିଶଙ୍କରଙ୍କ ବୟସ ହେଲାଣି ନବେ। ନିଜର ତବଲା ବାଦନକୁ ନେଇ ପ୍ରତିଦିନ ନୂଆ ନୂଆ ରାଗ ସଜେଇବାରେ ତାଙ୍କୁ ସମୟ ମିଳୁନି। ସେଇ ବୟସର ଚିତ୍ରଶିଳ୍ପୀ ଏସ୍. ଏଚ୍. ରାଜା ଏବେ ବି କାନଭାସ୍‌ରେ ଚିତ୍ର ଆଙ୍କୁଛନ୍ତି। ଲଣ୍ଡନରେ ନିଜର ପେଣ୍ଟିଙ୍ଗର ସୋ' କରୁଛନ୍ତି। ସିଡ଼ିରୁ ପଡ଼ି ସାମାନ୍ୟ ଅକ୍ରମଣ୍ୟ ହୋଇଯାଇଥିବା ଚିତ୍ରଶିଳ୍ପୀ ରାଜା ସାହେବ କାନଭାସ ଏବଂ ବ୍ରସକୁ ନେଇ ଏବେ ମଧ୍ୟ ଜିଇଁଛନ୍ତି। ଜୀବନକୁ ଉପଭୋଗ କରୁଛନ୍ତି। ବହୁଦିନ ତଳୁ ବିପତ୍ନୀକ ହୋଇଥିବା ରାଜା ବେଳେ ବେଳେ ସ୍ୱଗତୋକ୍ତି କରି କହନ୍ତି- ବାନ୍ଧବୀଟିଏ ଥିଲେ ଭଲ ହୋଇଥାଆନ୍ତା। କାହିଁକି ନୁହଁ, ସେ ଏବେ ବି ତ ଜଣେ ଯୁବକ।

ଏବଂ ୮୨ ବର୍ଷକୁ ଅତିକ୍ରମ କରିଯାଇଥିବା ବିଶିଷ୍ଟ ଲେଖିକା ତଥା ସମାଜସେବୀ ମହାଶ୍ୱେତା ଦେବୀ ଏବେ ମଧ୍ୟ ନିଜର ଲେଖା ଏବଂ ସମାଜ କାମ ଛାଡ଼ି ନାହାନ୍ତି। ଆଦିବାସୀ ଅଞ୍ଚଳକୁ ଯାଉଛନ୍ତି। ସେମାନଙ୍କ ଦୁଃଖ ଶୁଣୁଛନ୍ତି। ରାସ୍ତା ଉପରେ ଏହାର ପ୍ରତିବାଦ କରୁଛନ୍ତି।

ହଁ, ଏ ଖାଲି ଜୋହରା, ଖୁସବନ୍ତ, ରବିଶଙ୍କର, ରାଜା ଏବଂ ମହାଶ୍ୱେତା ଦେବୀଙ୍କର ଜୀବନ ଆଲେଖ୍ୟ ବା ଏକମାତ୍ର ଉଦାହରଣ ନୁହେଁ। ଭାରତରେ ଏପରି ଅନେକ ବୟସ୍କ ଅଛନ୍ତି, ଯେଉଁମାନେ ଜୀବନର ବୟସକୁ ଭାରି ଓଜନିଆ ବୋଲି ଭାବନ୍ତି ନାହିଁ। ଲେଖା ଛାଡ଼ନ୍ତି ନାହିଁ; ବ୍ରସ ଛାଡ଼ି ନାହାନ୍ତି କିମ୍ବା ସମାଜସେବା ତ୍ୟାଗ କରିନାହାନ୍ତି। ଏମାନଙ୍କର ପ୍ରଶଂସକମାନେ ବି କହନ୍ତି, ଏସବୁ ବୟସ୍କ ନାଗରିକଙ୍କର କାମ ସରିନି, ଆଉ ବାକି ରହିଛି।

ଏହା ସତ ଯେ, ଭାରତରେ ୬୦ ବର୍ଷରୁ ଉର୍ଦ୍ଧ୍ୱ ବରିଷ୍ଠ ନାଗରିକଙ୍କ ସଂଖ୍ୟା

କ୍ରମଶଃ ବଢ଼ିବାରେ ଲାଗିଛି। ଏହା ମଧ୍ୟ ଏକ ଆନ୍ତର୍ଜାତିକ ଘଟଣା। ଚିକିତ୍ସା ସୁବିଧା, ପୁଷ୍ଟିକର ଖାଦ୍ୟ, କ୍ରୟଶକ୍ତିର ବୃଦ୍ଧି ଏବଂ ସର୍ବୋପରି ରାଷ୍ଟ୍ରିୟ ସମ୍ବେଦନଶୀଳତା ଏଇ ବରଷ୍ଠ ନାଗରିକଙ୍କ ସଂଖ୍ୟା ବୃଦ୍ଧିକୁ ସାହାଯ୍ୟ କରିଛି। ଅନୁମାନ କରାଯାଏ, ୨୦୨୫ ମସିହା ସୁଦ୍ଧା ଭାରତରେ ବରିଷ୍ଠ ନାଗରିକଙ୍କ ସଂଖ୍ୟା ପ୍ରାୟ ୩୦କୋଟି ହୋଇଯିବ। ଯୁବ ଭାରତରେ ବୃଦ୍ଧବୃଦ୍ଧାଙ୍କ ଆନୁପାତିକ ହାର କିଛି କମ୍ ହେବନି।

କୋଟି କୋଟି ଏଇ ବରିଷ୍ଠ ନାଗରିକଙ୍କ ସାମାଜିକ ସୁରକ୍ଷା ନିରାପତ୍ତା, ଉତ୍ତମ ପୋଷଣ, ପେନ୍‌ସନ ନେଇ ସଂପ୍ରତି ଚିନ୍ତା ଆସିଛି। ଦୀର୍ଘଜୀବୀ ହେଉଥିବା ବାପ ମା'ଙ୍କୁ କିପରି ପାଳିବ ଏ ଚିନ୍ତା। ବୟସ୍କଙ୍କ ସାମାଜିକ ସୁରକ୍ଷା ଏବଂ ନିରାକରଣ ପାଇଁ ରାଷ୍ଟ୍ର କେତେ ପରିମାଣର ପେନ୍‌ସନ ତୁଲାଇ ପାରିବ ଏ ବି ଅନ୍ୟ ଏକ ଚିନ୍ତା। ସହରରେ ଏକାକୀ ରହୁଥିବା ବୃଦ୍ଧ ବୃଦ୍ଧାଙ୍କ ନିରାପତ୍ତା ପ୍ରସଙ୍ଗ ରାଷ୍ଟ୍ର ଏବଂ ସମାଜ ପାଇଁ ବର୍ତ୍ତମାନ ଗମ୍ଭୀର ପ୍ରସଙ୍ଗ। ଜଗତିକରଣ ଯୁଗ ଆରମ୍ଭ ହେବା ପରେ ଏ ସମସ୍ୟା ବଢ଼ିଛି। ପିଲାଏ ବିଦେଶରେ। ନିଜ ଉପାର୍ଜନରେ ତିଆରି କରିଥିବା ଘରକୁ ଛାଡ଼ି ଚାଲିଯିବାକୁ ବାପ ମା' ନାରାଜ। ପ୍ରତ୍ୟେକ ସହରରେ ନିଜ ଗେଟ୍ ଭିତରେ ବଗିଚାରେ ଚୌକିରେ ବସି ଗପ୍‌ସପ୍ ହେଉଥିବା ପକ୍ୱକେଶୀ ବୃଦ୍ଧବୃଦ୍ଧାଙ୍କ ଦୁଃଖ ଏବେ ବେଶ୍ ସ୍ୱାଭାବିକ ଏବଂ ଏକାକୀ ରହୁଥିବା ବୃଦ୍ଧ ବୃଦ୍ଧାଙ୍କୁ ଅମାନୁଷିକ ହତ୍ୟା ସଂପ୍ରତି ଯେମିତି ବେଶ୍ ସାଧାରଣ ଘଟଣା।

ସୁତରାଂ ଅସଂଖ୍ୟ ବୟସ୍କ ନାଗରିକଙ୍କ ସାମାଜିକ ସୁରକ୍ଷା ତଥା ନିରାପତ୍ତା ପ୍ରସଙ୍ଗ ସଂପ୍ରତି ଏକ ସଂବେଦନଶୀଳ ପ୍ରସଙ୍ଗ। କ୍ରମଶଃ ଏହା ସମସ୍ୟା ଏବଂ ସଂକଟର ରୂପ ଧାରଣ କରିବାକୁ ଯାଉଛି। ଏ ସମସ୍ୟାର ସମାଧାନ ପାଇଁ ରାଷ୍ଟ୍ରର ଯେତିକି ଦାୟିତ୍ୱ ରହିଛି, ପରିବାରର ମଧ୍ୟ ସେତିକି ଦାୟିତ୍ୱ ରହିଛି। ପରିବାର ପରି ସାମାଜିକ ଅନୁଷ୍ଠାନ ବୃଦ୍ଧବୃଦ୍ଧାଙ୍କ ସାମାଜିକ ନିରାପତ୍ତାକୁ ରାଷ୍ଟ୍ର ଉପରେ ଛାଡ଼ି ଦେଇ ଚୁପ୍ ରହିଯିବା ଭାରତୀୟ ମୂଲ୍ୟବୋଧର ବି ବିରୋଧି। ଏକ ସର୍ଭେକ୍ଷଣରେ ଏ ଲେଖକ ଏବେ ଦେଖୁଥିଲା- ଗ୍ରାମାଞ୍ଚଳରେ ବୃଦ୍ଧ ବୃଦ୍ଧାଙ୍କ ଭଲମନ୍ଦ କଥା ସହର ଠାରୁ ବେଶ୍ ଭଲ ଭାବେ ଦେଖାଯାଏ।

ହଁ, ଏ ଆଲୋଚନା ଏଇଠି ଶେଷ କରିବାକୁ ଇଚ୍ଛା। ଶେଷକଥା ହେଲା, ବୟସର ଭାର ସେମିତି କିଛି ନାହିଁ। ଯେଉଁ ସମାଜ ବୟସ୍କଙ୍କୁ ସଂପଦ ନଭାବି ବୋଝ ବୋଲି ଭାବେ, ସେ ସମାଜ ଦୁର୍ବଳ ହୋଇଯାଏ। ୨୦୦୭ ମସିହାରେ ଲିଓନିଡ୍ ହରଉଇଜ୍ ଅର୍ଥନୀତିରେ ନୋବଲ ପୁରସ୍କାର ପାଇବା ବେଳେ ତାଙ୍କୁ ୯୦ ବର୍ଷ ହୋଇଥିଲା। ସେ ସେବେ ବି ଅଧ୍ୟାପନାରେ ଥିଲେ।

ସୃଜନଶୀଳତା ଏବଂ କାମ ତ ବଞ୍ଚିବାର ଦୀର୍ଘତା ବଢ଼ାଏ। ବୟସକୁ ନେଇ ତେଣୁ ଦୁଃଖ କାହିଁକି ?





# ଶ୍ରୀଜଗନ୍ନାଥ ଓ ବିବାଦ

ଜଗନ୍ନାଥେ ! ଏ ରଥଯାତ୍ରାରେ ଆପଣଙ୍କ ବଡ଼ଦାଣ୍ଡରେ ଛିଡ଼ା ହୋଇ ଏ ଲେଖକ ଆପଣଙ୍କୁ କିପରି ଗୁହାରି କରିବ ଜାଣିପାରୁ ନାହିଁ। ତଥାପି କିନ୍ତୁ ପ୍ରଶ୍ନଟିଏ ପଚାରିବାକୁ ଇଚ୍ଛା। ସେ ପ୍ରଶ୍ନ ହେଲା- ଆପଣଙ୍କୁ ନେଇ ଏବେ ଏତେ ବିବାଦ କାହିଁକି ? ଏ ବିବାଦ କ'ଣ ଆପଣଙ୍କ ଅଜାଣତରେ ଆସୁଛି ?

ସଂପ୍ରତି ବିବାଦ ଉଠିଛି ଆପଣଙ୍କ ଅବତାର ନେଇ। ପଣ୍ଡିତମାନେ ଏଥିନେଇ ବାଣ୍ଟି ହୋଇ ଗଲେଣି। ସିଂହଦ୍ୱାର ମରାମତି ବେଳେ ଚୂନରେ ତିଆରି ପୁରୁଣା ଦଶ ଅବତାର ମୂର୍ତ୍ତି ବାହାରିଲା। ପ୍ରତ୍ନତତ୍ତ୍ୱ ବିଭାଗ ତଥା ପ୍ରଶାସନିକ ଅଧିକାରୀମାନେ କହିଲେ, "ମୂର୍ତ୍ତି ଯେମିତି ଥିଲା ସେମିତି ଲାଗିବ। କିଛି ପରିବର୍ତ୍ତନ ହେବ ନାହିଁ"। ଅଧିକାରୀମାନଙ୍କ ରୋକଠୋକ୍ ପ୍ରତ୍ୟାଖ୍ୟାନ ବର୍ତ୍ତମାନ ବୌଦ୍ଧିକ ଚିନ୍ତାରେ ଝଡ଼ ସୃଷ୍ଟି କରିଛି।

ମନ୍ଦିରରୁ ବାହାରିଥିବା ମୂର୍ତ୍ତିରେ ଦଶ ଅବତାର ଭିତରୁ ନବମ ଅବତାର ହେଉଛନ୍ତି ଆପଣ ନିଜେ- ଜଗନ୍ନାଥ। କିନ୍ତୁ ସାଧାରଣ ଧାରଣା ହେଲା, ବୁଦ୍ଧ ଏକ ଅବତାର। ସେ ବିଷ୍ଣୁଙ୍କର ନବମ ଅବତାର। ଆଜକୁ ଶହେ ବର୍ଷ ତଳେ କିମ୍ବା ତଦୂର୍ଦ୍ଧ (ସମୟ ଜଣାନାହିଁ) ଯେତେବେଳେ ଶିଳ୍ପିଟିଏ ତା କଳ୍ପନାରେ ବୁଦ୍ଧ ବଦଳରେ ନବମ ଅବତାର ଭାବେ ଜଗନ୍ନାଥଙ୍କୁ ଚିତ୍ରିତ କଲା, ତା'ର କାରଣ ସେ ଜାଣିଥିବ କିମ୍ବା ଆପଣ। ଚିତ୍ରକରର ଚିତ୍ର କରିବାର ସ୍ୱାଧୀନତା ଥିଲେ ବି ସେ ସ୍ୱାଧୀନତା ଯେ ନିରଙ୍କୁଶ ନୁହେଁ, ଏ ଯୁକ୍ତି ଆସେ।

ବିଦ୍ୱାନମାନେ କହିଲେଣି,- ବିଷ୍ଣୁଙ୍କର ଦଶାବତାର ଭିତରେ ଜଗନ୍ନାଥଙ୍କୁ ଏକ ଅଂଶ କରିଦେବା ଏକ ଈଶ୍ୱର ନିନ୍ଦା; ବ୍ଲାସଫାମି। କାରଣ ଜଗନ୍ନାଥ ଅବତାର ନୁହଁନ୍ତି। ଅବତାରି। ତାଙ୍କର ଜନ୍ମ ନାହିଁ କି ମୃତ୍ୟୁ। ଶ୍ରୀକୃଷ୍ଣଙ୍କର ଜନ୍ମ ମୃତ୍ୟୁ ଥିଲେ ବି ସେ ନିଜେ ବିଷ୍ଣୁ ଏବଂ ଅନେକ ଥର ସେ ବିଶ୍ୱରୂପ ଦେଖାଇଛନ୍ତି। ସେଇଥିପାଇଁ ତାଙ୍କୁ ଅବତାର ଭାବେ ଗଣାଯାଏ ନାହିଁ। ହରିବଂଶ ପୁରାଣ, ବରାହ ପୁରାଣ ପରି ଅନେକ ପ୍ରାଚୀନ ଗ୍ରନ୍ଥ ତଥା ଶାସ୍ତ୍ରକୁ ଉଦ୍ଧୃତ କରି ପଣ୍ଡିତମାନେ ଯୁକ୍ତି କଲେଣି,- ବୁଦ୍ଧଙ୍କ ବଦଳରେ ଜଗନ୍ନାଥଙ୍କୁ ଅବତାର କରିଦେବା ଭାରତୀୟ ସାଂସ୍କୃତିକ ତଥା ଆଧ୍ୟାତ୍ମିକ ଇତିହାସର ଏକ ଅପଭ୍ରଂଶ।

ସୁତରାଂ ସିଂହଦ୍ୱାରରେ ଯେଉଁ ନୂତନ ଦଶାବତାର ମୂର୍ତ୍ତି ବସିବ ତା'ର ସଂଶୋଧନ ହେବା ଦରକାର। ଆବଶ୍ୟକତା ଆସିଲେ ଇତିହାସର ବି ସଂଶୋଧନ ହୁଏ।

ହଁ, ମହାପ୍ରଭୁ,- ଆପଣଙ୍କ ଅବତାର ପ୍ରଶ୍ନ ନେଇ ବିବାଦ ବଢୁଛି। ବିତର୍କ ବଢୁଛି। ଋଷିମାନଙ୍କର ଭିନ୍ନ ଭିନ୍ନ ମତ ଥାଏ। ଚିତ୍ରକରର କଳ୍ପନା କରିବାର ଅଧିକାର ବି ସ୍ୱତନ୍ତ୍ର। ବ୍ୟକ୍ତିର କୌଣସି କଳ୍ପନା ଶାସ୍ତ୍ର ସମ୍ମତ ନହେଲେ ଯେ ତାକୁ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରାଯିବା ଦରକାର, ଇଏ ବି ଏକ ପ୍ରଶ୍ନ ସୃଷ୍ଟି କରିଛି। କାରଣ ନିୟନ୍ତ୍ରିତ ସ୍ୱାଧୀନତାରେ ସୃଜନଶୀଳତା ନଥାଏ। ନୂଆ ସୃଷ୍ଟି ହୁଏ ନାହିଁ।

ସୁତରାଂ, ସିଂହଦ୍ୱାରର ଦଶାବତାର ମୂର୍ତ୍ତିରେ ଆପଣ ସେଇ ଚିତ୍ରକର କଳ୍ପନାର ସ୍ମୃତି ବହନ କରି ପୂର୍ବପରି ରହିବେ, ନା ଶାସ୍ତ୍ରୋଚିତ ବିଦ୍ୱାନଙ୍କର ନବମ ଅବତାରର ବୁଦ୍ଧ ହୋଇଯିବେ, ଇଏ ପ୍ରକୃତରେ ଏବେ ଏକ ବିବାଦ। ଏ ବିବାଦର କିପରି ଅନ୍ତ ହେବ ଆପଣ ହିଁ ଜାଣନ୍ତି।

ଏଇ କିଛି ବର୍ଷ ତଳେ ହିନ୍ଦୀ ଚଳଚିତ୍ର 'କମିନେ'ରେ ପ୍ରଦର୍ଶିତ ଏକ ଚିତ୍ରକୁ ନେଇ ଏଠି ବି ଅନେକ ବିବାଦ ଆସିଲା। ରାଜ୍ୟସାରା ପ୍ରତିବାଦ ସଭା ହେଲା। ଚଳଚିତ୍ରକୁ ନିଷେଧ କରିବାକୁ ଦାବି ଉଠିଲା। ବିବାଦୀୟ ଚିତ୍ରଟି ଥିଲା- ପାଇଖାନା ଘରେ ଏକ ନଗ୍ନ ଚିତ୍ର ଅଙ୍କା ଯାଇଥିଲା ଏବଂ ଚିତ୍ରର ଉପରେ "ଆପନା ହାତ୍ ଜଗନ୍ନାଥ" ଲେଖା ଯାଇଥିଲା। ଏ ସିନେମା ଥିଲା ବୟସ୍କଙ୍କ ପାଇଁ ସିନେମା।

ଏହା ସତ ଯେ, ଚଳଚିତ୍ର, ଛବି, ସ୍ଥାପତ୍ୟ, ପେଣ୍ଟିଙ୍ଗ ତଥା ବହି, ଏସବୁ କଳାତ୍ମକ ଅଭିବ୍ୟକ୍ତିର ଭିନ୍ନ ଭିନ୍ନ ରୂପ। ସୃଜନଶୀଳତାର ଏହା ବାହକ। ମତବ୍ୟକ୍ତ କରିବାର ଅଧିକାର ଭାବେ ଏହା ଗ୍ରହଣ କରାଯାଇଛି। କିନ୍ତୁ ଅଭିବ୍ୟକ୍ତି ବ୍ୟକ୍ତ କରିବାର ପ୍ରକ୍ରିୟା ଭିତରେ ଜଣେ ଯେତେବେଳେ ଅନ୍ୟଜଣଙ୍କର ଭାବନାକୁ ଆଘାତ ଦିଏ, ଏହା ସେତେବେଳେ ବ୍ୟକ୍ତିର ଅଧିକାର ଭିତରେ ରହେ ନାହିଁ। ସୁତରାଂ ଲକ୍ଷ ଲକ୍ଷ ଭକ୍ତ ଏଇ ଚଳଚିତ୍ର ବିରୁଦ୍ଧରେ ପ୍ରତିବାଦ କରିବା ଅଯୌକ୍ତିକ ନଥିଲା।

କିନ୍ତୁ ବେଳେ ବେଳେ ଏ ପ୍ରଶ୍ନ ମଧ୍ୟ ହୁଏ- ମୋ ଠାକୁର ଶ୍ରୀଜଗନ୍ନାଥ କ'ଣ ଏତେ ଦୁର୍ବଳ ଯେ ତାଙ୍କୁ କଦର୍ଥ କରି କିଏ ଜଣେ ବ୍ୟକ୍ତି ଚିତ୍ର ଆଙ୍କିଦେଲେ କିମ୍ବା ଚଳଚିତ୍ରଟିଏ କରିଦେଲେ, ସେ ଅପବିତ୍ର ହୋଇଯିବ? ସର୍ବଶକ୍ତିମାନ ଜଗନ୍ନାଥଙ୍କର ପୁଣି ସୁରକ୍ଷା କ'ଣ?

ଅନେକ ଦିନ ଧରି ବିବାଦ ଲାଗି ରହିଛି ଅରୁଚିକର ଭଜନକୁ ନେଇ। ଜଗନ୍ନାଥଙ୍କୁ ଗୁହାରି ଜଣାଇବାର ବ୍ୟକ୍ତିର ଭାଷା ତଥା ଆବେଗିକ ଆବେଦନ ବି ବଦଳିଗଲାଣି। ଆମ ଅଜାଣତରେ ଏଠି ଅପସଂସ୍କୃତିଟିଏ ଗଢ଼ା ସରିଲାଣି।

ହଁ ପ୍ରଭୁ! ଆପଣଙ୍କ ଏବର ଜଣାଣରେ ନା ଅଛି ସନ୍ଦେଶ ନା ଅଛି ଭକ୍ତି। 'ବାଧିଲା ଜାଣି କ୍ଷମା କର ନୋହିଲେ ରମା ରମଣ ଦଣ୍ଡେ ଦିଏ ଟାଳି ...'ରେ ଯେଉଁ ସମର୍ପଣ ଭାବ ଥିଲା, 'ହେ ପ୍ରଭୁ ଦେଖା ଦେ, ପୁଲେ ଟଙ୍କା ଦେ...'ରେ ସେଇ ଭାବ ନାହିଁ।

ଏହା କହିବା ବାହୁଲ୍ୟ ଯେ, ଜଗନ୍ନାଥଙ୍କ ସଂସ୍କୃତି ଏକ ସମନ୍ବୟର ସଂସ୍କୃତି। ଏହାର ଆକର୍ଷଣ ଦିନେ ଏତେ ଶକ୍ତ ଥିଲା ଯେ, ଏଇ ଆକର୍ଷଣରେ ଆକର୍ଷିତ ହୋଇ ଏ ପୁରୁଷୋତ୍ତମ କ୍ଷେତ୍ରକୁ ଆଦି ଶଙ୍କରାଚାର୍ଯ୍ୟ, ଯୀଶୁଖ୍ରୀଷ୍ଟ, ଜୟଦେବ, ନାନକ, କବି ସାଲବେଗଙ୍କ ପରି ଧାର୍ମିକ ପୁରୁଷମାନେ ଧାଇଁ ଆସିଥିଲେ ଏବଂ ଏକ ନୀତିପୂର୍ଣ୍ଣ ସମାଜ ଗଠନର ଆହ୍ୱାନ ଦେଇ କିଛି କବି ବି ଗାଇ ଦେଇଥିଲେ- 'ଜଗନ୍ନାଥ ହୋ କିଛି ମାଗୁନାହିଁ ତୋତେ ...'।

କିନ୍ତୁ ବିଡ଼ମ୍ବନା ଯେ, ଅଶ୍ଳୀଳ ସଂଗୀତ ବିରୁଦ୍ଧରେ ଏଠି ଅନେକ ଦିନ ଧରି ପ୍ରତିବାଦ ହେଉଥିଲେ ବି ଏବଂ ଏପରି ସଂଗୀତ ବନ୍ଦ ପାଇଁ ଆଇନଟିଏ ପାରିତ ହେବାର ପ୍ରତିଶ୍ରୁତି ମିଳିଥିଲେବି, ଏହା ଏ ପର୍ଯ୍ୟନ୍ତ ହୋଇ ପାରିନାହିଁ।

ହଁ, ପ୍ରଭୁ! ଆପଣଙ୍କୁ ନେଇ ପ୍ରକୃତରେ ବିବାଦ ବଢୁଛି। ଏହାର କାରଣ ଜାଣି ହେଉନାହିଁ। ଆପଣ ତ ସ୍ୱଚ୍ଛ। ପବିତ୍ର।

ତଥାପି ଆପଣଙ୍କୁ ନେଇ ସୃଷ୍ଟି ହେଉଥିବା ବିବାଦରେ ଭକ୍ତି ଅଛି ନା ନିନ୍ଦା, ଆପଣ ହିଁ ଠିକ୍ କରିବେ। ମଣିଷର ଚିନ୍ତା ପରିବର୍ତ୍ତନ କରାଇ ଦେବାର କ୍ଷମତା କେବଳ ଆପଣଙ୍କର ଅଛି।



# ବାପୁ ପାଇଖାନା

ଗତ ୨୦୧୨ ଜୁନ୍ ମାସ ଶେଷ ସପ୍ତାହରେ ବାଲେଶ୍ୱରର ଧାମରା ଠାରେ ଭାରତର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ଜୟରାମ ରମେଶ ଏକ ଜୈବ ପାଇଖାନାର ଉଦ୍‌ଘାଟନ କରିଛନ୍ତି । ଏହାକୁ ପ୍ରସ୍ତୁତ କରିଛନ୍ତି ଭାରତର ପ୍ରତିରକ୍ଷା ଗବେଷଣା ଏବଂ ଉନ୍ନୟନ ସଂସ୍ଥା ବା ଡ଼ି.ଆର୍.ଡ଼ି.ଓ. । ପାଇଖାନାର ନାଁକୁ ଜାତିର ଜନକ ବାପୁଜୀଙ୍କ ନାଁରେ ନାମିତ କରାଯାଇଛି । ନାଁ ହେଉଛି ବାପୁ ପାଇଖାନା ବା ବାପୁ ଟଏଲଟ୍ । ରମେଶ କହନ୍ତି- ଜୀବାଣୁ ମୁକ୍ତ ଏ ପାଇଖାନା ଭାରତର ଗ୍ରାମାଞ୍ଚଳରେ ରହୁଥିବା ମହିଳାମାନଙ୍କର ଗର୍ବ, ସୁରକ୍ଷା ତଥା ଆତ୍ମ ସମ୍ମାନର ପ୍ରତୀକ ହେବ । ଅଗ୍ନି ମିସାଇଲ୍ ଠାରୁ ଏହା ହେବ ଆହୁରି ଗୁରୁତ୍ୱପୂର୍ଣ୍ଣ । ସୁତରାଂ ବାପୁ ଟଏଲଟର ନାଁ ହୁଏତ ବାପୁ ମିସାଇଲ ରଖାଯାଇପାରେ- ମନ୍ତ୍ରୀ ଜୟରାମ ରମେଶ ଦାବୀ କରନ୍ତି ।

ମନ୍ତ୍ରୀ ମହୋଦୟଙ୍କ ଉଦ୍ୟମ ବେଶ୍ ଭଲ । ଗ୍ରାମାଞ୍ଚଳର ପରିମଳ ବ୍ୟବସ୍ଥା ଉନ୍ନତ ନହେଲେ ଭାରତ ଏକ ବିକଶିତ ରାଷ୍ଟ୍ର ହେବା ଅସମ୍ଭବ । ଅଗ୍ନି ପରି କ୍ଷେପଣାସ୍ତ୍ର ନହେଲେ ଏ ଦେଶର ସୁରକ୍ଷା ଅନିଶ୍ଚିତ । ସେଇଥି ପାଇଁ ତ ନିର୍ମଳ ଭାରତ ଅଭିଯାନ ଏବଂ ଅଗ୍ନି ପରି ଆନ୍ତଃମହାଦେଶୀୟ ବାଲାଷ୍ଟିକ୍ କ୍ଷେପଣାସ୍ତ୍ର ପ୍ରସ୍ତୁତି । କିନ୍ତୁ ଅଭିଯୋଗ ଆସୁଛି- ମିସାଇଲ ନାଁ ଏଠି ବାପୁ ମିସାଇଲ୍ ହେବ ଏବଂ ପାଇଖାନାର ନାଁ ଏଠି ବାପୁ ପାଇଖାନା ହେବ, ଏହା କିପରି ଅରୁଚିକର ଲାଗୁଛି । ଗାନ୍ଧିଜୀଙ୍କ ପ୍ରତି ଏହା ଅସମ୍ମାନ ପରି ମନେ ହେଉଛି । ଗାନ୍ଧିଜୀ ସାରାଜୀବନ ଯୁଦ୍ଧକୁ ଘୃଣା କରୁଥିଲେ ।

ଗତ କିଛିଦିନ ତଳେ ଭାରତୀୟ ଦେବୀ 'କାଳୀ'ଙ୍କ ନାଁରେ ବିଦେଶରେ ମଦ ତିଆରି ହୋଇଥିଲା । ଭାରତୀୟ ଆବେଗକୁ ଏହା କ୍ଷୁର୍ଣ୍ଣ କରୁଛି କହି ଭାରତୀୟମାନେ ଏହାକୁ ବିରୋଧ କରିଥିଲେ । 'କମିନେ' ଚଳଚିତ୍ରର ଏକ ଦୃଶ୍ୟରେ ପାଇଖାନା ଘରେ ଏକ ଲଙ୍ଗଳା ଚିତ୍ର ତଳେ 'ଆପନା ହାଥ୍ ଜଗନ୍ନାଥ' ଲେଖାଥିବା ଦୃଶ୍ୟକୁ ଆମ ଠାକୁର ଜଗନ୍ନାଥଙ୍କ ପ୍ରତି ଏହା ଅସମ୍ମାନ କହିଏହାର ପ୍ରତିବାଦ ହୋଇଥିଲା । ଏବଂ ଅନେକ ସମୟରେ ଗାନ୍ଧିଜୀଙ୍କୁ କଦର୍ଥ କରି କିଛି ଲେଖା ପ୍ରକାଶ ପାଇଲେ; ଛବି ତିଆରି ହେଲେ କିମ୍ବା ଚଳଚିତ୍ର ପ୍ରସ୍ତୁତ ହେଲେ ଆମେ ବିରୋଧ କରୁ । ହେବା ବି ସ୍ୱାଭାବିକ । ମତବ୍ୟକ୍ତ କରିବାର ସ୍ୱାଧୀନତାରେ ଅନ୍ୟର ଆବେଗ ତଥା ବିଶ୍ୱାସ ଯେପରି ଆହତ ନହୁଏ ଦେଖିବା କଥା ।

୧୯୬୨ ମସିହାରେ ବ୍ରିଟେନରେ ରହୁଥିବା ଜଣେ ଭାରତୀୟ ଗାନ୍ଧିବାଦୀ ଶ୍ରୀ ମୋତିଲାଲ କୋଠାରୀ ଗାନ୍ଧିଙ୍କ ଉପରେ ଏକ ଚଳଚିତ୍ର କରିବାକୁ ଚଳଚିତ୍ର ନିର୍ମାତା ଆଟେନ୍‌ବର୍ଗଙ୍କୁ ଅନୁରୋଧ କଲେ। ଏବଂ ଗାନ୍ଧିଙ୍କ ବିଷୟରେ ଜାଣିବାକୁ କୋଠାରୀ ସାହେବ, ଆଡ଼େନ୍‌ବର୍ଗଙ୍କୁ ଲୁଇଫିସରଙ୍କ ଦ୍ୱାରା ଲିଖିତ ଲାଇଫ୍ ଅଫ୍ ମହାତ୍ମାଗାନ୍ଧୀ ପୁସ୍ତକଟି ଦେଲେ। ଠିକ୍ ଏହାର ବର୍ଷକ ପରେ ଆଟେନ୍‌ବର୍ଗ ଭାରତ ଆସି ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କୁ ଗାନ୍ଧୀ ଚଳଚିତ୍ରର ଯୋଜନା କଥା କହିଲେ। ଆଟେନ୍‌ବର୍ଗଙ୍କ ଠାରୁ ସବୁ ଶୁଣିଲା ପରେ ନେହେରୁ ଗୋଟିଏ କଥା କହିଲେ- "ଯାହା କରୁଛ କର; କିନ୍ତୁ ଗାନ୍ଧୀଙ୍କୁ ଅସମ୍ମାନିତ କରିବ ନାହିଁ। କାରଣ ଗାନ୍ଧୀଙ୍କ ଅସମ୍ମାନକୁ ଭାରତୀୟମାନେ ସହ୍ୟ କରି ପରନ୍ତି ନାହିଁ। ଗାନ୍ଧି ଏକ ମହାପୁରୁଷ"।

ସମସାମୟିକ ଭାରତରେ ଆଟେନ୍‌ବର୍ଗଙ୍କ 'ଗାନ୍ଧୀ' ଚଳଚିତ୍ର ସର୍ବୋତ୍କୃଷ୍ଟ। ଗାନ୍ଧୀଜୀଙ୍କ ଦର୍ଶନ, ଚରିତ୍ର ଏବଂ ଭାରତର ସ୍ୱାଧୀନତା ସଂଗ୍ରାମରେ ଗାନ୍ଧୀଙ୍କ ଭୂମିକାର ବର୍ଣ୍ଣନା ଏଥିରେ ବେଶ୍ ସୁସଂଯତ। ଗାନ୍ଧୀ ସିନେମା ଛ'ଟା ଓସ୍କାର ପାଇଥିଲା।

କିନ୍ତୁ ବାପୁ ମିସାଇଲ୍ ଏବଂ ବାପୁ ଟଏଲେଟ୍‌ର ନାମକରଣ ଏବେ କିପରି ଭିନ୍ନ ଲାଗେ। ଗାନ୍ଧୀଙ୍କୁ ମନେ ରଖିବାକୁ ଏଇଟା ଯେ ଭଲ ବାଟ, ଏଥିନେଇ ପ୍ରଶ୍ନ ସୃଷ୍ଟି ହେଉଛି।

ଅନେକ ପ୍ରଶ୍ନ କରନ୍ତି- ବାପୁ ଏବଂ ମିସାଇଲ ଏହା ଯୋଡ଼ି ହେବ କିପରି। ଅହିଂସାର ପୂଜାରୀ ଗାନ୍ଧୀଙ୍କୁ ମିସାଇଲରେ ନାମିତ କରିବା ଯେତିକି ଅସମ୍ମାନ ଜନକ ସେତିକି ଅପ୍ରାସଙ୍ଗିକ। ଯୁଦ୍ଧ ତଥା ଯୁଦ୍ଧାସ୍ତ୍ର ପ୍ରତି ଗାନ୍ଧୀଙ୍କ ଆଭିମୁଖ୍ୟକୁ ନେଇ ମୌଲାନା ଆବୁଲ କଲାମ ଆଜାଦ୍ ତାଙ୍କ ରଚିତ ପୁସ୍ତକ 'ଇଣ୍ଡିଆ ଉଇନ୍‌ସ ଫ୍ରିଡ଼ମ'ରେ ଏକ ଚମତ୍କାର ବର୍ଣ୍ଣନାଟିଏ ଦେଇଛନ୍ତି। ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ ଦିନେ ବାପୁଜୀ ତତ୍କାଳୀନ ବଡ଼ଲାଟ୍ 'ଲର୍ଡ଼ ଲିନ୍ ଲିଥିଗୋ'ଙ୍କ ପାଖକୁ ଯାଇଥିଲେ। ଏବଂ ବ୍ରିଟିଶ ଅଧିବାସୀ ସମସ୍ତ ଅସ୍ତ୍ର ତ୍ୟାଗ କରି ହିଟଲରଙ୍କୁ ଏକ ଆଧ୍ୟାତ୍ମିକ ଉପାୟରେ ପ୍ରତିରୋଧ କରୁ ବୋଲି ପ୍ରସ୍ତାବ ଦେଲେ। ଏପରି ଏକ ପ୍ରସ୍ତାବ କଥା ଶୁଣି ଲିନ୍‌ଲିଥିଗୋ ଆଶ୍ଚର୍ଯ୍ୟ ହୋଇଗଲେ। ଏତେ ଆଶ୍ଚର୍ଯ୍ୟ ହେଲେ ଯେ ସେ କିଛି ସମୟ ନିର୍ବାକ୍ ହୋଇଗଲେ। ଅବସ୍ଥା ଏପରି ହେଲା, ଗାନ୍ଧୀଜୀ ନୀରବରେ ସେଠାରୁ ଉଠିଲେ ଏବଂ ନିଜର ଗାଡ଼ି ପାଖକୁ ଗଲେ। ସାଧାରଣତଃ କିନ୍ତୁ, ଯେତେବେଳେ ବାପୁଜୀ ବଡ଼ଲାଟଙ୍କୁ ସାକ୍ଷାତ୍ କରିବାକୁ ଯାଆନ୍ତି, ସବୁବେଳେ କଥାବାର୍ତ୍ତା ଶେଷରେ ବଡ଼ଲାଟ କଲିଙ୍ଗବେଲ୍ ଦେଇ ନିଜର ଏ.ଡ଼ି.ସି.କୁ ଡ଼ାକି ବାପୁଙ୍କୁ କାର୍ ପାଖକୁ ପାଛୋଟି ନେଇଯିବାକୁ ନିର୍ଦ୍ଦେଶ ଦେଇଥାଆନ୍ତି। ସେଦିନ କିନ୍ତୁ ଇଏ ସବୁ କିଛି ହେଲାନି। ବଡ଼ଲାଟ୍ ବିଦାୟ ଦେଲେ ନାହିଁ କିମ୍ବା ଏ.ଡ଼ି.ହି.କୁ ଡ଼ାକିଲେନି। ଗାନ୍ଧୀଜୀ ଏକ ଲଘୁ ଆଲୋଚନାରେ

ଏ ଘଟଣା ମୌଲାନା ଆଜାଦଙ୍କୁ କହିଥିବା କଥା ମୌଲାନା ତାଙ୍କ ବହିରେ ଲେଖିଛନ୍ତି।

ହଁ, ଦ୍ୱିତୀୟ ନାମକରଣ ହେଲା- ବାପୁ ପାଇଖାନା କଥା। ଏଥିରେ ଦ୍ୱିମତ ନାହିଁ ଯେ ବାପୁଜୀ ଏକ ନିର୍ମଳ ପରିମଳ ବ୍ୟବସ୍ଥା ଚାହୁଁଥିଲେ। ନିଜେ ପାଇଖାନା ସଫା କରୁଥିଲେ। ଏବଂ ଅନ୍ୟମାନଙ୍କୁ ମଧ ପାଇଖାନା ସଫା ପାଇଁ ଅନୁରୋଧ କରୁଥିଲେ। ଗାନ୍ଧୀଙ୍କ ଆଶ୍ରମରେ ରହିବାକୁ ଆସୁଥିବା ପ୍ରତ୍ୟେକ ଅନ୍ତେବାସୀମାନେ ପ୍ରଥମେ ପାଇଖାନା ସଫା ହିଁ କରନ୍ତି। ମେହେନ୍ତରମାନେ ମୁଣ୍ଡରେ ମଇଳା ବୋହି ନେଉଥିବା କାର୍ଯ୍ୟ ହିଁ ଗାନ୍ଧୀଜୀଙ୍କ ପାଇଁ ଥିଲା ଅସହ୍ୟ। ଦକ୍ଷିଣ ଆଫ୍ରିକାରୁ ଶାନ୍ତି ନିକେତନ ପର୍ଯ୍ୟନ୍ତ  ସବୁଠି ତାଙ୍କ ରହଣୀ ଭିତରେ ନିଜେ ବାପୁ ପାଇଖାନା ସଫା କରୁଥିଲେ ଏବଂ ଜାତି, ବର୍ଣ୍ଣ, ଧନୀ ତଥା ଗରିବ ନିର୍ବିଶେଷରେ ସମସ୍ତଙ୍କୁ ଏଇକାମ ପାଇଁ ପ୍ରବର୍ତ୍ତାଉ ଥିଲେ। ଗାନ୍ଧୀଙ୍କ ମତରେ ସେତେବେଳେ ପାଇଖାନା ସଫା ଥିଲା ଏକ ମହାମାନବୀୟ କାର୍ଯ୍ୟ ଏବଂ ପାଇଖାନା ଯେପରି ସଫା କରିବାକୁ ନହେବ ସେଥିପାଇଁ ଉପାୟ ଉଦ୍ଭାବିତ ହେବା ଉଚିତ୍  ବୋଲି ମତ ପ୍ରକାଶ କରୁଥିଲେ। କିନ୍ତୁ ଉଦ୍ଭାବିତ ପାଇଖାନାର ନାଁ ବାପୁ ହୋଇଯିବ, ଏହା ଏକ ଅପରିଣାମଦର୍ଶୀ ଚିନ୍ତା।

ଗାନ୍ଧୀଙ୍କ ନାଁରେ ଏ ମିସାଇଲ ଏବଂ ପାଇଖାନା କାହିଁକି ? ଏପରି ପ୍ରଶ୍ନର ସମ୍ଭବତଃ ଉତ୍ତର ହେଲା,- ଗାନ୍ଧିଜୀଙ୍କ ନାଁରେ ଆଉ ବହି ଲେଖା ଯାଉନାହିଁ। ଚଳଚିତ୍ର ହେଉନାହିଁ। ସେମିନାର ହେଉନାହିଁ। ସତେ ଯେମିତି ବାପୁଜୀ ଅପ୍ରାସଙ୍ଗିକ ହୋଇଗଲେଣି। ଲୋକେ ତାଙ୍କୁ ଭୁଲି ଗଲେଣି। ବାପୁଙ୍କୁ ତେଣୁ ମନେ ରଖିବାକୁ ଏହା ଏକ ପନ୍ଥା ହୋଇପାରେ - ବାପୁ ଟଏଲଟ୍।

'ଲାଗେ ରହୋ ମୁନ୍ନା ଭାଇ' ହିନ୍ଦୀ ଚଳଚିତ୍ରର ଏକ ଦୃଶ୍ୟରେ ବାପୁଜୀ ନିଜେ ଯେଉଁ ସଂଳାପ ଦେଇଥିଲେ ଆଜି ଏହା ଏଇଠି ପ୍ରଣିଧାନ ଯୋଗ୍ୟ। ବାପୁ କହୁଥିଲେ- ଚିତ୍ର, ବହି, ପ୍ରତିମୂର୍ତ୍ତିରେ ମୁଁ ନଥାଏ। ବେଶିଦିନ ରହି ବି ପାରେନି। ପାରୁଛ ଯଦି ଏସବୁକୁ ଚିରିଦିଅ। ଭାଙ୍ଗିଦିଅ। ମୋତେ କେବଳ ହୃଦୟରେ ସାଇତି ରଖ।

ଏ ଲେଖକର ଏ ଶେଷକଥା- ବାପୁଙ୍କ ନାଁରେ ପାଇଖାନା ମୋତେ ସ୍ପୃହଣୀୟ ନୁହେଁ।



# ଗୋଷ୍ଠୀ ହିଂସା

ଭାରତରେ ଗୋଷ୍ଠୀ ହିଂସା ବା ମବ୍ ଭାଓଲେନ୍ସ ନୂଆ କଥା ନୁହେଁ। କିନ୍ତୁ ନୂଆ କଥା ହେଲା, ଏଠି ଏହା କ୍ରମଶଃ ଏବେ ବୃଦ୍ଧି ପାଇବାରେ ଲାଗିଛି। ଅତର୍କିତ ଭାବେ କିଛି ଲୋକ ଏକାଠି ହୋଇ ଏବଂ ହିଂସ୍ର ହୋଇଯାଇ କାହାକୁ ଆକ୍ରମଣ କରିବା ଭାରତୀୟ ସମାଜର ନୂଆ ଏକ ଛବିର ପ୍ରତିଫଳନ କରୁଛି।

ଏଇ ଯେମିତି ଏବେ 'ମାନସର'ର ମାରୁତି କଂପାନୀରେ ହେଲା। ମାରୁତି କଂପାନୀର ଜଣେ ବରିଷ୍ଠ ମ୍ୟାନେଜରଙ୍କୁ କଂପାନୀର କିଛି ଶ୍ରମିକ ଗୋଷ୍ଠୀ ସଂଘବଦ୍ଧ ଭାବେ ପୋଡ଼ି ମାରିଦେଲେ।

ଯାହା ଜଣାଯାଏ, ମାରୁତି କଂପାନୀରେ ଶ୍ରମିକ ଅଶାନ୍ତି ବେଶ୍ କିଛିଦିନ ଧରି ଥିଲା। ଘଟଣା ଦିନ ଶ୍ରମିକମାନେ କାମ ବନ୍ଦ କରି ତଳେ ପ୍ରତିବାଦ ସଭା ପାଇଁ ସମବେତ ହୋଇଥିଲେ। ଉପର ମହଲାରେ କଂପାନୀର ମ୍ୟାନେଜମେଣ୍ଟ ସହ ନେତାଙ୍କର ଆଲୋଚନା ଚାଲିଥିଲା। ଉପର ମହଲାରେ ହଠାତ୍ ହୋ ହଲ୍ଲା ହେଲା। ନିଆଁ ଲାଗିଗଲା। ମୂଳଚାଳ ଆଲୋଚନାରେ ସଂପୃକ୍ତ ଥିବା କଂପାନୀର ମାନବ ସମ୍ବଳ ପରିଚାଳକ ଅଣନିଶ୍ୱାସୀ ଏବଂ ପୋଡ଼ି ହୋଇ ସେଠି ମୃତ୍ୟୁବରଣ କଲେ। ଏହା ଗୋଷ୍ଠୀ ହିଂସାର ପରିଣତି ବୋଲି କୁହାଯାଏ।

ଗତ କିଛିଦିନ ତଳେ ମଧ୍ୟ ମଧ୍ୟପ୍ରଦେଶର ଏକ ମହାବିଦ୍ୟାଳୟରେ ଛାତ୍ର ୟୁନିୟନର ନିର୍ବାଚନକୁ ନେଇ ସେଠାରେ କିଛି ଛାତ୍ର ଗୋଷ୍ଠୀ କଲେଜର ଜଣେ ପ୍ରଫେସରଙ୍କୁ ପିଟିପିଟି ମାରିଦେଲେ। ପ୍ରଫେସରଙ୍କର କିଛି ହିଁ ଦୋଷ ନଥିଲା। କଲେଜ ଛାତ୍ର ସଂଘର ଉପଦେଷ୍ଟା ଭାବେ ୟୁନିୟନ ନିର୍ବାଚନ ହେବ ନାହିଁ ବୋଲି ପରିଚାଳନା ବୋର୍ଡ଼ର ନିଷ୍ପତ୍ତି ଶୁଣାଇବାକୁ ସେ କେବଳ ସମବେତ ଛାତ୍ରମାନଙ୍କ ପାଖକୁ ଯାଇଥିଲେ। ଏବଂ ଛାତ୍ର ୟୁନିୟନ ନିର୍ବାଚନ ସଂପର୍କରେ ଏପରି ସଂବାଦ ଶୁଣୁ ଶୁଣୁ ଛାତ୍ରମାନେ ଏତେ ଉତ୍‌କ୍ଷିପ୍ତ ହୋଇଗଲେ ଯେ, ଖବର ଦେଉଥିବା ପ୍ରଫେସରଙ୍କୁ ନିସ୍ତୁକ ମାଡ଼ ମାରିଲେ। ଘଟଣା ସ୍ଥଳରେ ହିଁ ପ୍ରଫେସରଙ୍କର ମୃତ୍ୟୁ ହେଲା। ଏବଂ ଏଇ କିଛିଦିନ ତଳେ ବି ଏକ ସ୍ଥାନୀୟ ବିଚାରାଳୟରେ ଜଣେ ଅପରାଧିର ବିଚାର ଚାଲିଥିବା ବେଳେ ବାହାରର କିଛି ଲୋକ କୋର୍ଟ ରୁମ୍ ଭିତରକୁ ପଶିଯାଇ ବିଚାରାଧୀନ ଅପରାଧିକୁ ବାହାରକୁ ଟାଣି ଆଣିଲେ

ଏବଂ କୋର୍ଟ ବାରଣ୍ଡାରେ ହତ୍ୟା କଲେ।

ଭାରତରେ ଇଏ ଗୋଷ୍ଠୀ ହିଂସାର ଛବି। କେଉଁଠି କେମିତି ବସ୍ ଦ୍ୱାରା କୌଣସି ଦୁର୍ଘଟଣା ଘଟିଗଲେ ଲୋକେ ବସ୍ କଣ୍ଡକ୍ଟର ସମେତ ସାଧାରଣ ଯାତ୍ରୀଙ୍କୁ ମାଡ଼ ମାରି ବସ୍ ପୋଡ଼ିଦେବା ଏଠି ଯେମିତି ଏକ ସାଧାରଣ ଘଟଣା। ଡ଼ାକ୍ତରଖାନାରେ ଚିକିତ୍ସାର ଅବହେଳାର ଅଭିଯୋଗ ଆଣି ଡ଼ାକ୍ତରଙ୍କୁ ଆକ୍ରମଣ କରିବା ଆଉ ଏଠି ନୂଆ ଲାଗୁନାହିଁ। ଗୋଷ୍ଠୀ ହିଂସାର ଏପରି ତାଲିକା ଦେଇ ବସିଲେ ନିଶ୍ଚୟ ଦୀର୍ଘ ହୋଇଯିବ।

ଗୋଷ୍ଠୀ ହିଂସା ହେଉଛି ଏକ ଗୋଷ୍ଠୀ ବିଶୃଙ୍ଖଳା। ଏଥିରେ କିଛି ଅସଂଗଠିତ ଲୋକ ଏକାଠି ହୋଇ ଯାଆନ୍ତି। ଗୋଟିଏ ଉଦ୍ଦେଶ୍ୟ ତଥା ଲକ୍ଷ ରଖି ହିଂସ୍ର ହୁଅନ୍ତି। ଶାନ୍ତି ନଷ୍ଟ କରିବା ହିଁ ଏଥିରେ ଏକମାତ୍ର ଅଭିପ୍ରାୟ ଥାଏ। କୌଣସି ବିଚାରାଳୟର ବିଚାରକୁ ଅପେକ୍ଷା ନକରି ଘଟଣା ସ୍ଥଳରେ ଅଭିଯୁକ୍ତ ଅପରାଧିକୁ ଦଣ୍ଡ ଦେବାକୁ ଏମାନେ ତୁରନ୍ତ ରାୟ ବୋଲି ଭାବନ୍ତି।

ଭାରତୀୟ ପିଙ୍ଗଲ କୋର୍ଡ଼ରେ ଗୋଷ୍ଠୀ ହିଂସା ପାଇଁ ବି ଦଣ୍ଡ ବ୍ୟବସ୍ଥା ରହିଛି। ଗୋଷ୍ଠୀ ହିଂସାରେ ଜଣେ ଅପରାଧ କଲେ ମଧ୍ୟ ସେଠାରେ ଉପସ୍ଥିତ ଥିବା ସମସ୍ତ ଅଭିଯୁକ୍ତଙ୍କୁ ଦୋଷୀ ବୋଲି ଧରାଯାଏ। କିନ୍ତୁ ବିଡ଼ମ୍ବନା ହେଲା, ଅନେକ ଘଟଣାରେ ଗୋଷ୍ଠୀ ହିଂସାରେ ସଂପୃକ୍ତ ଥିବା ଅପରାଧିଙ୍କୁ ଦଣ୍ଡ ମିଳୁନାହିଁ। ଆସାମର ନାବାଳିକା ଝିଅକୁ ଗଣ ଅସଦାଚରଣ କରିଥିବା ସମସ୍ତ ଅପରାଧି ବହୁଦିନ ପର୍ଯ୍ୟନ୍ତ ଗିରଫ ହୋଇନଥିବା କଥା ସମ୍ବାଦରେ ଆସିଥିଲା।

ଭାରତର ଜାତୀୟ ଅପରାଧ ରେକର୍ଡ଼ ବ୍ୟୁରୋର ଏବେ ଏକ ପରିସଂଖ୍ୟାନ ଆସିଛି। ସେ ପରିସଂଖ୍ୟାନ ଅନୁଯାୟୀ ଗତବର୍ଷ ଅର୍ଥାତ୍ ୨୦୧୧ ମସିହାରେ ଭାରତରେ ଗୋଷ୍ଠୀ ହିଂସାର ସଂଖ୍ୟା ଥିଲା ଛପନ। ଏଥିରୁ ମାତ୍ର ୨୦ଟି ଘଟଣାରେ ଅଭିଯୋଗପତ୍ର ଦାଖଲ ହୋଇପାରିଥିଲା। ହିଂସା ଘଟଣା ଘଟାଇଥିବା ଅନେକ ବ୍ୟକ୍ତି ଏବେବି ବାହାରେ ବୁଲୁଛନ୍ତି।

ଗୋଷ୍ଠୀ ହିଂସା କାହିଁକି ବୃଦ୍ଧି ପାଉଛି ବୋଲି ପ୍ରଶ୍ନ ହେଲେ ଉତ୍ତର ଆସେ, ଏଇ ହିଂସାରେ ସଂପୃକ୍ତ ଅପରାଧିମାନଙ୍କୁ କଠୋର ଦଣ୍ଡ ମିଳେ ନାହିଁ। ଅପରାଧିଙ୍କ ବିରୁଦ୍ଧରେ ସାକ୍ଷୀ ଦେବାକୁ ସାକ୍ଷୀ ନାହାନ୍ତି କିମ୍ବା ସାକ୍ଷ୍ୟ ଦେବାକୁ ଇଚ୍ଛୁକ ବ୍ୟକ୍ତିଙ୍କୁ ଧମକ ଦିଆଯାଇ ଚୁପ୍ କରାଯାଇଥାଏ। ଏବଂ ସାମୁହିକ ଲକ୍ଷ ଏବଂ ଉଦ୍ଦେଶ୍ୟ ଅନ୍ୟ କଥାରେ କହିଲେ 'କମନ୍ ଇଣ୍ଟେନ୍‌ସନ୍ ଏବଂ କମନ୍ ଅବଜେକ୍ଟ' ପିଙ୍ଗଳକୋର୍ଡ଼ରେ ଏଇ ଦୁଇ ଶବ୍ଦ ଏତେ ଦ୍ୱନ୍ଦପୂର୍ଣ୍ଣ ଯେ ଏହାକୁ ବିଚାରରେ ପ୍ରମାଣ କରିବା କଷ୍ଟ। ସତକଥା ହେଲା, ଗୋଷ୍ଠୀ ହିଂସାର ଅପରାଧିକୁ ଏଠି ଦଣ୍ଡ ମିଳିବା ସହଜ ନୁହେଁ। କାରଣ ହେଉଛି, ଏ

ସଂପର୍କରେ ଏଠାରେ ଭଲ ଆଇନ ନାହିଁ।

ସମାଜ ବିଜ୍ଞାନୀମାନେ କିନ୍ତୁ ନୂଆ କିଛି କାରଣ ଦିଅନ୍ତି। ସେମାନଙ୍କର ମତ ହେଲା, ଭାରତର ଗୋଷ୍ଠୀ ହିଂସା ହେଉଛି ସାଂପ୍ରତିକ ଭାରତୀୟ ସମାଜର ପ୍ରତିଫଳନ। କାରଣ ବ୍ୟକ୍ତିର ଅସହିଷ୍ଣୁତା ବଢ଼ିଛି। ମାନସିକ ଅବସାଦ ବଢ଼ିଛି। ଏବଂ ସାମାନ୍ୟ କଥାରେ କ୍ରୋଧ ବଢ଼ିଛି। କ୍ଷମତା ତଥା ଧନ ପାଇଁ ମଣିଷ ଏଠି ଯେକୌଣସି ସ୍ତରକୁ ଯିବାକୁ ବି ପ୍ରସ୍ତୁତ। ଏବଂ ସବୁଠାରୁ ବଡ଼କଥା ହେଲା, ଅପରାଧିମାନଙ୍କୁ ରାଜନୈତିକ ଆଶ୍ରୟ ମିଳିବାରେ ମୋଟେ ଅସୁବିଧା ହେଉନାହିଁ।

ଗୋଷ୍ଠୀ ହିଂସା ଘଟାଇବାରେ ସଂପ୍ରତି ଗଣମାଧ୍ୟମର ଭୂମିକା ମଧ୍ୟ ଚର୍ଚ୍ଚାକୁ ଆସିଲାଣି। ଅଭିଯୋଗ ହେଉଛି, ଅନେକ କ୍ଷେତ୍ରରେ କିଛି ଗଣମାଧ୍ୟମର ପ୍ରତିନିଧି ନିଜ ସଂସ୍ଥାର ଟି.ଆର୍.ପି. ବୃଦ୍ଧି ପାଇଁ ଗୋଷ୍ଠୀ ହିଂସାକୁ ଉସ୍କାଉଛନ୍ତି। ଏବଂ ଏହା ତାଙ୍କର ଏକ ସ୍ୱତନ୍ତ୍ର, ଏକ୍ସକ୍ଲୁଜିଭ ରିପୋର୍ଟ କହି ପ୍ରଚାର କରୁଛନ୍ତି। ଆସାମର ପବ୍‌ରୁ ଫେରୁଥିବା ଝିଅ ଉପରେ ଯେଉଁ ଗଣ ଅସଦାଚରଣ ହେଲା, ତାହାକୁ ଜଣେ ରିପୋର୍ଟର ଉସକାଇ ଥିଲେ ବୋଲି ଏବେ ଆଲୋଚନାରେ ଆସେ।

ଗୋଷ୍ଠୀ ହିଂସା କମିବ ବୋଲି ପ୍ରଶ୍ନ କଲେ ଉତ୍ତର ମଧ୍ୟ ଆସେ, ଏ କାମ ପୋଲିସର। ଲୁହାବୁହା ଗ୍ୟାସ ଏବଂ ୱାଟର କ୍ୟାନନ୍ ଏସବୁ ଏବେ ପୁରୁଣା ହୋଇଗଲାଣି। ପୋଲିସ ତେଣୁ ନୂଆ ଅସ୍ତ୍ର ଖୋଜୁ। ରାଷ୍ଟ୍ର ନୂଆ ଆଇନ ତିଆରି କରୁ।

ଏ ଲେଖକ କିନ୍ତୁ ଗୋଷ୍ଠୀ ହିଂସାର ନିରାକରଣର ଦାୟିତ୍ୱ ଆମର ଶିକ୍ଷା ବ୍ୟବସ୍ଥା ଏବଂ ପରିବାରକୁ ଦେବାକୁ ଚାହେଁ। ଭଲ ନାଗରିକଟିଏ ତିଆରି କରିବାର ଖସଡ଼ା ଆମ ଶିକ୍ଷା ପାଠ୍ୟକ୍ରମରେ ରହିବା ଦରକାର। ଭଲ ପିଲାଟିଏ ଗଢ଼ିବାର ପ୍ରୟାସ ଆମ ପରିବାରର ରହିବା ବି ଉଚିତ୍।

ସାମାନ୍ୟ ଚୋରୀ ଘଟଣାରେ ଧରା ପଡ଼ିଥିବା ପିଲାକୁ ଗଛରେ ବାନ୍ଧି ପଟି ପିଟି ମାରିଦେବାର ବିଭତ୍ସ ରୂପ ଏଠି ଆଉ କେତେ ଦିନ ?



# ସାମାଜିକ ଆନ୍ଦୋଳନର ମୃତ୍ୟୁ !

ଭାରତରେ ଦୁଇଟି ବୃହତ ସାମାଜିକ ଆନ୍ଦୋଳନ ଜନ୍ମ ହୋଇ ମାତ୍ର ଅଳ୍ପ ଦିନର ରହଣୀ ପରେ ମୃତ୍ୟୁ ବରଣ କରିଛି। ସେ ହେଉଛି ଆନ୍ନା ହଜାରେଙ୍କ ଲୋକପାଳ ଆନ୍ଦୋଳନ ଏବଂ ବାବା ରାମଦେବଙ୍କ କଳାଧନ ଆନ୍ଦୋଳନ। ଅବଶ୍ୟ ଏଇ ଦୁଇ ଆନ୍ଦୋଳନ ପ୍ରଥମରୁ ଏକ ସାମାଜିକ ଆନ୍ଦୋଳନ ଥିଲା ନା ସାମାଜିକ ଆନ୍ଦୋଳନ ନାଁରେ ଏହା ରାଜନୈତିକ ଆନ୍ଦୋଳନ ଥିଲା, ଏବେ ଏହା ବିତର୍କର ବିଷୟ।

ସାମାଜିକ ଆନ୍ଦୋଳନ ହେଉଛି ଏକ ପ୍ରକାର ଗୋଷ୍ଠୀ କାର୍ଯ୍ୟ। ଏଥିରେ କିଛି ସାମାଜିକ ତଥା ରାଜନୈତିକ ପ୍ରସଙ୍ଗ ଉପରେ ଗୁରୁତ୍ୱ ଥାଏ। କୌଣସି ସାମାଜିକ ବିଚ୍ୟୁତିକୁ ପ୍ରତିରୋଧ ବା ପ୍ରତିବାଦ କରିବାରେ ପୃଥିବୀ ସାରା ଏଇ ସାମାଜିକ ଆନ୍ଦୋଳନ ଖୁବ୍ ପ୍ରଶଂସନୀୟ ମାଧ୍ୟମ ହୋଇଯାଇଛି। ଏଇ ଆନ୍ଦୋଳନର ସ୍ୱରୂପ ହେଲା- ଏହା ଏକ ନିର୍ଦ୍ଦିଷ୍ଟ ସାମାଜିକ ପରିବର୍ତ୍ତନ ପାଇଁ ସୃଷ୍ଟି ହୁଏ, ବଢ଼େ; ଏବଂ ସଫଳତା ବା ବିଫଳତା ପାଇବା ପରେ ଏହା ଭାଙ୍ଗିଯାଏ କିମ୍ବା ବନ୍ଦ ହୋଇଯାଏ। କିନ୍ତୁ ବିଡ଼ମ୍ବନା ଯେ, ଆନ୍ନା ଏବଂ ରାମଦେବ ଆନ୍ଦୋଳନ, ଅଭିଯାନର ମଝିରୁ ବାଟ ହୁଡ଼ି 'ରାଜନୈତିକକରଣ' ହୋଇଯାଇଛି। ଏବଂ ଆନ୍ଦୋଳନର ଚରିତ୍ର ବଦଳି ଯାଇଛି। ୨୦୧୨ ଜୁଲାଇ ମାସରେ ଦୀର୍ଘ ଦଶ ଦିନର ଅନଶନ ପରେ ଆନ୍ନା ତାଙ୍କ ଟିମ୍ ଭାଙ୍ଗି ଦେଲେ ଏବଂ ରାଜନୈତିକ ଦଳ ଗଠନ କରିବେ ବୋଲି ଘୋଷଣା କଲେ। ଏବଂ ବାବା ରାମଦେବ କଳାଧନ ନେଇ ୨୦୧୪ ମସିହା ପୂର୍ବରୁ ଆଉ କୌଣସି ବଡ଼ ଆନ୍ଦୋଳନ କରିବେ ନାହିଁ ବୋଲି ସିଦ୍ଧାନ୍ତ ନେଲେ। ଆନ୍ନାଙ୍କ ପଟ୍ଟଶିଷ୍ୟ ଅରବିନ୍ଦ କେଜେରିୱାଲ 'ଆମ୍ ଆଦମୀ ପାର୍ଟି' ନାଁରେ ନୂଆ ରାଜନୈତିକ ଦଳଟିଏ ଗଠନ କରିସାରିଲେଣି।

ଭାରତରେ ଭକ୍ତି ଆନ୍ଦୋଳନ ଅନେକ ବର୍ଷ ଧରି ଚାଲିଥିଲା। ଏବେ ବି ଚାଲିଛି। ରାମକୃଷ୍ଣ ପରମହଂସ ବିବେକାନନ୍ଦ, ଶ୍ରୀଅରବିନ୍ଦଙ୍କ ଆଧ୍ୟାତ୍ମିକ ଆନ୍ଦୋଳନର ଅନ୍ତ ହୋଇନାହିଁ। ଗାନ୍ଧି ଆନ୍ଦୋଳନ ପ୍ରାୟ ଚାଳିଶ ବର୍ଷ ଧରି ଥିଲା। ମେଧା ପାଟେକରଙ୍କ ପରି ଅନେକ ସାମାଜିକ କର୍ମୀ ସାମାଜିକ ଲୋକ ପ୍ରସଙ୍ଗକୁ ନେଇ ବର୍ଷ ବର୍ଷ ଧରି ଆନ୍ଦୋଳନରେ ଅଛନ୍ତି। ଲକ୍ଷ ଏବଂ ଉଦ୍ଦେଶ୍ୟରେ ସାଧୁତା ତଥା ନିଷ୍ଠାର କଥା। ଘୋଷିତ ଉଦ୍ଦେଶ୍ୟ ଠାରୁ ଉଦ୍ଦେଶ୍ୟ ଭିନ୍ନ ଥିଲେ ଆନ୍ଦୋଳନ ଭଙ୍ଗୁର ହୋଇଯାଏ। କାରଣ ସାମାଜିକ ଆନ୍ଦୋଳନ ବହୁତ ସୂକ୍ଷ୍ମ ଏବଂ ସୁଚିନ୍ତିତ।

ଉଭୟେ ଆନ୍ନା ଏବଂ ରାମଦେବଙ୍କ ଆନ୍ଦୋଳନ ଆରମ୍ଭରୁ ମୃତ୍ୟୁ ପର୍ଯ୍ୟନ୍ତ (ଯାହା

ଏବେ ପ୍ରତୀୟମାନ ହୁଏ) ଭାରତସାରା ବେଶ୍ ଜଣାଶୁଣା। ଭାରତୀୟ ମଧ୍ୟବର୍ଗୀ ଏବଂ ଗଣମାଧ୍ୟମ ଏହାକୁ ଗମ୍ଭୀରତାର ସହ ନେଇଥିଲେ, ପ୍ରଚାର କରୁଥିଲେ ଏବଂ ସମର୍ଥନ କରୁଥିଲେ। ପାଠକେ ଏକଥା ଜାଣନ୍ତି। ତଥାପି ଏଇ କାହାଣୀର କିଛି ଅଂଶ ମନେ ପକାଇ ଦେବାକୁ ଇଚ୍ଛା।

ଭ୍ରଷ୍ଟାଚାର ନିରୋଧ ନିମନ୍ତେ ଜନଲୋକପାଳ ଆଇନ ପ୍ରଣୟନ ନେଇ ୨୦୧୧ ଏପ୍ରିଲ ମାସରେ ବିଶିଷ୍ଟ ସମାଜସେବୀ ଆନ୍ନା ହଜାରେ ତାଙ୍କ ଟିମ୍‌କୁ ନେଇ ଦିଲ୍ଲୀରେ ଆମରଣ ଅନଶନ କଲେ। ଭାରତୀୟ ଜନମାନସକୁ ଏହା ପ୍ରଭାବିତ କଲା। ପିଲାରୁ ବୁଢ଼ା ପର୍ଯ୍ୟନ୍ତ 'ମେ ଆନ୍ନା ହୁଁ' ସ୍ଲୋଗାନ ଦେଲେ। ଏହାର ପ୍ରଭାବ ଏତେ ତୀବ୍ର ଥିଲା ଯେ, କଂଗ୍ରେସ ପରିଚାଳିତ ୟୁପିଏ ସରକାର ନରମିଗଲେ। ଏବଂ ଲୋକପାଳ ବିଲ୍‌ର ଚିଠା ପ୍ରସ୍ତୁତି ପାଇଁ ଦଶ ଜଣିଆ ଯୁଗ୍ମ କମିଟିଟିଏ କରିଦେଲେ। ଏଇ ଟିମ୍‌ରେ ଆନ୍ନା ଗୋଷ୍ଠୀର ପାଞ୍ଚଜଣ ଥିଲେ। ସରକାରୀ ବିଲ୍ ମନଲାଖି ନୁହେଁ କହି ଆନ୍ନା ପୁଣି ସେଇ ଅଗଷ୍ଟ ମାସରେ ଆମରଣ ଅନଶନରେ ବସିଲେ। ସଶକ୍ତ ଲୋକପାଳ ଆଇନ ହେବ ବୋଲି ସଂସଦରୁ ପ୍ରତିଶ୍ରୁତି ମିଳିଲା। ଅଥଚ ଏହାର କିଛିମାସ ପରେ ମୁମ୍ବାଇରେ ହୋଇଥିବା ଆନ୍ନା ଅନଶନ ଲୋକ ସମର୍ଥନ ଅଭାବରୁ ବିଫଳ ହୋଇଗଲା।

ସରକାରୀ ଲୋକପାଳ ବିଲ୍ ଲୋକସଭାରେ ପାଶ୍ ହୋଇଯାଇଛି। ରାଜ୍ୟସଭାରେ ଏହା ଅଟକିଛି। କାରଣ ରାଜ୍ୟସଭାରେ କଂଗ୍ରେସର ସଂଖ୍ୟା ଗରିଷ୍ଠତା ନାହିଁ। ସହମତି ପାଇଁ ଏହି ବିଲ୍ ସଂପ୍ରତି ସିଲେକ୍ଟ କମିଟିରେ ଅଛି। ଆନ୍ନା ଦାବି କରୁଥିବା ଜନଲୋକପାଳ ବିଲ୍‌ର ପ୍ରାୟ ସତୁରି ପ୍ରତିଶତ ସରକାରୀ ବିଲ୍‌ରେ ରହିଛି। ଆନ୍ନା ହଜାରେ ପୁଣି ୨୦୧୨ ଜୁଲାଇରେ ଅନଶନରେ ବସିଗଲେ। ଏଥର କିନ୍ତୁ ଦିଲ୍ଲୀର ଜନ୍ତର ମନ୍ତରରେ ଭିଡ଼ ଜମିଲାନି। ଗଣମାଧ୍ୟମର ଆଗ୍ରହ ରହିଲାନି। ସରକାର ବି କୌଣସି ପ୍ରତିକ୍ରିୟା ଦେଲେନି। ଆନ୍ନାଙ୍କ ମନେ ହେଲା, ସେ ଯେପରି ଗୁରୁତ୍ୱ ହରେଇଛନ୍ତି। ଅନଶନରେ କିଛି ଲାଭ ହେବନାହିଁ। ସେ ତେଣୁ ତାଙ୍କ ଟିମ୍ ଭାଙ୍ଗିଦେଲେ। ରାଜନୈତିକ ଦଳ ଗଠନ କରି ନିର୍ବାଚନ ଲଢ଼ିବେ ବୋଲି ନିଷ୍ପତ୍ତି ନେଲେ।

୨୦୧୨ ଆନ୍ନା ଆନ୍ଦୋଳନ ପରେ ଯେତେବେଳେ ବର୍ତ୍ତମାନର ୟୁପିଏ ସରକାର ଆନ୍ନାଟିମ୍‌ର ସଦସ୍ୟମାନଙ୍କୁ ନେଇ ଲୋକପାଳ ବିଲ୍ ପ୍ରସ୍ତୁତ ପାଇଁ ଯୁଗ୍ମ କମିଟି ପ୍ରସ୍ତୁତ କଲେ, ପୃଥିବୀର ସମସ୍ତ ଗଣତାନ୍ତ୍ରିକ ରାଷ୍ଟ୍ର ପାଇଁ ଏହାର ଏକ ସକରାତ୍ମକ ସନ୍ଦେଶ ଥିଲା। ସେ ସନ୍ଦେଶ ହେଲା, ଭାରତରେ ଗଣତନ୍ତ୍ର ଏତେ ସୁଦୃଢ଼ ଏବଂ ବିସ୍ତାରିତ ଯେ ସଂସଦ ବାହାରେ ଥିବା ସିଭିଲ ସମାଜର କର୍ମକର୍ତ୍ତାଙ୍କୁ ଆଇନ ପ୍ରଣୟନରେ ବି ଭାଗିଦାର କରାଯାଇପାରେ। ଆନ୍ନାଙ୍କ ଇଚ୍ଛାର ପ୍ରାୟ ସତୁରି ପ୍ରତିଶତକୁ ନେଇ ତିଆରି ହୋଇଥିବା ଲୋକପାଳ ବିଲ୍‌କୁ ଆନ୍ନା ହଜାରେ ଏବଂ ତାଙ୍କ ଟିମ୍ ଗ୍ରହଣ କରି ନେଇଥିଲେ, ଏବେ ଲୋକପାଳ ବିଲ୍ ଭାରତୀୟ ଷ୍ଟାଚ୍ୟୁଟ୍ ବହିରେ ଥାଆନ୍ତା। ଆନ୍ନା ବାହାବା ନେଇଥାଆନ୍ତେ। ଭବିଷ୍ୟତରେ ବାକି ତିରିଶ ପ୍ରତିଶତ ଇଚ୍ଛାକୁ ଆଇନ ସଂଶୋଧନ କରି ସାମିଲ କରିବାକୁ

ଆନ୍ନାଙ୍କ ପାଇଁ ଆନ୍ଦୋଳନ କରିବାର ସୁଯୋଗ ଥାଆନ୍ତା। ଏହା କିନ୍ତୁ ହେଲାନି। ସମ୍ଭବତଃ ଆନ୍ନାଟିମ୍ ସଦସ୍ୟମାନେ ଟ୍ରେଡ୍ ୟୁନିୟନ ଆନ୍ଦୋଳନର 'ସାମଗ୍ରିକ ମୂଲଚଲ' ଧାରା ସହିତ ଭଲ ଭାବେ ଅଭ୍ୟସ୍ତ ନଥିଲେ।

ରାମଦେବଙ୍କ କଳାଧନ ଆନ୍ଦୋଳନ ମାତ୍ର ଚଉଦମାସ ଏଠି ବଞ୍ଚିଲା। ୨୦୧୧ ଜୁନ୍ ମାସରେ ଆନ୍ଦୋଳନ ଆରମ୍ଭ ହେଲା ବେଳେ ବିମାନ ବନ୍ଦରରୁ ବାବା ରାମଦେବଙ୍କୁ ପାଛୋଟି ଆଣିବାକୁ କଂଗ୍ରେସ ସରକାରର ପ୍ରଣବ ମୁଖାର୍ଜୀଙ୍କ ସମେତ ପାଞ୍ଚଜଣ ବରିଷ୍ଠ ମନ୍ତ୍ରୀ ଯାଇଥିଲେ। ବିଦେଶରେ ଗଚ୍ଛିତ ଥିବା କଳାଧନ ଫେରାଇ ଅଣାଯିବାର ସମସ୍ତ ସରକାରୀ ପ୍ରତିଶ୍ରୁତି ପରେ ରାମ ଦେବ ପୁଣି ଜିଦ୍ ଧରି ଅନଶନରେ ବସିଲେ। ଅଭିଯୋଗ ଆସିଲା, ରାମଦେବ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ରିମୋର୍ଟ କଣ୍ଟ୍ରୋଲରେ ଥିଲେ। ଅସ୍ଥିରତା ପାଇଁ ଯୋଜନା କରୁଥିଲେ। ରାତି ଅଧରେ ପୋଲିସ କାର୍ଯ୍ୟାନୁଷ୍ଠାନ ହୋଇ ଏମିତି ଭୟଭୀତ କରାଗଲା ଯେ, ରାମଦେବ ମହିଳା ବେଶରେ ଅନଶନ ସ୍ଥାନ ଛାଡ଼ିଦେଲେ।

୨୦୧୨ ଅଗଷ୍ଟ ମାସରେ ସଂଗଠିତ ହୋଇଥିବା ରାମଦେବଙ୍କ ଆନ୍ଦୋଳନ ଥିଲା ଅନନ୍ୟ। ଦୀର୍ଘ ପାଞ୍ଚଦିନ ଅନଶନରେ ରହି, ହଜାର ହଜାର ଲୋକଙ୍କୁ ପାଖରେ ବସେଇ, ରାମଦେବ କଂଗ୍ରେସକୁ ନିର୍ଧୂମ ଶୋଧିଲେ। ପ୍ରଧାନମନ୍ତ୍ରୀଙ୍କୁ ଗାଳି ଦେଲେ। ବିଜେପି, ଏନ୍‌ଡ଼ିଏର ନେତାଙ୍କୁ ଆଣି ଭାଷଣରେ ସାମିଲ କଲେ। ସରକାର ବାବା ରାମଦେବଙ୍କୁ ନଜର ଅନ୍ଦାଜ କରି କୌଣସି ପ୍ରତିକ୍ରୀୟା ଦେଲେନି। ବାବା ନିଜେ ନିଜେ ୧୪୪ଧାରା ଭଙ୍ଗ କରି ଗିରଫ ହୋଇ ଏବଂ ଆଗାମୀ ଦୁଇ ବର୍ଷ ଧରି ଆଉ କୌଣସି ଆନ୍ଦୋଳନ କରିବେନି ବୋଲି ଶପଥ ନେଇ ହରଦ୍ୱାର ଚାଲିଗଲେ।

ହଁ ପାଠକ ବନ୍ଧୁ! ସାମାଜିକ ଆନ୍ଦୋଳନର ଗବେଷଣାରେ ଥିବା ଏବଂ ଶ୍ରମିକ, କର୍ମଚାରୀ ଆନ୍ଦୋଳନରେ ସଂପୃକ୍ତ ଥିବା ବ୍ୟକ୍ତିମାନଙ୍କୁ ବାବା ରାମଦେବ ଏବଂ ଆନ୍ନା ହଜାରେଙ୍କ ଆନ୍ଦୋଳନ ଆଶ୍ଚର୍ଯ୍ୟ କରିଛି। ଗଣତାନ୍ତ୍ରିକ ଶାସକ ବିରୁଦ୍ଧରେ ଆନ୍ଦୋଳନ କରି ସଫଳତା ପାଇବାର କିଛି ସଟ୍‌କଟ୍ ବାଟ ନଥାଏ। ଥକି ଯିବାର ଅବକାଶ ନଥାଏ। ଏମିତି ତ ଦେଖିବାକୁ ଗଲେ ସବୁ ଶାସକ ନିଷ୍ଠୁର। ଅନେକ ବିଦ୍ୱାନ ରାମଦେବ ଏବଂ ଆନ୍ନା ହଜାରେ ଆନ୍ଦୋଳନକୁ ମହାତ୍ମା ଗାନ୍ଧିଙ୍କ ସତ୍ୟାଗ୍ରହ ସହ ତୁଳନା କରନ୍ତି। ଏ ତୁଳନା କିପରି ସ୍ଥାନାନ୍ତରିତ ଲାଗେ। ଗାନ୍ଧୀ ସତ୍ୟାଗ୍ରହ କଲାବେଳେ ବ୍ରିଟିଶ ଶାସକ ଠାରୁ କେବେ ପ୍ରତିଶ୍ରୁତି ଅପେକ୍ଷାରେ ନଥାନ୍ତି। ଗାନ୍ଧିଜୀ ଚାଳିଶ ବର୍ଷର ଆନ୍ଦୋଳନ ଭିତରେ ମାତ୍ର ଚାରିଥର ଆମରଣ ଅନଶନ କରିଥିଲେ।

ଆନ୍ନା ଆନ୍ଦୋଳନ ଏବଂ ରାମଦେବଙ୍କ ଆନ୍ଦୋଳନର କଥିତ ମୃତ୍ୟୁ ହୋଇଗଲା ପରେ ସମସ୍ତ ସାମାଜିକ ଆନ୍ଦୋଳନ ନେଇ ଏବେ ସାଧାରଣ ଜନତାର ଅବିଶ୍ୱାସ ଆସିଛି। ସେ ଅବିଶ୍ୱାସ ହେଉଛି- ଆନ୍ଦୋଳନ କରୁଥିବା ନେତାମାନଙ୍କର ପ୍ରଚ୍ଛନ୍ନ ରାଜନୈତିକ ଉଦ୍ଦେଶ୍ୟ ନାହିଁ ତ?

✦ ✦ ✦

# ଗୃହିଣୀ ସେବାର ମୂଲ୍ୟ

ଗୃହିଣୀ କ'ଣ ଏକ ବୃତ୍ତି ? ସ୍ୱାମୀର ଦରମାର ସେମାନେ ଭାଗ ପାଇବେ କାହିଁକି ? ଏପରି ପ୍ରଶ୍ନ ଏବେ ଭାରତ ସାରା ଜୋର ଧରିଛି। ଏ ପ୍ରଶ୍ନ ଆସିଛି ଏଇଥିପାଇଁ ଯେ ଗୃହିଣୀମାନେ ନିଜ ସ୍ୱାମୀଙ୍କର ଦରମାରୁ ଦଶ ପ୍ରତିଶତରୁ କୋଡ଼ିଏ ପ୍ରତିଶତ ପାଇବେ ବୋଲି ଏକ ଆଇନ ଭାରତ ସରକାର ଖୁବ୍‌ଶୀଘ୍ର କରିବାକୁ ଯାଉଛନ୍ତି।

ଏହା ସତ ଯେ, ଏ ପର୍ଯ୍ୟନ୍ତ ଆମେ ଜଣେ ଗୃହିଣୀ ବୃତ୍ତିକୁ ପ୍ରକୃତ ଅର୍ଥରେ ବୃତ୍ତି ଭାବେ ଗ୍ରହଣ କରିନାହୁଁ। ଗ୍ରହଣୀୟ ନହେବାର କାରଣ ବୋଧେ ଏଇଆ ହୋଇପାରେ, ଗୃହିଣୀର କିଛି ନିର୍ଦ୍ଦିଷ୍ଟ ରୋଜଗାର ନାହିଁ। ପରିବାରର ଆର୍ଥିକ ସ୍ଥିତିର ଉନ୍ନତି ପ୍ରତି ତାର କିଛି ଅବଦାନ ନାହିଁ। ଏ ଦେଶର ଆର୍ଥିକ ଅଭିବୃଦ୍ଧି ବା ଜି.ଡ଼ି.ପି. ଗୃହିଣୀଙ୍କ ଦ୍ୱାରା କିଛି ପ୍ରଭାବିତ ହୁଏ ନାହିଁ। ଏବଂ ଏହି କିଛିଦିନ ତଳେ ଜଣେ ଜାପାନୀ ପତ୍ରକାର ନିଜର ବହିଟିଏ ଲେଖି ପ୍ରକାଶ କରିଦେଲେ- ବର୍ତ୍ତମାନର ଆର୍ଥିକ ମାନ୍ଦା ଯୁଗରେ ଗୃହିଣୀ ଠାରୁ ବିଳାସ ପଦାର୍ଥ ଆଉ କିଛି ନାହିଁ। ଗୃହିଣୀକୁ ଏବେ ପାଳିବା କଷ୍ଟ।

ବାସ୍ତବରେ ଏହା ଏକ ମାନସିକତାର କଥା। ବିବାହ ପରି ଏକ ପବିତ୍ର ଅନୁଷ୍ଠାନରେ ରହିଥିବା ପାରସ୍ପରିକ ଆବଣ୍ଟନ ପ୍ରକ୍ରିୟାକୁ ଠିକ୍ ଭାବେ ବୁଝି ନପାରି ଗୃହିଣୀକୁ ଅନୁତ୍ପାଦକ କହି ଜାଣି ଜାଣି ନ୍ୟୁନ କରିଦେବା ଏହା କିଛି ଅବୋଧ ମଣିଷଙ୍କ ଉକ୍ତି ହୋଇପାରେ।

ଗୃହିଣୀଙ୍କ ସାମାଜିକ ସ୍ଥିତିକୁ ନେଇ ଗତ କିଛିବର୍ଷ ତଳେ ଭାରତ ବର୍ଷରେ ଏକ ବିତର୍କ ଦେଖା ଦେଇଥିଲା। ଭାରତ ସରକାର ଜନଗଣନା ପାଇଁ ଏକ ନିର୍ଦ୍ଦେଶନାମା ଜାରିକରି କହିଦେଲେ- ୨୦୧୧ ଜନଗଣନାରେ ଭାରତୀୟ ଗୃହିଣୀ, ଗଣିକା, ଭିକାରୀ ଏବଂ କଏଦୀମାନେ ଗୋଟିଏ ଶ୍ରେଣୀଭୁକ୍ତ ହେବେ। ଏପରି ଶ୍ରେଣୀକରଣ ସଂପର୍କରେ ସ୍ପଷ୍ଟିକରଣ ଦେଇ ଭାରତ ସରକାର କହିଲେ- ଏଇ ବର୍ଗର ବ୍ୟକ୍ତିମାନଙ୍କର କିଛି ରୋଜଗାର ନାହିଁ। ଏମାନେ ଅନ୍‌ପ୍ରଡ଼କ୍ଟିଭ।

ଏକ ଜନସ୍ୱାର୍ଥ ମାମଲା ଆଳରେ ଯେତେବେଳେ ଗୃହିଣୀଙ୍କ ଏଇ ବର୍ଗୀକରଣ କଥା ମାନ୍ୟବର ସୁପ୍ରିମକୋର୍ଟରେ ପହଞ୍ଚିଲା, ମାନ୍ୟବର କୋର୍ଟ ଏଇ ବର୍ଗୀକରଣକୁ ଗୃହିଣୀଙ୍କ ପ୍ରତି ଏକ ନିଷ୍ଠୁର ଅସଂବେଦନଶୀଳ କାର୍ଯ୍ୟ କହି ସରକାରଙ୍କୁ ଭର୍ତ୍ସନା କଲେ। ଘର ବାନ୍ଧୁଥିବା ଗୃହିଣୀଙ୍କୁ ଗଣିକା ତଥା ଭିକାରୀ ତାଲିକାଭୁକ୍ତ କରିବା ସଂପୂର୍ଣ୍ଣ ଅଯଥାର୍ଥ

ବୋଲି ମତ ଦେଲେ। ଏବଂ ଗୃହିଣୀଙ୍କୁ ଏକ ସ୍ୱତନ୍ତ୍ର ତାଲିକାଭୁକ୍ତ କରି ଗଣନା କରିବାକୁ ମାନ୍ୟବର ଉଚ୍ଚତମ ନ୍ୟାୟାଳୟ ନିର୍ଦ୍ଦେଶ ବି ଦେଇଦେଲେ।

କୋର୍ଟଙ୍କ ନିର୍ଦ୍ଦେଶରେ ୨୦୧୧ ଭାରତୀୟ ଜନଗଣନାରେ ଗୃହିଣୀଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀରେ ନିଆଯାଇଛି। କିନ୍ତୁ ଏମାନେ ଏକ ଅନୁତ୍ପାଦକ ଶ୍ରେଣୀରେ ହିଁ ରହିଛନ୍ତି। ଜନଗଣନା ଅନୁଯାୟୀ ଏବେ ପ୍ରାୟ ଛତିଶକୋଟି ଗୃହିଣୀ ଭାରତରେ ଅଛନ୍ତି।

ବାସ୍ତବରେ ଜଣେ ଗୃହିଣୀର ଆର୍ଥିକ ମୂଲ୍ୟ କେତେ? ଅନ୍ୟକଥାରେ କହିଲେ ଏମାନଙ୍କର ଇକୋନୋମିକ କଷ୍ଟ୍ କେତେ? ପ୍ରକୃତରେ କ'ଣ ଆର୍ଥିକ ଦୃଷ୍ଟିରୁ ଜଣେ ଗୃହିଣୀର ଦାମ୍ କିଛି ନାହିଁ? ଏ ପ୍ରଶ୍ନର ଉତ୍ତରରେ ଯେତିକି ଅର୍ଥନୀତି ରହିଛି ସେତିକି ସମାଜଶାସ୍ତ୍ରୀୟ ତତ୍ତ୍ୱ ବି ରହିଛି।

ପରିବାର ତଥା ଆର୍ଥିକ ସ୍ଥିତିର ଉନ୍ନତି ନେଇ ଗୃହିଣୀଙ୍କ ଅବଦାନ ଉପରେ ଇଭେନ୍‌ଜିକାଲ ସୋସିଆଲ ଅକ୍‌ସନ ଫୋରମ୍ ଏକ ସର୍ଭେକ୍ଷଣ କରିଥିଲେ। ଏ ଲେଖକ ଏବେ ଏଇ ସର୍ଭେ ରିପୋର୍ଟ ଦେଖିବାର ସୁଯୋଗ ପାଇଛି। ରିପୋର୍ଟରେ ଅଛି- ଭାରତୀୟ ଗୃହିଣୀମାନେ ନିଜ ପରିବାର ପାଇଁ ଯେତିକି ପରିଶ୍ରମ କରନ୍ତି ଏବଂ ସମୟ ଦିଅନ୍ତି ତା'ର ଆର୍ଥିକ ମୂଲ୍ୟ ପ୍ରାୟ ୬୦୦ କୋଟି ଆମେରିକୀୟ ଡ଼ଲାର। ଭାରତୀୟ ମୁଦ୍ରାରେ ଏହାର ପରିମାଣ ହେବ ପ୍ରାୟ ତିରିଶ ହଜାର କୋଟି ଟଙ୍କା। ଏଇ ରିପୋର୍ଟ ଏକଥା ବି କହେ, ଜଣେ ଭାରତୀୟ ଗୃହିଣୀର କାମକୁ ବେତନ ଆକାରରେ ଦେଲେ ସେ ବାର୍ଷିକ ଅଶୀ ହଜାର ଟଙ୍କା ପାଇବା କଥା।

ଗୃହିଣୀଙ୍କ ଆର୍ଥିକ ମୂଲ୍ୟ ନେଇ ଭାରତର ଜାତୀୟ ସାଂପଲ୍ ସର୍ଭେ ମଧ୍ୟ ଏକ ରିପୋର୍ଟ ଦେଇଛି। ସାମ୍ପଲ ସର୍ଭେ ମତରେ ଭାରତୀୟ ଗ୍ରାମାଞ୍ଚଳରେ ପ୍ରାୟ ୫୦ ପ୍ରତିଶତ ଏବଂ ସହରାଞ୍ଚଳରେ ପ୍ରାୟ ୨୦ ପ୍ରତିଶତ ଗୃହିଣୀ ସେମାନଙ୍କର ଘରର ଆର୍ଥିକ ସ୍ଥିତିର ଉନ୍ନତି ପାଇଁ ବେଶ୍ କିଛି ଅବଦାନ ରଖିଥାଆନ୍ତି। ଏମାନଙ୍କ ଭିତରୁ ଅନେକ ଗୃହିଣୀ ଘର ପାଇଁ ଜାଳେଣୀ କାଠ ସଂଗ୍ରହ କରନ୍ତି। ଅନେକ ମାଇଲ ମାଇଲ ଦୂରକୁ ଯାଇ ଘର ପାଇଁ ପାଣି ଆଣନ୍ତି। ଅନେକ ବି ନିଜ ଘରର କୌଳିକ ବ୍ୟବସାୟରେ ନୀରବ ଭାବେ ସାହାଯ୍ୟ କରିଥାଆନ୍ତି।

ଏହା ବ୍ୟତୀତ ବି ଗୃହିଣୀ ଘର ଚଳାନ୍ତି। ରୋଷେଇ କରନ୍ତି। ଘର ପରିଷ୍କାର କରନ୍ତି। ପିଲା ପାଳନ୍ତି। ନିଜ ପିଲାକୁ ପାଠ ପଢ଼ାନ୍ତି। ପୃଥିବୀର ସମସ୍ତ ବିକଶିତ ରାଷ୍ଟ୍ରରେ ଏଇ କାମ ପାଇଁ ଠିକା କର୍ମଚାରୀ ରହିଥାଆନ୍ତି, ଯେଉଁମାନେ ଘଣ୍ଟା ହିସାବରେ ବେତନ ପାଆନ୍ତି। ସୁତରାଂ ସର୍ବନିମ୍ନ ମଜୁରୀ ଭିତରେ ଗୃହିଣୀର ସେବାକୁ ମୂଲ୍ୟାୟନ କଲେ ଏହାର ୩୫ଶହ ଟଙ୍କାରୁ ୪୫୦୦ଟଙ୍କା ହେବ ବୋଲି କୁହାଯାଏ।

ବିଭିନ୍ନ ସର୍ଭେକ୍ଷଣର ଇଏ ହେଉଛି ଭାରତୀୟ ଗୃହିଣୀର ଆର୍ଥିକ ମୂଲ୍ୟ। କିନ୍ତୁ

ପ୍ରଶ୍ନ ଆସେ, ଗୃହିଣୀର ସେବାକୁ ଟଙ୍କାରେ ହିସାବ କରିବାକୁ ଏହା କ'ଣ ଯଥାର୍ଥ ଆର୍ଥିକ ମଡ଼େଲ? ବଜାର ଭିତ୍ତିକ ମାନସିକତା ନେଇ ଗୃହିଣୀର ସେବାକୁ ମୂଲ୍ୟାୟନ କରିବା ନିଶ୍ଚୟ ସହଜ ନୁହେଁ।

ସମାଜଶାସ୍ତ୍ରୀଙ୍କ ମତରେ ଭାରତରେ ବିବାହ ଅନୁଷ୍ଠାନରେ ଉଭୟ ସ୍ୱାମୀ ଏବଂ ସ୍ତ୍ରୀ ପରସ୍ପରକୁ ସ୍ୱାର୍ଥହୀନ ଭାବେ ବାନ୍ଧିବାର ଯେଉଁ ଶୃଙ୍ଖଳାଗତ ବ୍ୟବସ୍ଥା ରହିଛି ତାହା ଅନନ୍ୟ। ବିବାହ ଏଠି ଯେଉଁ ଉତ୍ପାଦନ କରେ କୌଣସି ମାର୍କେଟରେ ସେପରି ଦ୍ରବ୍ୟ ଉତ୍ପାଦିତ ହେବା ଅସମ୍ଭବ। ସଠିକ୍ ଭାବେ ଦେଖିଲେ ଯଦି ଜଣେ ପୁରୁଷ କେବଳ ଘରକୁ ଦରମା ଆଣି ଘରେ କିଛି କାମ କରୁନଥାଏ, ସ୍ତ୍ରୀର ଆର୍ଥିକ ମୂଲ୍ୟ ପୁରୁଷର ଆୟ ସହ ସମାନ ବୋଲି ଏପରି ବିଚାର ଅନେକ ଅର୍ଥଶାସ୍ତ୍ରୀଙ୍କ ମତରେ ଆସେ।

ବାସ୍ତବତା ହେଲା, ଗୃହିଣୀର କିଛି ନିର୍ଦ୍ଦିଷ୍ଟ ରୋଜଗାର ନଥାଇପାରେ। କିନ୍ତୁ ଘରେ ଯେଉଁମାନେ ରୋଜଗାର କରନ୍ତି ସେମାନଙ୍କର ଦୈହିକ, ମାନସିକ ଏବଂ ଆବେଗିକ ଖୁସି ପାଇଁ ଗୃହିଣୀଟି ଅହରହ ଚିନ୍ତାରେ ଥାଏ। ଏବଂ ଭବିଷ୍ୟତରେ ଯେଉଁମାନେ ବି ରୋଜଗାର କର୍ତ୍ତା ହେବେ, ସେଇ ପିଲାଙ୍କ ପାଇଁ ଗୃହିଣୀଟି ଜୀବନ ଉତ୍ସର୍ଗ କରିଥାଏ।

ହଁ ପାଠକ ବନ୍ଧୁ! ସ୍ୱାମୀର ଦରମାରୁ ଦଶ ପ୍ରତିଶତ ସ୍ତ୍ରୀ ପାଇବ ବୋଲି ଆଇନ ପ୍ରଣୟନ ହେବା କଥା ଉଠିବା ପରେ ଗୃହିଣୀ ସେବାର ଆର୍ଥିକ ମୂଲ୍ୟ ନେଇ ଏବେ ଚର୍ଚ୍ଚା ଆସିଛି। ଏଇ ଆଇନ କରିବାରେ କିଛି କାରଣ ମଧ୍ୟ ଦିଆଯାଏ। ପ୍ରଥମ କାରଣ ହେଲା, ସ୍ୱାମୀ ଦରମାରୁ ଏକ ଅଂଶ ନିୟମିତ ପାଇବାରେ ସ୍ତ୍ରୀର ଆତ୍ମମର୍ଯ୍ୟାଦା ଅନୁଭୂତ ହେବ। ଏବଂ ଦ୍ୱିତୀୟ କାରଣ ହେଲା, ନିର୍ଯ୍ୟାତିତା ମହିଳାଙ୍କ ପାଇଁ ଆର୍ଥିକ ସୁରକ୍ଷାର ଏହା ଏକ କବଚ ହୋଇଯିବ। ଆର୍ଥିକ ସ୍ୱାଧୀନତା ନାହିଁ କହି ଯେଉଁ ଅବସାଦରେ ଥିଲା ତାହା କମିବ।

ପ୍ରଶ୍ନ ଆସେ, ଚାକିରୀ କରି ଦରମା ପାଉଥିବା ସ୍ୱାମୀଙ୍କ ଠାରୁ ସ୍ତ୍ରୀ ପାଇଁ ଦଶ ପ୍ରତିଶତ ଦରମା କାଟି ନେବା ହୁଏତ ସହଜ ହୋଇପାରେ। କିନ୍ତୁ ଯେଉଁମାନେ ଅଣସଂଗଠିତ କ୍ଷେତ୍ରରେ କାମ କରନ୍ତି ଏବଂ ଏମାନଙ୍କର ମାସିକ ଦରମା ନଥାଏ, ସେମାନଙ୍କର ଗୃହିଣୀ ସ୍ତ୍ରୀମାନେ ଦରମାର ଭାଗ ପାଇବେ କିପରି? ଏ ପ୍ରଶ୍ନର ଏବେ ତର୍ଜମା ହେବା ଦରକାର। ଏବଂ ତର୍ଜମା ହେବା ବି ଉଚିତ୍ ଯେ ସ୍ୱାମୀ ଦରମାରୁ ଦଶ କିମ୍ବା କୋଡ଼ିଏ ପ୍ରତିଶତ ସ୍ତ୍ରୀଙ୍କୁ ଦେଲେ ପାରିବାରିକ ଶାନ୍ତି କିପରି ରହିବ?

ଏ ପ୍ରଶ୍ନର ଉତ୍ତର ଯାହା ହେଉନା କାହିଁକି, ଏହା ସତ ଯେ ଗୃହିଣୀ ସେବାର ପଟାନ୍ତର ନାହିଁ।



# ରାଜନୈତିକ ପରିହାସ

ଏଇ କିଛିଦିନ ତଳେ ସି.ଏନ୍.ଏନ୍. ଆଇ.ବି.ଏନ୍ ଟେଲିଭିଜନ ଚ୍ୟାନେଲରେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ମମତା ବାନାର୍ଜୀଙ୍କ ସହ ଏକ ସାକ୍ଷାତକାର ପ୍ରସାରିତ ହୋଇଥିଲା। ସାକ୍ଷାତକାର ନେଉଥିଲେ ବରିଷ୍ଠ ସାମ୍ବାଦିକ ଦିଲ୍ଲୀପ ସରଦେଶାଇ। ସାମ୍ବାଦିକଙ୍କ ପ୍ରଶ୍ନର ଉତ୍ତର ଦେଲାବେଳେ ସୁଶ୍ରୀ ମମତା ବାନାର୍ଜୀ ପ୍ରଧାନମନ୍ତ୍ରୀ ଡ଼କ୍ଟର ମନମୋହନ ସିଂହଙ୍କ ସ୍ୱରକୁ ନକଲ କଲେ। କଥାରେ ମିମିକ୍ ତଥା କାରିକେଚେର ଆଣିଲେ। ଭାରତର ପ୍ରଧାନମନ୍ତ୍ରୀ କିପରି ସ୍ୱରରେ କଥା ହୁଅନ୍ତି ତାକୁ ଅନୁକରଣ କରି ଜଣେ ମୁଖ୍ୟମନ୍ତ୍ରୀ ଟି.ଭି. ଚ୍ୟାନେଲରେ ବସି କହିବା କେମିତି ସେଦିନ ଅସ୍ୱାଭାବିକ ଲାଗିଲା।

ଗ୍ରେଟ୍ ଇଣ୍ଡିଆ ପଲିଟିକାଲ ସର୍କସ ଏବଂ ଗ୍ରେଟ୍ ଓଡ଼ିଶା ପଲିଟିକାଲ ସର୍କସରେ ଅନେକ ବିଦୂଷକ ଅଭିନେତା କିଛି ନେତାଙ୍କ ଚ୍ୟାଲି, ବ୍ୟବହାର ଏବଂ ସ୍ୱର ତଥା ଭାଷଣକୁ ଅନୁକରଣ କରି ଏପରି କହନ୍ତି ଓ କରନ୍ତି। ଏହାକୁ ରାଜନୈତିକ ବ୍ୟଙ୍ଗ କୁହଯାଏ। ଏଥିରେ ସୃଜନଶୀଳତା ରହିଥାଏ। କଳାତ୍ମକ ଛାପ ଥାଏ। ଅଭିବ୍ୟକ୍ତି ପରିପ୍ରକାଶର ଏକ ଅଂଶ କହି ଏହାକୁ ତାରିଫ୍ କରାଯାଏ। ଏବଂ ରାଜନେତାମାନେ ମଧ୍ୟ ନିଜର ନକଲକୁ ଖୁବ୍ ଖେଳଓ୍ୱାର୍ଡ଼ ମନୋବୃତ୍ତି ନେଇ ଗ୍ରହଣ କରିନିଅନ୍ତି।

କୌଣସି ନେତାଙ୍କୁ ନେଇ ରାଜନୈତିକ ବ୍ୟଙ୍ଗ କରିବା କେବଳ ଏହା ଏକମାତ୍ର ଭାରତୀୟ ଘଟଣା ନୁହେଁ। ପୃଥିବୀର ସମସ୍ତ ରାଷ୍ଟ୍ରରେ ରାଜନୈତିକ ବ୍ୟଙ୍ଗ ରହିଛି। ନେତାଙ୍କୁ ଏବଂ ପ୍ରଶାସକଙ୍କୁ ବ୍ୟଙ୍ଗ କରିବାର ଧାରା ରହିଛି। ଗଣତନ୍ତ୍ର ରାଷ୍ଟ୍ର ଅପେକ୍ଷା ଏକଛତ୍ରବାଦୀ ରାଷ୍ଟ୍ରରେ ଏହା କମ୍ ହେଉଥିଲେ ବି, ଶାସକଙ୍କୁ ଏକଛତ୍ରବାଦୀ ରାଷ୍ଟ୍ରରେ ସୀମିତ ଭାବେ ବ୍ୟଙ୍ଗ ମଧ୍ୟ କରାଯାଏ। ସୁତରାଂ ରାଜନୈତିକ ପରିହାସ ନୂଆକଥା ନୁହେଁ। ଭାରତରେ ନୂଆ କଥା ହେଲା, ଗୋଟିଏ ରାଜ୍ୟର ମୁଖ୍ୟମନ୍ତ୍ରୀ ଖୁବ୍ ଗମ୍ଭୀର ହୋଇ ଟି.ଭି. ଚ୍ୟାନେଲରେ ବସି ପ୍ରଧାନମନ୍ତ୍ରୀଙ୍କ ସ୍ୱରକୁ ନକଲ କଲେ। ଏହା ସତ ଯେ ମମତା ଅଭିନୟ କରୁନଥିଲେ। ଦେଶର କିଛି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ନେଇ ସେ ସେଦିନ ଟି.ଭି.ରେ ସାକ୍ଷାତକାର ଦେଉଥିଲେ।

ପ୍ରଶ୍ନ ଆସେ, ଇଏ ରାଜନୈତିକ ଶାଳୀନତା କି ? ଟି.ଭି. ଚ୍ୟାନେଲରେ ବସି ଯଦି ଅନ୍ୟ ଜଣେ କିଏ ସୁଶ୍ରୀ ମମତା ବାନାର୍ଜୀଙ୍କୁ ନକଲ କରି କିଛି କହିଥାଆନ୍ତା କିମ୍ବା

ଅଭିନୟ କରିଥାଆନ୍ତା, ପଶ୍ଚିମବଙ୍ଗ ମୁଖ୍ୟମନ୍ତ୍ରୀ ଏହାକୁ ସହ୍ୟ କରିଥାଆନ୍ତେ କି ?

ଅବଶ୍ୟ ଏହା ବେଶି ଦିନର ଘଟଣା ନୁହେଁ। ମୁଖ୍ୟମନ୍ତ୍ରୀ ମମତାଙ୍କୁ ନେଇ ଅଙ୍କା ଯାଇଥିବା ଏକ ବ୍ୟଙ୍ଗଚିତ୍ରକୁ ନେଇ ପଶ୍ଚିମବଙ୍ଗରେ ଝଡ଼ଟିଏ ବୋହିଗଲା। ଅମ୍ବିକେଶ ମହାପାତ୍ର ନାମକ ଜଣେ ପ୍ରଫେସର ମୁଖ୍ୟମନ୍ତ୍ରୀ ମମତା ବାନାର୍ଜୀଙ୍କୁ ନେଇ କିଛି କାର୍ଟୁନ୍ କରିଥିଲେ। କାର୍ଟୁନ୍‌ରେ ଚରିତ୍ରମାନେ ଥିଲେ ଭାରତର ପୂର୍ବତନ ରେଳମନ୍ତ୍ରୀ ଦୀନେଶ ତ୍ରିବେଦୀ, ତତ୍କାଳୀନ ରେଳମନ୍ତ୍ରୀ ମୁକୁଲ ରାୟ ଏବଂ ମୁଖ୍ୟମନ୍ତ୍ରୀ ମମତା ବାନାର୍ଜୀ। କାର୍ଟୁନର ସମସ୍ତ ସଂଳାପକୁ ପ୍ରଫେସର ମହାପାତ୍ର, ସତ୍ୟଜିତ୍ ରାୟଙ୍କ 'ସୋନାର କିଲ୍ଲା' ସିନେମାରୁ ଉଦ୍ଧୃତ କରିଥିଲେ। କାର୍ଟୁନ୍‌ରେ ମୁକୁଲ ରାୟଙ୍କୁ ମମତା ସୋନାର୍ କିଲ୍ଲା ଦେଖାଉଥିଲେ। ଏବଂ ମୁକୁଲ, ଦୀନେଶ ତ୍ରିବେଦୀଙ୍କୁ 'ଏକ୍‌ଟା ଦୁଷ୍ଟୋ ଲୋକ୍' କହୁଥିଲେ। ଏପରି କାର୍ଟୁନ୍ କରି ପ୍ରଫେସର ମହାପାତ୍ର ତାଙ୍କର ସୋସିଆଲ ମେଡ଼ିଆରେ ଇମେଲ କରିଦେଇଥିଲେ।

କାର୍ଟୁନରେ ଏଇ ନେତାଙ୍କର କିଛି ବିକୃତ ଛବି ନଥିଲା। କେବଳ ସିନେମାର ସଂଳାପ ସହ ରାଜନୈତିକ ଏଇ ନେତାମାନଙ୍କର ମୂଳ ଫଟୋ ଛବି ରହିଥିଲା। କିନ୍ତୁ କାର୍ଟୁନ୍ ଦେଖି ମମତା ଏତେ ଉତ୍‌କ୍ଷିପ୍ତ ହୋଇଗଲେ ଯେ, ସେ ଅମ୍ବିକେଶ ମହାପାତ୍ରଙ୍କ ବିରୁଦ୍ଧରେ ପୋଲିସ କାର୍ଯ୍ୟାନୁଷ୍ଠାନ କରିବାକୁ ନିର୍ଦ୍ଦେଶ ଦେଇଦେଲେ। ପ୍ରଫେସର ମହାପାତ୍ର ଗିରଫ ହେଲେ। ଜେଲ୍ ବି ଗଲେ। କୁହାଗଲା, କାର୍ଟୁନ୍ କର୍ତ୍ତା ଶ୍ରୀଯୁକ୍ତ ମହାପାତ୍ର, କାର୍ଟୁନ୍ କରିବାର ଶାଳୀନତାର ସମସ୍ତ ଲକ୍ଷ୍ମଣରେଖା ଅତିକ୍ରମ କରିଯାଇଥିଲେ। ପ୍ରଧାନମନ୍ତ୍ରୀଙ୍କ ସ୍ୱରକୁ ନକଲ କରି ମମତା ବାନାର୍ଜୀ ସେଇ ଲକ୍ଷ୍ମଣ ରେଖା ପାର୍ କରିଯାଇଛନ୍ତି ବୋଲି ଯେଉଁ ଅଭିଯୋଗ ଆସେ, ଏହା ତେଣୁ ବାସ୍ତବରେ ଅଯଥାର୍ଥ ନୁହେଁ। ଅସଲକଥା ହେଲା, ରାଜନୀତିରେ ସଂପ୍ରତି ରାଜନୈତିକ ଭଦ୍ରତା କମ୍ ଦେଖିବାକୁ ମିଳୁଛି।

ଏହା ନିଶ୍ଚିତ ଯେ, ଖୁଚୁରା ବେପାରରେ ପ୍ରତ୍ୟକ୍ଷ ବିଦେଶୀ ପୁଞ୍ଜିକୁ ନେଇ ମମତା କେନ୍ଦ୍ରର କଂଗ୍ରେସ ପରିଚାଳିତ ୟୁପିଏ ସରକାରର ପ୍ରଧାନମନ୍ତ୍ରୀ ଡ଼କ୍ଟର ମନମୋହନ ସିଂହଙ୍କ ଉପରେ ନାରାଜ ଥିଲେ। ଡ଼ିଜେଲ ଦର ବୃଦ୍ଧି, ଗ୍ୟାସ ସିଲିଣ୍ଡରରେ କଟକଣା ଏବଂ ରିଟେଲରେ ବିଦେଶୀ ପୁଞ୍ଜି ବିନିଯୋଗକୁ ନେଇ ମମତା ଅସୁଖୀ ହୋଇ ସରକାରରୁ ବାହାରିଯିବାକୁ ଧମକ ଦେଲାବେଳେ ଆଶା ରଖିଥିଲେ, ତାଙ୍କୁ ଡ଼କ୍ଟର ସିଂହ ଡ଼ାକିବେ। ଟେଲିଫୋନ୍‌ରେ ତାଙ୍କ ସହ କଥା ହେବେ। ୟୁପିଏ ସରକାରରୁ ସମର୍ଥନ ପ୍ରତ୍ୟାହାର ହେବା ପର୍ଯ୍ୟନ୍ତ ଏସବୁ କିନ୍ତୁ କିଛି ହେଲାନି। କେନ୍ଦ୍ର ସରକାର ଉପରେ ତେଣୁ ମମତାଙ୍କ କ୍ରୋଧ ବଢ଼ିଛି। ମମତା ବାନାର୍ଜୀ ନିଜର ସମ୍ମାନ ପାଇଁ ୟୁପିଏରେ ଆଉ ଅଂଶୀଦାର ନାହାନ୍ତି। ଏବଂ ମୁସଲିମ୍ ଭୋଟକୁ ଭୟ କରି ସେ ବିଜେପି ନେତୃତ୍ୱାଧୀନ ଏନ୍‌ଡ଼ିଏରେ ମିଶି ପାରୁନାହାନ୍ତି।

ପ୍ରକୃତରେ ମମତାଙ୍କ ପାଇଁ ଇଏ ଏବେ 'ପରିଚୟ ସଙ୍କଟ'ର ପ୍ରଶ୍ନ। ଦିଲ୍ଲୀରେ ତାଙ୍କର ଆଉ ସେତେ ବେଶି ପତିଆରା ନାହିଁ। ତୃଣମୂଳ କଂଗ୍ରେସର ୬ଜଣ କେନ୍ଦ୍ର ମନ୍ତ୍ରୀଙ୍କର ଯେଉଁ ନାଲିବତୀ ଗାଡ଼ି ଦିଲ୍ଲିରେ ଚାଲୁଥିଲା, ତାହା ଆଉ ଚାଲୁନାହିଁ। ମନରେ କ୍ରୋଧ ରହିଲେ ଏବଂ କ୍ରୋଧ ନିୟନ୍ତ୍ରଣ କରି ନପାରିଲେ ତା'ର ପରିପ୍ରକାଶ ହୋଇଥାଏ। କିଛି ସମୟରେ ଏହା ପ୍ରକାଶ ପାଏ ଭାଷାରେ। ଏବଂ କିଛି ସମୟରେ ହିଂସାରେ। ମମତା ନିଜର ମନ କଥା ପ୍ରକାଶ ପାଇଁ ବୋଧେ ଡ଼କ୍ଟର ମନମୋହନ ସିଂହଙ୍କୁ ସାଧାରଣରେ ପରିହାସ କରିବାକୁ ପସନ୍ଦ କଲେ।

ଇତିହାସ କହେ, ପଶ୍ଚିମବଙ୍ଗର ରାଜନେତାମାନେ ନିଜ ରାଜ୍ୟରେ ଯେତିକି ବଡ଼ ଜଣାପଡ଼ନ୍ତି, କେନ୍ଦ୍ରର ଦିଲ୍ଲୀ ସ୍ତରରେ ସେମାନଙ୍କର ସେତିକି 'ବଡ଼ଭାବ' ନଥାଏ। ବିଧାନ ରାୟଙ୍କ ଠାରୁ ଆରମ୍ଭ କରି ଜ୍ୟୋତି ବସୁଙ୍କ ପର୍ଯ୍ୟନ୍ତ ଏହା ଦେଖା ଦେଇଛି। ପଶ୍ଚିମବଙ୍ଗରେ ଦୀର୍ଘ ୩୪ବର୍ଷ ଶାସନ କଲା ପରେ ବି ପଶ୍ଚିମବଙ୍ଗର କମ୍ୟୁନିଷ୍ଟ ନେତାମାନେ ଦିଲ୍ଲୀରେ ଜାତୀୟ ପତିଆରା ଜମେଇ ପାରିନଥିଲେ। ଅବଶ୍ୟ ପ୍ରଣବ ମୁଖାର୍ଜୀଙ୍କ ବ୍ୟକ୍ତିତ୍ୱ ନିଆରା। ରାଜ୍ୟ ନେତା ଅପେକ୍ଷା କେନ୍ଦ୍ର ନେତା ଭାବେ ସେ ବେଶ୍ ପରିଚିତ।

ନୀତି ଭିତରେ ଶ୍ରେଷ୍ଠ ନୀତି ହେଉଛି ରାଜନୀତି ଏବଂ ରାଜନେତାମାନେ ଭଦ୍ରତା ତଥା ଶାଳୀନତାର ମଡ଼େଲ ବୋଲି ଗଣାଯାଆନ୍ତି। କିନ୍ତୁ ଦୁର୍ଭାଗ୍ୟ ଯେ, ରାଜନେତାମାନଙ୍କୁ ଆଉ ଭଦ୍ରତାର ପ୍ରତୀକ ଭାବେ ଗ୍ରହଣ କରାଯାଉନାହିଁ। ଏମାନେ ଶାଳୀନତାର ସିମ୍ବଲ କହି ଆଉ କିଏ ଉଦାହରଣ ଦେଉନାହିଁ। ଯେଉଁଠି ରାଜ୍ୟର ଜଣେ ମୁଖ୍ୟମନ୍ତ୍ରୀ ଦେଶର ପ୍ରଧାନମନ୍ତ୍ରୀଙ୍କ ସ୍ୱରକୁ ଟି.ଭି. ସାମନାରେ ବସି ନକଲ କରି ମିମିକ୍ ଏବଂ ତାଚ୍ଛଲ୍ୟ କରିପାରନ୍ତି, ସେମାନେ ଭଦ୍ରତାର ମଡ଼େଲ ହେବେ କେମିତି ?

ରାଜନୈତିକ ବ୍ୟଙ୍ଗ ଅଭିନେତାଙ୍କୁ ଶୋଭାପାଏ। ନେତାଙ୍କୁ ନୁହେଁ। ଇଏ ଆଜିର ଶେଷ କଥା।



# ରାଜନୈତିକ ତୋଷାମଦ

ତୋଷାମଦ ହେଉଛି ଚାଟୁକଥା ବା କାର୍ଯ୍ୟ, ଯାହା ଜଣେ ବ୍ୟକ୍ତି ନିଜର ଶାସକ ବା ପ୍ରଭୁଙ୍କ ପ୍ରତି ପ୍ରଦର୍ଶନ କରିଥାଏ। ଚାଟୁକାର ବ୍ୟକ୍ତି ନିଜର ସୁବିଧା ପାଇଁ ହିଁ ଏ ପ୍ରଦର୍ଶନ କରେ। ଏବଂ ସବୁଠାରୁ ବଡ଼ କଥା ହେଲା, ତୋଷାମଦ କଲାବେଳେ ନିଜର ସ୍ୱାଭିମାନ, ଆଦର୍ଶ ଏବଂ ନୀତି କ୍ଷୁର୍ଣ୍ଣ ହେଉଛି ଜାଣି ମଧ୍ୟ ତୋଷାମଦକାରୀ ଖୋସାମତ କରିବାକୁ କୁଣ୍ଠାବୋଧ କରେନି।

ଏପରି ଅର୍ଥ ରଖିଥିବା ତୋଷାମଦକାରୀ ବ୍ୟକ୍ତିମାନଙ୍କର ସଂଖ୍ୟା ସଂପ୍ରତି ରାଜନୀତିରେ ବେଶି। ଏ ସଂଖ୍ୟା କ୍ରମଶଃ ବି ବଢୁଛି। ଏଇ କିଛି ଦିନ ତଳେ ଓଡ଼ିଶାର ଜଣେ ବରିଷ୍ଠ ମନ୍ତ୍ରୀ ଗୋଟିଏ ସାଧାରଣ ସଭାରେ ବଡ଼ ପାଟିରେ କହିଦେଲେ - ସେ ହେଉଛନ୍ତି ବିଜୁ ଜନତା ଦଳର ସଭାପତିଙ୍କ ଚାକର। ତାଙ୍କ ଦଳର ସବୁ ନେତାଏ ସଭାପତିଙ୍କ ଚାକର। ଏବଂ ସଭାପତିଙ୍କର ବଡ଼ ଭୁଲ ହୋଇଗଲା ସେ ଜଣେ ତାଙ୍କର ଚାକରକୁ  ରାଜ୍ୟସଭାକୁ ପଠାଇଦେଲେ।

ଗଣମାଧ୍ୟମ ଆଗରେ ଏବଂ ହଜାର ହଜାର ଲୋକଙ୍କ ଉପସ୍ଥିତିରେ ଏପରି ମନ୍ତବ୍ୟ ଦେବାକୁ ମନ୍ତ୍ରୀ ମହୋଦୟଙ୍କୁ ସଙ୍କୋଚ ଲାଗିନଥିଲା। ସଭାରେ ଉପସ୍ଥିତ ଥିବା ସଭାପତି ବି ଏହାକୁ ବୋଧେ ଉପଭୋଗ କରୁଥିଲେ। ମନେ ହେଉଥିଲା, ରାଜନୈତିକ ପ୍ରଭୁଙ୍କୁ ତୋଷାମଦ କଲେ ଏଠି ଚାକର ବି ମନ୍ତ୍ରୀ, ସାଂସଦ ହୋଇ ପାରନ୍ତି ଏବଂ ଡ୍ରାଇଭର ବି କଂପାନୀର ଡ଼ାଇରେକ୍ଟର ହୋଇପାରେ। ରାଜା ରାଜୁଡ଼ା ଯୁଗରେ ରାଜସେବକମାନଙ୍କୁ ଏମିତି ଉଚ୍ଚପଦବୀରେ ଅବସ୍ଥାପିତ ହେବା କଥା କାହାଣୀରେ ଶୁଣାଯାଏ।

ତୋଷାମଦ ବର୍ତ୍ତମାନ ପ୍ରାୟ ସବୁ ରାଜନୈତିକ ଦଳରେ ରହିଛି। ଇଏ ଏବେ ନୂଆ ରାଜନୈତିକ ସଂସ୍କୃତି। ଏହାର କାରଣ ହେଲା, ସାଂପ୍ରତିକ ଭାରତୀୟ ରାଜନୈତିକ ଦଳମାନେ ଆଉ ଗଣତାନ୍ତ୍ରିକ ନୁହନ୍ତି। ଏମାନେ ମଧ୍ୟଯୁଗୀୟ ସାମନ୍ତବାଦୀ ଢ଼ାଞ୍ଚାରେ ଚାଲିଛନ୍ତି। ବଂଶ ତଥା ପରିବାରର ଉତ୍ତରାଧିକାରକୁ ନେଇ ରାଜନୈତିକ ଦଳ ସୃଷ୍ଟି ହେଉଛି ଏବଂ ବଢୁଛି। ସେଇଥିପାଇଁ ନେତାଙ୍କୁ ଏଠି ନିର୍ଦ୍ଦ୍ୱନ୍ଦ୍ୱରେ ଯୁବରାଜ କୁହାଯାଏ। କିଛି ଦଳର  ମୁଖିଆଙ୍କୁ ଆମ୍ମା, ବେହନ, ଦିଦି ବୋଲି ସମ୍ବୋଧନ କରାଯାଏ। ରାଜନୀତିର ଏ ନୂଆ ସଂସ୍କୃତିରେ କେବଳ ତୋଷାମଦର ଚିହ୍ନ ହିଁ ଲୁଚି ରହିଥାଏ।

ସାମନ୍ତବାଦୀ ଢ଼ାଞ୍ଚା ସଂପ୍ରତି ପ୍ରାୟ ସବୁ ଆଂଚଳିକ ଦଳ ଭିତରେ ଆନୁପାତିକ ଭାବେ ଅଧିକ। ଦଳର ମୁଖ୍ୟ ଏଠି ସବୁ କିଛି। ସଂଗଠନ ଏବଂ ଶାସନ (ଯଦି ଦଳ କ୍ଷମତାରେ ଥାଏ) ସମସ୍ତ ଜଣଙ୍କ ହାତରେ ଥାଏ। ମୁଖିଆଙ୍କ ଇଛା ତଥା ମନମାନିରେ ଏଠି ସବୁ ନିଷ୍ପତ୍ତି ନିଆଯାଏ। ଏହା ବିରୁଦ୍ଧରେ ଦଳୀୟ କର୍ମୀ ବା ନେତାଙ୍କ ଠାରୁ ପ୍ରଶ୍ନ ବି ହୁଏ ନାହିଁ। ଏଇଥିପାଇଁ ଯେ ସବୁ ରାଜନୈତିକ ଦଳ ଭିତରେ ମହତାକାଂକ୍ଷୀ ଚାଟୁକାରଙ୍କ ଗୋଷ୍ଠୀଟିଏ ଅଛି। ଏ ଗୋଷ୍ଠୀ ରାଜନୈତିକ ପ୍ରଭୁଙ୍କୁ ଘେରି ରହିଥାଆନ୍ତି। ବସ୍‌ଙ୍କୁ ଅସନ୍ତୁଷ୍ଟ କଲେ କାଳେ ସୁବିଧା ସୁଯୋଗରୁ ବଞ୍ଚିତ ହେବାର ଆଶଙ୍କା ଥାଏ। ଏବଂ ଅସଲ କଥା ହେଲା, ପ୍ରତ୍ୟେକ ରାଜନୈତିକ ମୁଖ୍ୟ ନିଜ ଅହଂକାରକୁ ବାହାବା କଲାପରି ଲୋକଙ୍କୁ ଏବେ ବି ପସନ୍ଦ କରୁଛନ୍ତି।

ନେତାଙ୍କ ଜନ୍ମଦିନ ଉତ୍ସବ ପାଳନ କଥା ଅନେକ ସମୟରେ ଖବରରେ ଆସେ- ନେତାଙ୍କ ଦୁଆର ଆଗରେ ଲମ୍ବାଧାଡ଼ି, ନେତାଙ୍କ ପାଇଁ ଫୁଲମାଳ, ଟଙ୍କା ହାର ଏବଂ ରୂପା ତଥା ସୁନାର ମୁକୁଟ। ଏସବୁ ଦେଖିଲେ ଭ୍ରମ ସୃଷ୍ଟି ହୁଏ ଯେ, ଏସବୁ ଗଣତାନ୍ତ୍ରିକ ରାଜନେତା ନା ରାଜତନ୍ତ୍ରର ପ୍ରତିନିଧି।

ଭାରତୀୟ ରାଜନୀତିରେ ତୋଷାମଦ ଏଠି ପ୍ରାୟ ବହୁଦିନ ପୂର୍ବରୁ ଆରମ୍ଭ ହେଲାଣି। ଠିକ୍ କରି କହିଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସମୟରୁ ଏହାର ମୂଳଦୁଆ ପଡ଼ି ସାରିଛି। ଉଣେଇଶ ସତୁରି ଦଶକରେ ଶ୍ରୀମତୀ ଗାନ୍ଧୀଙ୍କୁ ଦୁର୍ଗା ରୂପେ ବର୍ଣ୍ଣନା କରାଯାଇଥିଲା। ଇନ୍ଦିରା ଯେ ଇଣ୍ଡିଆ ଏପରି ମନ୍ତବ୍ୟ ବି ଆସୁଥିଲା।

ଏହା ନିଶ୍ଚିତ ଯେ ଚାଟୁକାରିତା ଏକ କଳା। ଚାଟୁକାରର କଥାରେ ସମ୍ମୋହନ ଗୁଣଟିଏ ବି ଥାଏ। ନଚେତ୍ ତୋଷାମଦକୁ ରାଜନୈତିକ ମୁଖ୍ୟମାନେ ଯେପରି ଏବେ ଉପଭୋଗ କରୁଛନ୍ତି ଏହା କରନ୍ତେ ନାହିଁ। ନିଜକୁ ଚାକର କହି ଅଯୋଗ୍ୟ ବୋଲି ପ୍ରମାଣ ଦେଉଥିବା ବ୍ୟକ୍ତିକୁ ମନ୍ତ୍ରୀ ପଦରେ ରଖନ୍ତେନି।

ଗତ ଜାନୁୟାରୀ ୧ ତାରିଖରେ ନୂଆବର୍ଷ ଉପଲକ୍ଷେ ଦୈନିକ ଇଂରାଜୀ ଖବର କାଗଜ 'ଦି ହିନ୍ଦୁ'ରେ ଏକ ପୂର୍ଣ୍ଣ ପୃଷ୍ଠାରେ ବିଜ୍ଞାପନଟିଏ ପ୍ରକାଶ ପାଇଥିଲା। ଏ ବିଜ୍ଞାପନ ଦେଇଥିଲେ ତାମିଲନାଡୁର ଜଣେ ରାଜନେତା ଏଚ୍. ବସନ୍ତ କୁମାର। ବସନ୍ତ କୁମାର ହେଉଛନ୍ତି ସ୍ଥାନୀୟ 'ବସନ୍ତ ଟି.ଭି. ଚ୍ୟାନେଲ'ର ମାଲିକ। ବସନ୍ତ କୁମାର ବିଜ୍ଞାପନରେ ଶ୍ରୀମତୀ ସୋନିଆ ଗାନ୍ଧୀଙ୍କୁ ନବ ବର୍ଷର ଶୁଭେଚ୍ଛା ଜଣାଇ ଲେଖିଥିଲେ- "ଆମକୁ ତୁମ ପାଦ ତଳେ ଚିରଦିନ ରଖିଥାଅ ମାଆ"। 'ଉଇ ରିମେନ୍ ମାଡ଼ାମ୍‌ଜୀ ଏଭର ଆଟ୍ ଉୟୋର ଫିଟ୍।'

ସଂପ୍ରତି କର୍ପୋରେଟ୍ ସେକ୍ଟରରେ ମଧ୍ୟ ତୋଷାମଦ ଦେଖା ଦେଲାଣି। ଚାଟୁକାରଙ୍କ

ଏଠି ଆବିର୍ଭାବ ହେଲାଣି। ବୋର୍ଡ଼ର ଡ଼ାଇରେକ୍ଟର ହେବାକୁ କଂପାନୀର ମାଲିକଙ୍କୁ ସନ୍ତୁଷ୍ଟ କରିବା ପାଇଁ କମ୍ପାନୀର ଅନେକ କନିଷ୍ଠ ପଦାଧିକାରୀ ଏବେ ବ୍ୟସ୍ତ। ଯେକୌଣସି ହୀନ କାମ ପାଇଁ ଏମାନେ ପ୍ରସ୍ତୁତ। ଦକ୍ଷତା ତଥା ଅଭିଜ୍ଞତା ଏଠି ଏବେ ପଛସିଟ୍‌କୁ ଗଲାଣି। ଚାଟୁକାରିତା ଏବେ ଆଗରେ ରହିଛି।

ଚାଟୁକାରକୁ ତା'ର ଚାଟୁକାରିତା ସଂପର୍କରେ ପ୍ରଶ୍ନକଲେ ଉତ୍ତର ଆସେ, ଏହା ଚାଟୁକାରିତା ନୁହେଁ। ଏହା ପ୍ରଶଂସା। ନିଜର ପ୍ରଭୁ ବା ସ୍ୱାମୀଙ୍କ ପ୍ରତି ଏହା ଭକ୍ତି। କୌଣସି ସମ୍ମାନିତ ବ୍ୟକ୍ତିଙ୍କୁ ପ୍ରଶଂସା କରି ଭକ୍ତି ପ୍ରଦର୍ଶନ କରିବା ଖରାପ କଥା ନୁହେଁ।

ଅବଶ୍ୟ ଭକ୍ତି ଏବଂ ତୋଷାମଦ ଭିତରେ ଥିବା ପାର୍ଥକ୍ୟ ବହୁତ ପତଳା। ଏତେ ପତଳା ଯେ ଏହାକୁ ଜାଣିବା କଷ୍ଟ। ଏହା ସତ ଯେ, ତୋଷାମଦକୁ ନିଜେ ତୋଷାମଦକାରୀ ଏବଂ ରାଜନୈତିକ ମୁଖ୍ୟ ଉଭୟେ ଖୁବ୍ ଭଲ ଭାବେ ଜାଣିଥାଆନ୍ତି।

ରାଜନୈତିକ ତୋଷାମଦ ବର୍ତ୍ତମାନର ଭାରତୀୟ ସଂସଦୀୟ ଗଣତନ୍ତ୍ର ପ୍ରତି ବିପଦ ଆଣିଛି। ଭୋଟଦାତାର ଭୋଟ ସମର୍ଥନକୁ ଜନପ୍ରିୟତାର ନାଁ ଦେଇ ରାଜନୈତିକ ମୁଖିଆ ଏକଛତ୍ରବାଦୀ ହେଉଛନ୍ତି। ଏବଂ ଏକଛତ୍ରବାଦୀ ମାନସିକତା ରଖିଥିବା ରାଜନୈତିକ ମୁଖିଆଙ୍କୁ ତୋଷାମଦରେ ସନ୍ତୁଷ୍ଟ କରି ଦଳୀୟ ଟିକେଟ ପାଇ ମନ୍ତ୍ରୀପଦ ପାଇବାରେ ସୁଯୋଗ ଅନେକ ସୃଷ୍ଟି କରୁଛନ୍ତି।

ଏବଂ ଦ୍ୱିତୀୟ କଥା ହେଲା ଏଇଥିପାଇଁ ଦଳର ଆଭ୍ୟନ୍ତରୀଣ ଗଣତନ୍ତ୍ରକୁ ବେଖାତିର କରାଯାଉଛି। ଅବଶ୍ୟ କୌଣସି ଦଳର ଆଭ୍ୟନ୍ତରୀଣ ଗଣତନ୍ତ୍ର ପୁରାପୁରି ଆଭ୍ୟନ୍ତରୀଣ ନୁହେଁ। ଦଳର ସଂବିଧାନ ତଥା 'ବାଇ-ଲ'କୁ ନେଇ ରାଜନୈତିକ ଦଳଟିଏ ସ୍ୱୀକୃତି ପାଇଥାଏ। ଏବଂ ଯେତେବେଳେ ଦଳଟିଏ ନିଜ ସଂବିଧାନ ଅନୁସାରେ ଚାଲେ ନାହିଁ, ଏକଥା ବି ନିର୍ବାଚନ ଆୟୋଗ ଦେଖିବା କଥା। କୌଣସି କର୍ମଚାରୀ ସଂଗଠନ ଯଦି ନିଜର ବାଇ-ଲ ଅନୁସାରେ କାମ କରେ ନାହିଁ, ଏହାର ସ୍ୱୀକୃତି ପ୍ରତ୍ୟାହାର କରିନେବାର ଅଧିକାର ଉଚ୍ଚ କର୍ତ୍ତୃପକ୍ଷଙ୍କ ରହିଛି।

ସୁତରାଂ ଶେଷକଥା ହେଲା, ଶାସନରେ ଚାଟୁକାର ଏବଂ ତୋଷାମଦ ରହିବ ନାହିଁ ବୋଲି ଆମ ପୂର୍ବ ପୁରୁଷମାନେ ଆମକୁ ଗଣତନ୍ତ୍ର ଶାସନ ଦେଇଥିଲେ। ତୋଷାମଦ ଏବେ ଏଇ ଗଣତନ୍ତ୍ରକୁ ଧ୍ୱଂସ କରିବାକୁ ବସିଛି। ଏବଂ ଦୁଃଖ ତଥା ଆଶ୍ଚର୍ଯ୍ୟ ଯେ, ସାଧାରଣ ଜନତା ଏସବୁ ଦେଖି ଚୁପ୍ ହୋଇରହିଛି। ଚୁପ୍ ରହିବାଟା ସମର୍ଥନର ଲକ୍ଷଣ। ସାବଧାନ୍।



# ଜୀବନଶୈଳୀ

ଆଧୁନିକ ଜୀବନଶୈଳୀ କହିଲେ ଏବେ ବିଳାସପୂର୍ଣ୍ଣ ଜୀବନକୁ ବୁଝାଯାଉଛି। ଭୋଗର ନୂଆ ନାଁ ହେଉଛି ଏବେ ଆଧୁନିକତା। ମହାତ୍ମାଗାନ୍ଧୀଙ୍କର ସରଳ ଜୀବନ ଏବଂ ଉଚ୍ଚ ଚିନ୍ତନ ତତ୍ତ୍ୱର ସଂପ୍ରତି ଯେପରି କିଛି ଅର୍ଥ ନାହିଁ।

ରାହାଜାନୀ, ଚୋରୀ କରି ଧରାପଡୁଥିବା ପିଲାଙ୍କ ଭିତରେ ବର୍ତ୍ତମାନ କିଛି ବଡ଼ ଘରର ପିଲା ଧରା ହେଉଛନ୍ତି। ଏମାନଙ୍କ ଭିତରୁ ଅନେକ ଉଚ୍ଚ ଶିକ୍ଷିତ ଏବଂ ବୈଷୟିକ ଶିକ୍ଷା ପାଉଥିବା ପିଲା। ପବ୍‌ରେ ମଦ ଏବଂ ନିଶାଖାଇ ଉନ୍ମତ ହେଉଥିବା ପିଲାଙ୍କ ଭିତରେ ଏମାନଙ୍କ ଭିତରୁ ମଧ କିଛି ରହୁଛନ୍ତି। ବେଶ୍ୟାଳୟରୁ ଧରା ହେଉଥିବା ପିଲା ମଧ୍ୟରେ ଏଇ ପିଲା ବି ଅଛନ୍ତି। ଏହାର କାରଣ କ'ଣ ବୋଲି ପ୍ରଶ୍ନ କଲେ ଅନୁସନ୍ଧାନକାରୀମାନେ କହନ୍ତି- ଆଧୁନିକ ଜୀବନ ଶୈଳୀ ହିଁ ଏହାର କାରଣ। ଏଇ ଶୈଳୀର ପୂର୍ତ୍ତି ପାଇଁ ଏମାନେ ଅପରାଧ କରୁଛନ୍ତି; ହିଂସା ମଧ କରୁଛନ୍ତି।

ନୂଆ ଅଧୁନିକ ଶୈଳୀର ଜୀବନକୁ ନେଇ ଏବେ ଏକ ସର୍ଭେକ୍ଷଣ ପ୍ରକାଶ ପାଇଥିଲା। ଅନେକ ପ୍ରଶ୍ନ ଭିତରେ ଏ ପ୍ରଶ୍ନ ଥିଲା- ଆଧୁନିକ ଯୁବଗୋଷ୍ଠୀ ଭିତରେ ଦେଖା ଦେଇଥିବା ଅପରାଧିୟ ପ୍ରବୃତ୍ତି, ଏବଂ ପ୍ରଦର୍ଶନର କାରଣ କ'ଣ? କାରଣ ଭିତରେ ଲଘୁ କାରଣଟିଏ ଥିଲା- ବାଇକ୍‌, ମୋବାଇଲ ଏବଂ ଗାର୍ଲଫ୍ରେଣ୍ଡ। ବାଇକ୍‌ରେ ଗାର୍ଲଫ୍ରେଣ୍ଡ ବସାଇ ମୋବାଇଲରେ କଥା ହୋଇ ଦୃତଗତିରେ ଗଲାବେଳେ ଦୁର୍ଘଟଣା ହେଉଛି।

ଏଇ କିଛିଦିନ ତଳେ ଦିଲ୍ଲୀରେ ଏକ ଯୁବତୀର ଗଣଧର୍ଷଣକୁ ନେଇ ବିବାଦ ଦେଖା ଦେଇଥିଲା। ଘଟଣାଟି ଥିଲା ଠିକ୍‌ ଏମିତି- ଉଚ୍ଚଶିକ୍ଷିତ ଚାରିଜଣ ପୁଅ ଏବଂ ଗୋଟିଏ ଝିଅ ରୁଦ୍ଧ କୋଠରୀରେ ଏକତ୍ର ବସି ମଦ ପିଇଲେ। ନିଶାସକ୍ତ ହୋଇ ଝିଅଟି ଯୌନ ଉଦ୍ଦୀପକ ଅଶ୍ଳୀଳ ଇଂଗିତ ଦେଲା। ତାପରେ ଧର୍ଷଣ ହୋଇଥିଲା। ଧର୍ଷଣର କାରଣ କ'ଣ ବୋଲି ପ୍ରଶ୍ନ କଲାବେଳେ ଏ ସମସ୍ତ ଘଟଣା ଏହାର କାରଣ ବୋଲି ପୋଲିସ ଏପରି ଉତ୍ତର ଦେଇଥିଲା। ଏବଂ ବଡ଼କଥା ହେଲା, ପୋଲିସର ଏମିତି ଉତ୍ତର ଶୁଣି ଭାରତର କିଛି ମହିଳା ଅଧିକାର କର୍ମୀ, ପୋଲିସର ଏପରି ନାରୀ ବିରୋଧି ମାନସିକତାକୁ ସମାଲୋଚନା କରିଥିଲେ।

ସମାଜଶାସ୍ତ୍ରୀମାନେ କହନ୍ତି - ଯେତେବେଳେ ଏବେ ପ୍ରାଚୁର୍ଯ୍ୟ ବଢ଼ିଛି ଏବଂ ବିଳାସ ପାଇଁ ସୁଯୋଗ ଆସିଛି, ସେତେବେଳେ ଜୀବନ ଶୈଳୀରେ ପରିବର୍ତ୍ତନ ଆସିବା ସ୍ୱାଭାବିକ। ଏହା ହିଁ ଏବେ ହେଉଛି। ଅତ୍ୟଧିକ ଭୋଗରୁ ଅବସାଦ ଆସିବା ମଧ୍ୟ ଯଥାର୍ଥ। ଅବସାଦରୁ ମୁକ୍ତି ପାଇଁ ଡ୍ରଗ୍ସ, ମଦ, ଗାର୍ଲଫ୍ରେଣ୍ଡର ଆୟୋଜନ। ଏକାଧିକ ସ୍ତ୍ରୀ ଓ ଏକାଧିକ ପୁରୁଷ ସହ ସଂପର୍କ, ସମଲିଙ୍ଗୀ ସଂପର୍କ ଏବଂ ଏକାଠି ବସି ଗୋଟିଏ ସିରିଞ୍ଜରେ ଡ୍ରଗ୍ ଗ୍ରହଣ, ଇଏ ଏବେ ଏଡ୍ସ ତଥା ଏଚ୍.ଆଇ.ଭି.ର କାରଣ। ଏହା ନୂଆ ଜୀବନ ଶୈଳୀର ରୋଗ। ପ୍ରଶ୍ନ ଆସୁଛି - ଆଧୁନିକ ଜୀବନ ଢ଼ାଞ୍ଚା ନେଇ ଆମେ ପ୍ରକୃତରେ ଯାଉଛୁ କୁଆଡ଼େ।

ଆଜକୁ ପ୍ରାୟ ଚାରି ଦଶନ୍ଧି ତଳେ କଲେଜରେ ପାଠ ପଢ଼ିବା ବେଳେ ଆମ ପିଢ଼ୀର ପିଲାଙ୍କ ପାଇଁ ସେବେ ସେମିତି କିଛି ପ୍ରାଚୁର୍ଯ୍ୟର ଉପଲବ୍ଧି ନଥିଲା। ସକାଳୁ ଉଠି ଚା' ପିଇବା କ'ଣ ଜାଣିନଥିଲୁ। ଘରୁ ହଷ୍ଟେଲକୁ ଆସିବା ବେଳେ ବୋଉ ବ୍ୟାଗରେ ଚୁଡ଼ା ଏବଂ ଛତୁଆ ବାନ୍ଧି ଦେଉଥିଲା। ଏବଂ ତାଗିଦ୍ କରୁଥିଲା- ସକାଳୁ ଦାନ୍ତଘସି, ଗାଧୋଇ ଆସି ଏଥିରୁ କିଛି ଖାଇଦେବୁ। ଭାତ ଯେତେବେଳେ ଖାଆ ଚଳିବ। ସେତେବେଳେ ଆମ ପରି ଗାଁ ରୁ ଆସୁଥିବା ପିଲାମାନଙ୍କୁ ସହରୀ ପିଲାମାନେ 'ନାଲି ଚୁଡ଼ା' କହି ତାଚ୍ଛଲ୍ୟ କରୁଥିଲେ। ଅବଶ୍ୟ କୁହାଯାଇପାରେ- ସେତେବେଳେ ଏତେ ସଂପଦ ନଥିଲା। ଉପଭୋଗ ପାଇଁ ସେତେ ଉପାଦାନ ନଥିଲା। ସେଇଥିପାଇଁ ସରଳ ଜୀବନ ପାଇଁ ଲୋକେ ବାଧ୍ୟ ହେଉଥିଲେ।

ଏହା କିନ୍ତୁ ପ୍ରକୃତରେ ପୂର୍ଣ୍ଣ ସତ୍ୟ ନୁହେଁ। ସତ୍ୟ ହେଉଛି- ସଦ୍ୟ ଗାନ୍ଧୀ ଲିଗାସିରୁ ଆସିଥିବା ସେତେବେଳର ଛାତ୍ରଛାତ୍ରୀମାନଙ୍କ ପାଇଁ ସରଳ ତଥା ଗୁଣାତ୍ମକ ଜୀବନ ଯାପନ କରିବା ଏକ କମିଟିମେଣ୍ଟ୍ ଥିଲା।

ଷାଠିଏ ସତୁରି ଦଶକରେ ଓଡ଼ିଶାର କିଛି ସ୍ୱଚ୍ଛଳ ବର୍ଗର ଭଲ ପିଲା ଦିଲ୍ଲୀ ପଢ଼ିବାକୁ ଯାଉଥିଲେ। ମେଧାବୀ ଓଡ଼ିଆ ପିଲାଏ ସେଠି ରାତି ଅନିଦ୍ରା ହୋଇ ନିଜ ପଢ଼ା ପାଇଁ ନୋଟ୍ ତିଆରି କରୁଥିଲେ। ସଫଳତା ପାଇଁ ସ୍ୱପ୍ନ ଦେଖୁଥିଲେ। ଦିଲ୍ଲୀର ସୁନ୍ଦରୀ ଏବଂ ଚାଲାକ୍ ଝିଅ କିନ୍ତୁ ମେଧାବୀ ଓଡ଼ିଆ ପୁଅ ଠାରୁ ନୋଟ୍ ଏବଂ ହାର୍ଟ (ହୃଦୟ) ମାଗୁଥିଲେ। ନୂଆ ଜୀବନ ଶୈଳୀରେ ଅଭ୍ୟସ୍ତ ନଥିବା ଓଡ଼ିଆ ପିଲାଏ ଏସବୁ ଦିଲ୍ଲୀ ଝିଅଙ୍କୁ ଦେଉଥିଲେ। ଅଥଚ ଚାଲାକ୍ ଦିଲ୍ଲୀ ଝିଅ ନିଜ ପାଖରେ ନୋଟ୍‌ଟି ରଖି ହାର୍ଟ ଫେରାଇ ଦେଉଥିଲେ। ଶିକ୍ଷାରେ ଅକୃତକାର୍ଯ୍ୟ ହୋଇ ମୁହଁରେ ଦାଢ଼ି ରଖି ଓଡ଼ିଆ ପୁଅଟି ମହାନଦୀ ଘେରା ଓଡ଼ିଶାକୁ ବ୍ୟର୍ଥ ଜୀବନ ନେଇ ଫେରି ଆସୁଥିଲା। ସେତେ ଭଲ ନକରି, ମୁହଁରେ ଦାଢ଼ି ରଖି ଦିଲ୍ଲୀରୁ ଫେରୁଥିବା ସାଙ୍ଗମାନଙ୍କୁ ଆମେ ଏଇ ମନ୍ତବ୍ୟ ଦେଇଥିଲୁ। ଭୋଗ ପାଇଁ ବାଟ ହୁଡ଼ିଲେ ଏପରି ଅବସ୍ଥା ଆସେ। ସେତେବେଳେ ଆସୁଥିଲା। ଏବେ ବି ...।

କିଏ କେମିତି ଏବେ ଏଇ ନୂଆ ଜୀବନଶୈଳୀକୁ ସଂସ୍କୃତି ସମ୍ପନ୍ନ ଜୀବନ ବୋଲି କହନ୍ତି। ଅନ୍ୟ କଥାରେ କହିଲେ - 'କଲଚରଡ୍ ଲାଇଫ୍'। ଅନେକ କିନ୍ତୁ ପ୍ରଶ୍ନ କରନ୍ତି- ବାସ୍ତବରେ ଚକ୍ ଚକ୍ ଜୀବନ କ'ଣ ସଂସ୍କାର? ଡ଼ିଗ୍ରୀଟିଏ ପାଇଯିବା କ'ଣ ଶିକ୍ଷା? ପ୍ରକୃତରେ ସଂସ୍କାରୀ ଜୀବନଟିଏ ହେଉଛି - ଯିଏ ଭଲ ମନ୍ଦ ଭିତରେ ପ୍ରାର୍ଥକ୍ୟ ବୁଝିପାରୁଥିବ। ଯିଏ ନିଜ ଜୀବନ ସହିତ ସାମାଜିକ ଜୀବନ ସ୍ୱଚ୍ଛନ୍ଦତା ପ୍ରତି ଧ୍ୟାନ ଦେଉଥିବ। ସଂକ୍ଷେପରେ କହିଲେ - ଯିଏ ନିଜ ଜୀବନକୁ ସାମାଜିକ ସଂପତ୍ତିଟିଏ କରି ପାରୁଥିବ।

ନୂଆ ଜୀବନ ଶୈଳୀ ପାଇଁ ଆମେ ଖାଲି ଏବେ ନିଜ ଜୀବନକୁ ଧ୍ୱଂସ କରୁନାହୁଁ। ପରିବେଶକୁ ବି ଧ୍ୱଂସ କରୁଛୁ। ଅତୀତରେ ଏକ ସମୃଦ୍ଧ ପରିବେଶ ପାଇଁ ଆମେ ଏ ଧରିତ୍ରୀ, ନଦୀ, ବୃକ୍ଷକୁ ପୂଜା କରୁଥିଲୁ। ଗଙ୍ଗା, ଗୋଦାବରୀ ଆମ ପାଇଁ ଦେବୀ ତୁଲ୍ୟ ଥିଲେ। ବର, ଓସ୍ତ ଗଛକୁ ପ୍ରଣାମ ଜଣାଉଥିଲୁ। ଧର୍ମକୁ ଆଧାର କରି ଜୀବନ ଧାରାର ନିରୁପଣ କରୁଥିଲୁ। ଏବେ ତ ପରିବେଶକୁ ଶୋଷଣ କରି ଆଧୁନିକ ଜୀବନ ଶୈଳୀ ଖୋଜୁଛୁ। କୀର୍ତ୍ତନ କରୁଥିଲେ, ମଠ ମନ୍ଦିର ଯାଉଥିଲେ ଏବଂ ବାବାଙ୍କ ଆଶ୍ରୟ ନେଉଥିଲେ ବି ସରଳ ଏବଂ ଗୁଣାତ୍ମକ ଜୀବନ ପାଇଁ ଇଛା ନାହିଁ। ଏସବୁ ବାହାନା।

ଦିଲ୍ଲୀରେ ଦିନ ଦ୍ୱିପହରରେ ଏବେ ରାସ୍ତା ଦେଖାଯାଉ ନାହିଁ। ଗତ ୨୦୧୩ ଜାନୁୟାରୀ ଦୁଇ ତାରିଖରେ ଏ ଲେଖକ ଦିଲ୍ଲୀ ବିମାନ ବନ୍ଦରକୁ ଆସିବା ବେଳେ କାର୍‌ର ଡ୍ରାଇଭର କହୁଥିଲା- "ଏସବୁ ଆହୁରି ବଢ଼ିବ ବାବୁ। ଗାଡ଼ି, ମଟର, ଏ.ସି., ଗଛକଟା, ବଡ଼ ବଡ଼ କୋଠା ଏଥିପାଇଁ ଦାୟୀ"।

ପରିବେଶବିତ୍‌ମାନେ ଏଇ କଥା ବି କହନ୍ତି - ପରିବେଶ ପ୍ରଦୂଷଣ ପାଇଁ ଆଧୁନିକ ଜୀବନଶୈଳୀ ଦାୟୀ। ଗ୍ରୀନ୍ ହାଉସ୍ ପାଇଁ ଅନିୟନ୍ତ୍ରିତ ଗ୍ୟାସ ନିର୍ଗରଣ ହିଁ ଏକ କାରଣ। ପରିବେଶ ପାଇଁ ତ ପୃଥିବୀ ଗୋଟିଏ। ଏହାର କିଛି ସୀମା ନଥାଏ। ଦିନ ହୁଏତ ଆସିବ- ଯେତେବେଳେ ଗରିବ ଲୋକଟି ଧନୀ ଲୋକକୁ ଦେଖି ପ୍ରଶ୍ନ କରିବ - "ନୂଆ ଜୀବନ ଶୈଳୀକୁ ଆବୋରି ନେଇ ଏ ପୃଥିବୀ ଏବଂ ଏ ସମାଜ ପ୍ରତି ବିପଦ ଆଣିବାକୁ ତୁମକୁ ଅଧିକାର ଦେଇଛି କିଏ?

ହଁ, ଏ ଆଲୋଚନା ଏଇଠି ଏବେ ଶେଷ କରିବାକୁ ଇଛା। ଶେଷକଥା ହେଲା, ଭୋଗରେ ବାନ୍ଧି ହେବାକୁ ଥିବା ମଣିଷକୁ ତା'ର ବଡ଼ିମାପୂର୍ଣ୍ଣ ପ୍ରଦର୍ଶନ ତଥା ଗ୍ଲାମୋର ଦୁନିଆର ପ୍ରହେଳିକା ଭିତରୁ ବାହାରି ଆସିବା ଏବେ ଦରକାର। ଜୀବନର ମୂଲ୍ୟବୋଧ କ'ଣ ବୁଝିବା ଦରକାର। କାରଣ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ ଏ ପୃଥିବୀ ସବୁଠାରୁ ସୁନ୍ଦର। ଜୀବନ୍ତ। ଏହାକୁ ଧ୍ୱଂସ କରାନଯାଉ।



# ଝିଅଙ୍କ ପାଇଁ ଯାଗା ନାହିଁ

ଝିଅମାନେ ଏବେ ବେଶ୍ ଅସୁରକ୍ଷିତ। ସ୍କୁଲ, ସ୍କୁଲ କାର୍, ଟ୍ୟୁସନ କ୍ଲାସ, କୋଚିଙ୍ଗ ସେଣ୍ଟର ସବୁଠି ଅସୁରକ୍ଷାର ଛାପ। ଏପରିକି ନିଜ ଘର ବି ଝିଅଙ୍କ ପାଇଁ ଅସୁରକ୍ଷିତ ସ୍ଥାନ ହୋଇଗଲାଣି। ହଜାର ହଜାର ବର୍ଷ ଧରି ଏ ସମାଜ ଯେଉଁ ଯାଗାକୁ ଝିଅମାନଙ୍କ ପାଇଁ ସୁରକ୍ଷାର ଯାଗା ବୋଲି ଚିହ୍ନଟ କରିଥିଲା, ଯଦି ସେ ଯାଗା ସବୁ ଅସୁରକ୍ଷାର କେନ୍ଦ୍ରସ୍ଥଳ ହୋଇଯାଏ, ତେବେ ଝିଅମାନେ ଯିବେ କୁଆଡ଼େ? ରକ୍ଷାକର୍ତ୍ତା ଯଦି ଅସୁର ହୋଇଯିବେ, କିଶୋରୀ ଝିଅଟିଏ ବିଶ୍ୱାସ କରିବ କାହାକୁ? ଏ ପ୍ରଶ୍ନ ଏବର ପ୍ରଶ୍ନ ନୁହେଁ। ପ୍ରାୟ ଏଇ କିଛି ବର୍ଷ ଧରି ଏପରି ପ୍ରଶ୍ନ ପଚରା ଗଲାଣି।

ଏବେ ଝିଅ ଅସୁରକ୍ଷାର ଯେଉଁ ଘଟଣା ସାରା ଭାରତବର୍ଷକୁ ଚହଲାଇ ଦେଇଛି, ସେ ହେଉଛି କେରଳର ଏକ ଘଟଣା। ନିଜ ବାପା, ଭାଇ ଏବଂ ଦାଦା ଯେ ଗୋଟିଏ ଝିଅକୁ ଧର୍ଷଣ କରିପାରନ୍ତି, ଇଏ ତା'ର ଏକ କୁତ୍ସିତ ଆଲେଖ୍ୟ। ହୁଏତ କୁହାଯାଇପାରେ, ଇଏ ଏକ ବ୍ୟତିକ୍ରମ। ଏବଂ ବ୍ୟତିକ୍ରମ ସାମାଜିକ ଭାବେ ସ୍ୱାଭାବିକ ନୁହେଁ। କିନ୍ତୁ, ଏ ଲେଖକ ଭାବେ - ଏକ କୁତ୍ସିତ ଅଘଟଣକୁ ବ୍ୟତିକ୍ରମ କହି ଆଖିବୁଜି ଦେଇ ଆତ୍ମସନ୍ତୋଷରେ ରହିବା ଏ ସମାଜର ଦାୟିତ୍ୱ ପ୍ରତି ବିଜ୍ଞତା ହେବନି। ବ୍ୟତିକ୍ରମକୁ ଅଣଦେଖା କଲେ ସମୟକ୍ରମେ ଏହା ସାଧାରଣ ହୋଇଯାଏ।

କେରଳ ଘଟଣା ପାଠକେ ଜାଣନ୍ତି। କିଛିଦିନ ତଳେ ଏଠି ଏକ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢୁଥିବା କିଶୋରୀ ଝିଅଟି ସ୍କୁଲ ଛୁଟି ହେବା ପରେ ଘରକୁ ନଆସି ଶ୍ରେଣୀ ଗୃହରେ ବସି କାନ୍ଦିବାକୁ ଲାଗିଲା। ଶିକ୍ଷକ ପଚାରିବାରେ ସେ ଉତ୍ତର ଦେଲା, ଘର ତା ପାଇଁ ଆଉ ସୁରକ୍ଷାର ସ୍ଥାନ ନୁହେଁ। ଗତ ଦୁଇ ବର୍ଷ ଧରି ସେ ଘରକୁ ଫେରିବା ପରେ ତା ବାପା, ଦାଦା, ବଡ଼ଭାଇ ଧର୍ଷଣ କରନ୍ତି। ଏଇ କାରଣରୁ ବଡ଼ ଭଉଣୀ ଆତ୍ମହତ୍ୟା କରିଦେଇଛି। ଶିକ୍ଷକ ଘଟଣାଟିକୁ ସ୍ଥାନୀୟ ପୋଲିସ ଷ୍ଟେସନକୁ ନେବା ପରେ ଘଟଣାର ପ୍ରକୃତ ଚିତ୍ର ଏବେ ପ୍ରକାଶ ପାଇଛି। ମା' ତା'ର ପୋଲିସ ଥାନାରେ ଲିଖିତ ଅଭିଯୋଗ କଲାଣି। ଅଭିଯୋଗରେ ଅଛି- ସ୍ୱାମୀ ସ୍ଥାନୀୟ ରେଷ୍ଟୁରାଣ୍ଟରେ ରୋଷେୟିଆ କାମ କରେ। ସ୍ତ୍ରୀ ଜଣେ ନରେଗା (କର୍ମନିଯୁକ୍ତି ଯୋଜନା)ର ଶ୍ରମିକ। ଅପରାହ୍ନରେ ରେଷ୍ଟୁରାଣ୍ଟରୁ ସ୍ୱାମୀ ଫେରି ଏ ଅପକର୍ମରେ ଥାଏ। ଏବଂ ଏହା ସତ ଯେ

ଗତ ଦୁଇ ବର୍ଷ ତଳେ ବଡ଼ ଝିଅ ଏଇ କାରଣରୁ ଆତ୍ମହତ୍ୟା କରିଛି। ଭଗବାନଙ୍କ ରାଜ୍ୟ କେରଳ ଝିଅମାନଙ୍କ ପାଇଁ ଆଉ ସୁରକ୍ଷିତ ହୋଇ ରହିନାହିଁ। ଘର ଅସୁରକ୍ଷିତ ହୋଇଗଲେ ଝିଅଟି ଯିବ କୁଆଡ଼େ ?

ଝିଅ ସୁରକ୍ଷାର ଅନ୍ୟ ଏକ ସ୍ଥାନ ହେଲା ସ୍କୁଲ। ସ୍କୁଲ ଶିକ୍ଷକ ହେଉଛି ଭରସାର ପାତ୍ର। ଘର ବ୍ୟତୀତ ପିଲାମାନେ ଯେଉଁଠି ଏବଂ ଯାହାକୁ ଅଧିକ ବିଶ୍ୱାସ କରନ୍ତି ସେ ହେଲା ସ୍କୁଲ ଓ ଶିକ୍ଷକ। ଆମ ପୁରାଣ ଶାସ୍ତ୍ର କହେ- ବିଦ୍ୟାଳୟ ଠାରୁ ଅଧିକ ପବିତ୍ର ସ୍ଥାନ ଆଉ କିଛି ନାହିଁ। ଗୁରୁଙ୍କ ଠାରୁ ବଡ଼ ଦେବତା ଆଉ କିଏ ନାହାନ୍ତି। ଏଇ ସବୁ ଶାସ୍ତ୍ରୀୟ ପ୍ରବଚନ ଏବେ ଯେପରି ମିଥ୍ ପରି ଲାଗୁଛି। ପରୀ କାହାଣୀଟିଏ ହୋଇଯାଇଛି। ବିଦ୍ୟାଳୟ ଭିତରେ ଯେ ଝିଅଟିଏ ଆଉ ସୁରକ୍ଷିତ ନୁହେଁ, ଏ ଖବର ପ୍ରତିଦିନ ଆସେ। ଝିଅଟି ପ୍ରତି କିଛି ଶିକ୍ଷକଙ୍କର ଯୌନ ଶୋଷଣର ସଂବାଦ ଆଉ କାହାକୁ ଅଛପା ନାହିଁ। ଏପରି ଖବର ମଧ୍ୟ ଆସେ, କୋଚିଙ୍ଗ ସେଣ୍ଟର, ଏବଂ ଟ୍ୟୁସନ ଶ୍ରେଣୀରେ ଝିଅକୁ ଯୌନ ନିର୍ଯ୍ୟାତନା ଦିଆଯାଏ। କ୍ୟାରିୟର ଗଢ଼ିଦେବାର ଦାୟିତ୍ୱ ନେଇଥିବା ଘରୋଇ ଶିକ୍ଷକ ସଂପ୍ରତି ସନ୍ଦେହଯୁକ୍ତ ବିପଦ ହୋଇଯାଇଛି।

ଭାରତରେ ଏକ ଦୈନିକ ଇଂରାଜୀ ଖବର କାଗଜ ଏବେ ସଂଗୀତ ତଥା ନାଚ ବିଦ୍ୟାଳୟ ମାନଙ୍କରେ କିଶୋରୀ କନ୍ୟାଙ୍କର ଯୌନ ନିର୍ଯ୍ୟାତନାର ଏକ ଅନୁସନ୍ଧାନମୂଳକ ରିପୋର୍ଟ ପ୍ରକାଶ କରିଛି। ଏ ରିପୋର୍ଟରେ ଅଛି, ଦିଲ୍ଲୀ ଏବଂ ମୁମ୍ବାଇର କିଛି ଏପରି ବିଦ୍ୟାଳୟରେ ଲୋଭ ଏବଂ ବିଳାସର ପ୍ରଲୋଭନ ଦେଖାଇ ଶିକ୍ଷାର୍ଥୀନୀମାନଙ୍କୁ ଦେହ ବ୍ୟବସାୟରେ ଲାଗାଯାଉଛି। ଏବଂ ସ୍କୁଲ କାର୍ ଏବଂ ସ୍କୁଲ ବସ୍‌ରେ ଡ୍ରାଇଭରମାନେ ଝିଅମାନଙ୍କୁ ଅଶ୍ଳୀଳ ଇଂଗିତ ଦେବାର କଥା ଆଉ ଏବେ ଆଶ୍ଚର୍ଯ୍ୟ ଲାଗୁନାହିଁ। ଦିଲ୍ଲୀର ଏକ ସ୍କୁଲର କାର୍ ଡ୍ରାଇଭର କିଶୋରୀ ଝିଅଟିକୁ ଧର୍ଷଣ କରି ହତ୍ୟା କରିଦେବାର ସମ୍ବାଦ ଭାରତରେ ଦିନେ ଆଲୋଡ଼ନ ସୃଷ୍ଟି କରିଥିଲା।

ସ୍ପଷ୍ଟ କହିଲେ, ଭାରତୀୟ ମହିଳା ଜନସଂଖ୍ୟାର ପ୍ରାୟ ୪୦ ପ୍ରତିଶତ ହେଉଛନ୍ତି ପନ୍ଦର ବର୍ଷ ପର୍ଯ୍ୟନ୍ତ ବୟସର ଝିଅ ପିଲା। ଏ ଗୋଷ୍ଠୀ ବର୍ତ୍ତମାନ ଏକ ଅସୁରକ୍ଷିତ ଗୋଷ୍ଠୀ। ନିର୍ଯ୍ୟାତନା ପାଇଁ ଏମାନେ ଏବେ ସହଜ ଟାର୍ଗେଟ୍। କାରଣ ଏପରି ବୟସର ଝିଅମାନଙ୍କୁ ଅର୍ଥ ଏବଂ ବଳ ପ୍ରୟୋଗ କରି କାବୁ କରିଦେବା ସହଜ। ନିଜର ଚିହ୍ନା ଜଣା ଏବଂ ଆତ୍ମୀୟଙ୍କ ଦ୍ୱାରା ଯେତେବେଳେ ଏ କାମ କରାଯାଏ, ସେତେବେଳେ ଝିଅଟି ଆହୁରି ଅସୁରକ୍ଷିତ ହୋଇଯାଏ।

ଭାରତର ଜାତୀୟ ଅପରାଧ ରେକର୍ଡ଼ ବ୍ୟୁରୋ ଅନୁଯାୟୀ- ଭାରତ ବର୍ଷରେ ପ୍ରତିବର୍ଷ କିଶୋରୀ ଯୌନ ନିର୍ଯ୍ୟାତନା ବଢ଼ିବାରେ ଲାଗିଛି। ଜାତୀୟ ବ୍ୟୁରୋ ରିପୋର୍ଟ ଏକଥା ବି କୁହେ- ଝିଅମାନଙ୍କ ଯୌନ ନିର୍ଯ୍ୟାତନା ଦେଉଥିବା ବ୍ୟକ୍ତିଙ୍କ ଭିତରେ

ବହୁତ କମ୍ ଅଜଣା ଲୋକ ଥାଆନ୍ତି। ଅନ୍ୟକଥାରେ କହିଲେ - ଯେଉଁ ବ୍ୟକ୍ତି ଝିଅଟିକୁ ଯୌନ ଅସଦ୍ ବ୍ୟବହାର କରେ, ସେ ବ୍ୟକ୍ତିକୁ ଝିଅଟି ଭଲଭାବେ ଜାଣିଥାଏ। ଏବଂ ସବୁଠାରୁ ବଡ଼କଥା ହେଲା- ଦିନେ ଖୁବ୍ ଭଲ ପାଉଛି ବୋଲି ପ୍ରେମିକାକୁ ପ୍ରତିଶ୍ରୁତି ଦେଉଥିବା ପ୍ରେମିକଟି ଯେତେବେଳେ ଏସିଡ୍ ଫିଙ୍ଗି ପ୍ରେମିକାକୁ ବିକୃତ କରିଦିଏ। ଇଏବି ପୁରୁଷ ମାନସିକତାର ଏକ କୁତ୍ସିତ ରୂପ।

ଝିଅଟି ପ୍ରତି ଯୌନ ଶୋଷଣ କରିଥିବା କିଛି ବ୍ୟକ୍ତିଙ୍କର କେଶ୍ ଅଧ୍ୟୟନର ଏକ ରିପୋର୍ଟ ଏବେ ଏ ଲେଖକଙ୍କର ନଜରକୁ ଆସିଥିଲା। ଏ ଅଧ୍ୟୟନର ଗବେଷକମାନେ ବିଶ୍ଳେଷଣରେ କହନ୍ତି- ଯୌନ ଶୋଷଣକାରୀ ଯେକୌଣସି ବ୍ୟକ୍ତି ହୋଇପାରେ। ଯୁବକ ବା ବୟସ୍କ ବ୍ୟକ୍ତି ହୋଇପାରେ। ଧନୀ କିମ୍ବା ଗରିବ ହୋଇପାରେ। ବିବାହିତ କିମ୍ବା ଅବିବାହିତ ପୁରୁଷ ମଧ୍ୟ ହୋଇପାରେ। ଏବଂ ଅତୀତରେ ଅଭଦ୍ରାମିର ଇତିହାସ ନଥିବା ବ୍ୟକ୍ତି ଯେ ଝିଅ ଯୌନ ଶୋଷଣରେ ସଂପୃକ୍ତ ହେବନି, ତା'ର କିଛି ମାନେ ବି ନାହିଁ। ଏବଂ ଅସଲ କଥା ମଧ୍ୟ ହେଲା, ଏମାନେ ସହମତିରେ ଯୌନ ଶୋଷଣ ପାଇଁ ନୂଆ ନୂଆ ଲୋଭନୀୟ ଉପାୟ ଆବିଷ୍କାର କରିଥାଆନ୍ତି। ଦୁଃଖ ଯେ, ଏ କାମ କିଛି ଶିକ୍ଷକ କରନ୍ତି; କିଛି ଆତ୍ମୀୟମାନେ ମଧ୍ୟ କରିଥାଆନ୍ତି।

ଏ ଲେଖକ ଏ ଲେଖାର ପ୍ରାରମ୍ଭରେ ଆଶଙ୍କା କରିଥିଲା- ଝିଅମାନଙ୍କ ପାଇଁ ଆଉ ବୋଧେ ସୁରକ୍ଷିତ ଯାଗା ନାହିଁ। ବିଶ୍ୱାସନୀୟ ରକ୍ଷାକର୍ତ୍ତା ଏମାନଙ୍କର କେହି ନାହାନ୍ତି। ସେଇଥି ପାଇଁ ପ୍ରଶ୍ନ ଆସେ- ଚିହ୍ନା ଜଣା ବ୍ୟକ୍ତି ଭିତରେ ଯେ ଅସୁରୀୟ ପ୍ରବୃତ୍ତିଟିଏ ଲୁଚିଛି, ଏକଥା ନାବାଳିକା ଝିଅଟିଏ ଜାଣିବ କିପରି? ପ୍ରକୃତରେ ଏ ପ୍ରଶ୍ନର ଉତ୍ତର ଏ ଲେଖକ ପାଖରେ ନାହିଁ। ଏ ପ୍ରଶ୍ନ ତେଣୁ ପାଠକଙ୍କ ପାଇଁ। ତେବେ ଏକଥା କୁହାଯାଇପାରେ - କେଉଁଟା ଭଲ ସଂପର୍କ ଏବଂ ମନ୍ଦ ସଂପର୍କ, ଏହା ଜାଣିବା ପାଇଁ ବଢ଼ିଲା ଝିଅକୁ ସେନ୍‌ସିଟାଇଜେସନ୍ କରିବା ଦରକାର। ସଂବେଦନଶୀଳ ଅନୁଭୂତି ସଂପନ୍ନ ସେ ହେବା ଉଚିତ୍। ଏବଂ ମା' ଏବଂ ଘରର ବୟସ୍କ ମହିଳାମାନେ ସତର୍କ ରହିଲେ, ଝିଅ ଶୋଷଣ କମିଯାଇପାରେ।



# ପିଲାଙ୍କୁ ମାରନ୍ତୁ ନାହିଁ

ନିଜ ପିଲାଙ୍କୁ ମାଡ଼ ମାରୁଥିବା ମା' ବାପାମାନେ ଏଣିକି ସାବଧାନ ହୋଇ ଯାଆନ୍ତୁ। କାରଣ ଏଇ କାମ ପାଇଁ ସେମାନଙ୍କୁ ଜେଲ ଯିବାକୁ ହୋଇପାରେ। ଭାରତୀୟ ଜୁଭେନାଇଲ ଜଷ୍ଟିସ୍ ଆଇନର ପରିବର୍ତ୍ତନ କରି ପିଲାଙ୍କୁ ମାଡ଼ମରା କାର୍ଯ୍ୟକୁ ଏକ ଧର୍ତ୍ତବ୍ୟ ଅପରାଧ ଭାବେ ଗ୍ରହଣ କରିବାକୁ କେନ୍ଦ୍ରର ମହିଳା ତଥା ଶିଶୁ ବିକାଶ ମନ୍ତ୍ରାଳୟ ଏବେ ଏକ ପ୍ରସ୍ତାବ ଆଣୁଛନ୍ତି।

ପାଠକେ ଜାଣନ୍ତି- ଏଇ କିଛି ଦିନ ତଳେ ନରୱେର ଅସଲୋରେ ଏକ ଭାରତୀୟ ଦମ୍ପତିଙ୍କୁ ନିଜ ପିଲାଙ୍କୁ ମାଡ଼ ଅଭିଯୋଗରେ ଜେଲ ଦଣ୍ଡ ମିଳିଲା। ଭାରତୀୟ ଦମ୍ପତିଙ୍କ ନାଁ ହେଉଛି ଚନ୍ଦ୍ରଶେଖର ଏବଂ ଅନୁପମା। ସାତବର୍ଷର ପୁଅର ନାଁ ସାଇ ଶ୍ରୀରାମ।

ସାଇ ଶ୍ରୀରାମ ବିଛଣାରେ ପରିସ୍ରା କରିଦିଏ। ଥରେ ସ୍କୁଲକୁ ଗଲାବେଳେ ସେ ସ୍କୁଲ ବସ୍‌ରେ ପରିସ୍ରା କରିଦେଲା। କର୍ତ୍ତୃପକ୍ଷ ପଚାରିବାରେ ସାଇ କହିଲା, ଏହା ତା'ର ନିୟମିତ କାର୍ଯ୍ୟ। ଘରେ ବେଡ୍‌ରେ ବି ସେ ପରିସ୍ରା କରିଥାଏ। ସେଥିପାଇଁ ବାପା ମା'ଙ୍କ ଠାରୁ ମାଡ଼ ଖାଏ। ବାପା ଧମକ ଦିଅନ୍ତି, ଏ କାମ ବନ୍ଦ ନକଲେ ସେ ତାକୁ ଭାରତରେ ଛାଡ଼ି ଦେଇ ଆସିବେ।

ସ୍କୁଲ ଶିକ୍ଷକଙ୍କ ନଜର ରହିଥିଲା ସାଇ ଉପରେ। ଥରେ ଗୋଡ଼ରେ ଘା' ଚିହ୍ନ ଦେଖି ଶିକ୍ଷକ ପଚାରିବାରେ ସାଇ କହିଲା - ଇଏ ଏକ ପୋଡ଼ା ଘା'ର ଚିହ୍ନ। ତତଲା ଚାମଚରେ ମା'ବାପା ତାକୁ ଚେଙ୍କ ଦେଇଛନ୍ତି। ଦେହରେ ମଧ୍ୟ ବେଲ୍ଟ ମାଡ଼ର ଚିହ୍ନ ଥିଲା।

ନିଜ ପିଲାଙ୍କୁ ବାଡ଼େଇବା, ଚାପୁଡ଼ା ମରିବା ଏବଂ ବାଡ଼େଇ କ୍ଷତ ସୃଷ୍ଟି କରିବା, ନରୱେରେ ଏକ ସଙ୍ଗୀନ ଅପରାଧ। ଏଇ ଅପରାଧ ପାଇଁ ଭାରତୀୟ ଦମ୍ପତି ଜେଲ ଦଣ୍ଡ ପାଇଲେ।

'ଅସଲୋ'ର ଘଟଣା ଭାରତ ବର୍ଷରେ ଏକ ବିତର୍କ ସୃଷ୍ଟି କରିଛି। ପ୍ରକୃତରେ ଇଏ ଆଇନଗତ ପ୍ରଶ୍ନ ନା ସଂସ୍କୃତିଗତ ସମସ୍ୟା- ଇଏ ଏବେ ପ୍ରଶ୍ନ। ଭାରତୀୟ ସଂସ୍କୃତି ଅନୁଯାୟୀ, ନିଜ ପିଲାଙ୍କୁ ଶୃଙ୍ଖଳିତ କରିବାକୁ ଯାଇ କିଛି ଆକଟ କରିବା ଅପରାଧ

ନୁହେଁ। ଘରର ମୂଲ୍ୟବୋଧ, ପାଠ ପଢ଼ା ପ୍ରତି ଆଗ୍ରହ ଏବଂ ଭଲ ନାଗରିକଟିଏ ହେବାକୁ ପ୍ରାଥମିକ ଶିକ୍ଷା ଦେବା ଅଭିଭାବକଙ୍କର କାମ। ପାଞ୍ଚବର୍ଷ ପର୍ଯ୍ୟନ୍ତ ସ୍ନେହ କରି ଆଉ ଦଶ ବର୍ଷ କଠୋର ଆକଟ କରିବା କଥା ଆମ ପୁରାତନ ଶାସ୍ତ୍ର କହେ। ନରୱେରେ ଆଇନ କିନ୍ତୁ ଭିନ୍ନ। ଏଠାର ରାଷ୍ଟ୍ର ଆଇନ ଘରେ ପିଲା ଏବଂ ଅଭିଭାବକ ସଂପର୍କକୁ ବି ନିୟନ୍ତ୍ରିତ କରେ। ଭାରତୀୟ ସଂସ୍କୃତିରେ ବଢ଼ିଥିବା ଚନ୍ଦ୍ରଶେଖର ଏବଂ ଅନୁପମା ନରୱେ ଆଇନକୁ ବୁଝିବାର ଥିଲା। ରୋମ୍‌ରେ ରହିବ, ରୋମ କଥା ଜାଣିବନି ? ଇଏ କି କଥା ?

ଛୋଟ ପିଲା ବିଛଣାରେ ପରିସ୍ରା କରିବା ଭାରତରେ ଏକ ସାଧାରଣ ଘଟଣା। ହଜାର ହଜାର ଛୋଟ ପିଲାଏ ଏଠି ନିଜ ପ୍ୟାଣ୍ଟ ଏବଂ ଶେଯରେ ପରିସ୍ରା କରିଥାଆନ୍ତି। ଝିଅଙ୍କ ଅପେକ୍ଷା ପୁଅ ପିଲାଙ୍କ କ୍ଷେତ୍ରରେ ଏ ଲକ୍ଷଣ ବେଶି। ଡ଼ାକ୍ତରମାନେ କହନ୍ତି- ବିଛଣାରେ ପରିସ୍ରା କରିବା ଏକ ରୋଗର ଲକ୍ଷଣ। ଡ଼ାକ୍ତରୀ ଭାଷାରେ ଏ ରୋଗର ନାଁ ହେଉଛି- 'ଆଟେନସନ ଡ଼େଫିସିଟ୍ ହାଇପର ଆକ୍ଟିଭିଟି ଡ଼ିସ୍‌ଅର୍ଡ଼ର' (ଏ.ଡ଼ି.ଏଚ୍.ଡ଼ି)। ଏ ରୋଗରେ ପିଲାମାନେ ବିଛଣାରେ ପରିସ୍ରା କରନ୍ତି। ଚିଡ଼ିଚିଡ଼ା ଓ ଜିଦ୍‌ଖୋର ହୁଅନ୍ତି। ନିଜ ଖେଳନା ଏବଂ ଘରର ଆସବାବ ପତ୍ର ଭାଙ୍ଗିଥାଆନ୍ତି। ମାଡ଼ ଖାଇଲେ ଏଇ ମାଡ଼କୁ ସେ ଅଳ୍ପ ସମୟରେ ଭୁଲିଯାଆନ୍ତି। ଏଇ ପିଲାଙ୍କୁ ଆମେ 'ନଟି' ଏବଂ ଦୁଷ୍ଟ ବୋଲି କହୁ। ଦେଖାଯାଏ, ଏଇ ଅସ୍ୱାଭାବିକତା ଅନେକଙ୍କ ଠାରେ ବଡ଼ ହେଲା ପର୍ଯ୍ୟନ୍ତ ବି ଲାଗିରହିଥାଏ। ସେତେବେଳେ ଏହାକୁ ସିଣ୍ଡ୍ରୋମ୍ କୁହାଯାଏ। ଏହି ସିଣ୍ଡ୍ରୋମର ଚିକିତ୍ସା ରହିଛି।

ସାଇ ଶ୍ରୀରାମକୁ ଏଇ ଏ.ଡ଼ି.ଏଚ୍.ଡ଼ି ରୋଗରେ ପୀଡ଼ିତ କହି ଡ଼ାକ୍ତରମାନେ ହାଇଦ୍ରାବାଦରେ ଏବେ ଚିକିତ୍ସା କରୁଛନ୍ତି। ନରୱେର ଅସଲୋ ପୋଲିସ କିନ୍ତୁ ସଫେଇ ଦିଏ- ସାଇ ଯଦି ରୋଗରେ ପୀଡ଼ିତ ଅଛି, ସେ ଅଲଗା କଥା। ଭାରତୀୟ ଦମ୍ପତି ସାଇକୁ ମାରିଲେ କାହିଁକି ?

ବାପା ମା'ମାନେ ନିଜ ପିଲାଙ୍କୁ ମାଡ଼ ମାରିବା ଉପରେ ଗୁରୁତ୍ୱ ଦିଆଯାଏ ନାହିଁ। ରାସ୍ତା ଉପରେ ପିଲାକୁ ପିଟା ଯାଉଥିଲେ ବି ଅନେକ ତାକୁ ଚୁପ୍‌ଚାପ୍ ଦେଖନ୍ତି। କେତେବେଳେ ପ୍ରତିବାଦ କଲେ ଉତ୍ତର ଆସେ, "ମୋ ପିଲାକୁ ମୁଁ ମାରୁଛି ତୁମେ କିଏ ? ଇଏ ମୋ ଘର କଥା। ଆକଟ କରିବା ମୋ କାମ"। ଏଇ ଘଟଣା ବି ଅନେକ ସମୟରେ ପଡ଼ୋଶୀ ପଡ଼ୋଶୀ ଭିତରେ ତିକ୍ତତା ଆଣେ।

ଭାରତର ଶିଶୁ ମନ୍ତ୍ରାଳୟ ପରାମର୍ଶ ଯଦି ଆଇନ ହୋଇଯାଏ, ପିଲାଙ୍କୁ ମାଡ଼ ମାରିବା ଅପରାଧରେ ବାପା ମା'ମାନେ ଜେଲ ଯିବେ। ପୀଡ଼ିତ ପିଲାଙ୍କୁ ଶିଶୁ ପାଳନ କେନ୍ଦ୍ର ବା ଫୋଷ୍ଟର ହୋମ୍‌ରେ ରଖାଯିବ। ଭବିଷ୍ୟତର ନାଗରିକଙ୍କ ପ୍ରତି ଏହା ଏକ ଜନମଙ୍ଗଳ ରାଷ୍ଟ୍ରର କର୍ତ୍ତବ୍ୟ ବୋଲି ଏ ପ୍ରସ୍ତାବିତ ଆଇନର ସପକ୍ଷବାଦୀମାନେ ମତ

ଦିଅନ୍ତି ।

କିନ୍ତୁ ସପକ୍ଷବାଦୀ ବିଦ୍ୱାନମାନେ ଭାରତର ସାମାଜିକ ତଥା ସାଂସ୍କୃତିକ ଅବସ୍ଥାକୁ ଲକ୍ଷରେ ରଖିଛନ୍ତି କି ନା, ଏ ପ୍ରଶ୍ନ ଆସେ। କାରଣ ଭାରତବର୍ଷ ନରଓ୍ୱେ ନୁହେଁ। ଇଏ ଶହେ କୋଡ଼ିଏ କୋଟି ଲୋକଙ୍କର ଦେଶ। ପ୍ରାୟ ଅଶି ଭାଗ ଲୋକ ଏଠାରେ ଗାଁରେ ରହନ୍ତି। ପ୍ରତି ସହରରେ ବସ୍ତି ଅଞ୍ଚଳରେ ରହୁଥିବା ଲୋକଙ୍କ ସଂଖ୍ୟା ସହର ଲୋକସଂଖ୍ୟାର ପ୍ରାୟ ଏକ ତୃତୀୟାଂଶ ହେଲାଣି। ନିଜ ପିଲାକୁ ମାଡ଼ ଅଭିଯୋଗରେ କେତେ ବାପା ମା'ଙ୍କୁ ଏଠି ଜେଲ୍ ପଠାଇ ହେବ ? କେତେ ପିଲାଙ୍କୁ ଫୋଷ୍ଟର ହୋମ୍‌କୁ ଛଡ଼ାଯିବ ? ଯଦି ଏ ପ୍ରଶ୍ନ ଆସେ, ଏହା କେବେ ଅସ୍ୱାଭାବିକ ପ୍ରଶ୍ନ ହେବ ନାହିଁ।

ଦୁର୍ଭାଗ୍ୟର କଥା ହେଲା, ଭାରତରେ ଅଧିକାଂଶ ଶିକ୍ଷିତ ବାପା ମା' ନିଜ ପିଲାଙ୍କୁ କିପରି ଉପଯୁକ୍ତ ଲାଳନ ପାଳନ କରିବାକୁ ହେବ, ଜାଣନ୍ତି ନାହିଁ। ସଠିକ୍ ପ୍ୟାରେଣ୍ଟିଙ୍ଗ୍ କ'ଣ ଏମାନେ ଶିଖିନାହାନ୍ତି। ପିଲାଙ୍କୁ ଟାଗିଦ୍ କରିବା ପ୍ରକ୍ରିୟାରେ ମାଡ଼ ଦେବାକୁ ଏମାନେ ଏକ ପ୍ରଭାବଶାଳୀ ଉପାୟ ଭାବେ ନେଇଥାଆନ୍ତି। ଅବଶ୍ୟ ମାଡ଼ ଖାଇଲେ ପିଲାମାନେ ଡ଼ରି ଯାଆନ୍ତି। ପିଲାଙ୍କ ଏ ଡ଼ର ଦେଖି ଅଭିଭାବକର ଧାରଣା ହୁଏ- ପିଲାଙ୍କୁ ମାଡ଼ ମାରିବା ଭଲ ମେଥଡ୍। ଇଏ ଯେ ଏକ ହିଂସା, ଅଭିଭାବକମାନେ ଭୁଲି ଯାଇଥାଆନ୍ତି। ଅନେକ ସମୟରେ ତ ମାଡ଼ ଖାଉଥିବା ପିଲା ମଧ୍ୟ ବିଦ୍ରୋହ କରେ।

ସୁତରାଂ ଶିକ୍ଷିତ ଯୁବକ ଯୁବତୀଙ୍କ ପାଇଁ ପିଲା ଲାଳନ ପାଳନର ଶିକ୍ଷା ନିମନ୍ତେ ଏକ କାର୍ଯ୍ୟକ୍ରମ ହେବା ଉଚିତ୍। ପ୍ୟାରେଣ୍ଟିଙ୍ଗ୍ ଉପରେ ପ୍ରଶିକ୍ଷଣ ଦରକାର। ନିଜକୁ ଅନ୍ୟ କିଏ ମାଡ଼ ଦେଲେ ଯେପରି ଅନୁଭବ ହୁଏ, ନିଜ ପିଲାଙ୍କୁ ମାଡ଼ ଦେଲେ ବି ତା'ର ସେଇ ପ୍ରତିକ୍ରିୟା ହୁଏ, ଏହା ତାଙ୍କୁ ଶିଖାଇବା ବାଞ୍ଛନୀୟ। ପିଲାଙ୍କ ଦୁଷ୍ଟାମୀର ନିୟନ୍ତ୍ରଣ ପାଇଁ ଅନେକ କାଉନସିଲର ବି ମିଳିଲେଣି।

ବାପା ମା'ମାନେ ତେଣୁ ପିଲାଙ୍କୁ ଘରେ ସମୟ ଦିଅନ୍ତୁ। ସମସ୍ୟା ନେଇ ଆଲୋଚନା କରନ୍ତୁ। ଘରୋଇ ନିଷ୍ପତ୍ତିରେ ପିଲାଙ୍କୁ ସେମାନଙ୍କ ମତ କ'ଣ ପଚରାଯାଉ। ତେବେ ମାଡ଼ ମାରିବା ଆଉ ଦରକାର ହେବନି। କାରଣ ପ୍ରତ୍ୟେକ ଶିଶୁ ଭିତରେ କଅଁଳ ବିବେକଟିଏ ବି ଥାଏ।



# ଦାମିନୀ ପ୍ରତି ଶ୍ରଦ୍ଧାଞ୍ଜଳି

ଦିଲ୍ଲୀରେ ଗଣବଳାତ୍କାର ପରେ ଯେଉଁ ଝିଅଟି ଡ଼ାକ୍ତରଖାନାରେ ବଞ୍ôବା ପାଇଁ ସଂଘର୍ଷ କରି ମୃତ୍ୟୁବରଣ କଲା, ସେ ହେଉଛି ଦାମିନୀ। ଦାମିନୀ ଏକ ଛଦ୍ମ ନାମ। ଡ଼ାକ୍ତରୀ ପଢୁଥିଲା ଦାମିନୀ। ଆଖିରେ ଆଖିଏ ସ୍ୱପ୍ନ ଥିଲା ତା'ର। ଗତ ଡ଼ିସେମ୍ବରର ଏକ ଶୀତୁଆ ରାତିରେ ଘରକୁ ଫେରୁଥିବା ବେଳେ ଚଳନ୍ତା ବସ୍‌ରେ ଦୃର୍ବୃତ୍ତମାନେ ତାକୁ ଧର୍ଷଣ କଲେ। ଧର୍ଷଣ ଏତେ ଭୟଙ୍କର ଥିଲା ଯେ ବଞ୍ଚିବାର ଆଶା କ୍ଷୀଣ ଥିଲା; ଯଦିଓ ଦାମିନୀ ବଞ୍ଚିବାକୁ ଚାହୁଁଥିଲା।

ଦାମିନୀର ଅକାଳ ବିୟୋଗରେ ଭାରତସାରା ଦୁଃଖ ଆସିଛି। କ୍ରୋଧ ମଧ୍ୟ ଆସିଛି। ଦୁଃଖ ଆସିଛି ଏଇଥିପାଇଁ ଯେ, ଅକ୍ଲାନ୍ତ ଡ଼ାକ୍ତରୀ ଚିକିତ୍ସା ସତ୍ତ୍ୱେ ଦାମିନୀକୁ ବଞ୍ôଇ ହେଲାନି। କ୍ରୋଧ ଆସିଛି ଏଇଥିପାଇଁ ଯେ, ଦାମିନୀକୁ ଯେପରି ଧର୍ଷଣ କରାଯାଇଛି, ଏହା କୌଣସି ମଣିଷଟି ମଣିଷ ପ୍ରତି କରିପାରେନା। ଏହା କେବଳ ପଶୁ ଠାରୁ ହିଁ ଆଶା କରାଯାଇପାରେ। ଦାମିନୀ ମୃତ୍ୟୁରେ ସାରା ଭାରତବର୍ଷ ସ୍ତବ୍ଧ। ଯୁବ, ବୃଦ୍ଧ, ମହିଳା, ପୁରୁଷ ସମସ୍ତଙ୍କୁ ଏହା ଆନ୍ଦୋଳିତ କରିଛି। କିନ୍ତୁ ଏଇମାତ୍ର ସ୍ତବ୍ଧ ହୋଇଯାଇଥିବା ଭାରତବର୍ଷର ଏଇ ପରିସ୍ଥିତି ଯେ ଆମର ମାନସିକତା ଏବଂ ଦୃଷ୍ଟିଭଙ୍ଗୀକୁ କେତେ ପ୍ରଭାବିତ କରିବ, ଇଏ ଏବେ ପ୍ରଶ୍ନ।

ସ୍ୱାଧୀନତା ପରେ ଜାତିର ଜନକ ବାପୁଜୀଙ୍କୁ ଯେତେବେଳେ ପ୍ରଶ୍ନ କରାଯାଇଥିଲା, ସୁରାଜର ଅର୍ଥ କ'ଣ? ବାପୁଜୀଙ୍କ ଉତ୍ତର ଥିଲା, ସୁରାଜ ବା ସୁଶାସନର ସ୍ୱରୂପ ହେଲା ଯେଉଁ ଦିନ ରାତି ଅଧରେ ଝିଅଟିଏ ନିର୍ଭୟରେ ରାସ୍ତାରେ ଯାଇପାରୁଥିବ। ବାସ୍ତବରେ ସୁରାଜ ନେଇ ଗାନ୍ଧିଜୀଙ୍କର ଏଇ ସଜ୍ଞା କିପରି ଏବେ ଅର୍ଥହୀନ ଲାଗୁଛି। ସ୍ୱାଧୀନତାର ପଞ୍ଚଷଠୀ ବର୍ଷ ପରେ ନାରୀମାନେ ସୁରକ୍ଷିତ ନୁହଁନ୍ତି ବୋଲି ଧାରଣାଟିଏ ସୃଷ୍ଟି ହୋଇଗଲାଣି।

ଏଇ ସ୍ତମ୍ଭରେ ଗତ ନିବନ୍ଧରେ ଏ ଲେଖକ ଲେଖିଥିଲା- ଝିଅ ପାଇଁ ଏବେ ଭାରତୀୟ ସମାଜରେ ଯାଗା ନାହିଁ। ଘର, ବାହାର, ଦପ୍ତର, ସବୁଠି ତା' ପାଇଁ ଅସୁରକ୍ଷାର ଚିହ୍ନ। ଡ଼ାକ୍ତରଖାନାର ଡ଼ାଇଗ୍ନୋଷ୍ଟିକ୍ କେନ୍ଦ୍ରରେ କନ୍ୟାଭ୍ରୂଣକୁ ଚିହ୍ନଟ କରି ହତ୍ୟା କରିବାର ପ୍ରୟାସ। ବୃଦ୍ଧ ସ୍ୱାମୀର ମୃତ୍ୟୁ ପରେ ଜଳନ୍ତା ଯୁଇରେ ସ୍ତ୍ରୀକୁ ସତୀ ହେବା ଆଳରେ ପୋଡ଼ି ମାରିଦେବାର ଭୟ। ଯୌତୁକ ପାଇଁ ନବବଧୂକୁ ହତ୍ୟା। ଏ ସବୁ ସଂପ୍ରତି ଭାରତୀୟ ସମାଜରେ ଘଟୁଛି ଏବଂ ଏସବୁ ଦେଖି ଏ ସମାଜ ଉଦାସୀନ ରହୁଛି।

ଦିଲ୍ଲୀ ଗଣବଳତ୍କାର ନେଇ ଦେଶସାରା ପ୍ରତିବାଦ ହେଲା ବେଳେ ଦାବୀ ଉଠିଲା - ବଳାତ୍କାର ପାଇଁ ଫାସୀ ଦଣ୍ଡର ବ୍ୟବସ୍ଥା ହେଉ। ବଳତ୍କାରୀକୁ ରାସାୟନିକ ଭାବେ ନଂପୁସକ କରିଦିଆଯାଉ। ଏଥିପାଇଁ ଭାରତରେ ଶକ୍ତ ଆଇନଟିଏ ହେଉ।

ପୁରୁଷ ପ୍ରଧାନ ଭାରତୀୟ ସମାଜର ଦୃଷ୍ଟିଭଙ୍ଗୀକୁ ନେଇ ମଧ ପ୍ରଶ୍ନ ଉଠିଲା। ଲିଙ୍ଗ ଅସମାନତାକୁ ବି ବିରୋଧ କରାଗଲା। ଯଦିଓ ଏଠି ଜନସଂଖ୍ୟାର ପଚାଶ ପ୍ରତିଶତ ହେଉଛନ୍ତି ମହିଳା, ଏଇ ମହିଳା ଏବେ ଦ୍ୱିତୀୟ ଶ୍ରେଣୀର ନାଗରିକ ବୋଲି କ୍ଷୋଭ ପ୍ରକାଶ ପାଇଲା।

ଏହା ସତ ଯେ, ମହିଳାମାନଙ୍କ ପ୍ରତି ଏଠି ହିଂସା ଏବଂ ନିର୍ଯ୍ୟାତନା ବଢୁଛି। ନ୍ୟାୟ ପ୍ରଦାନରେ ବିଳମ୍ବ ହେଉଛି। ମହିଳା ଅଧିକାର ପ୍ରତି ପ୍ରଶ୍ନବାଚୀ ସୃଷ୍ଟି ହେଉଛି। ଏକ ପରିସଂଖ୍ୟାନ ଏଠି କହେ- ପ୍ରତି ବାଇଶି ମିନିଟ୍‌ରେ ଭାରତବର୍ଷରେ ଜଣେ ମହିଳା ଧର୍ଷିତା ହୁଏ। ଧର୍ଷଣ କରିଥିବା ପଞ୍ଚାନବେ ପ୍ରତିଶତ ପୁରୁଷ ଧର୍ଷିତାର ଚିହ୍ନାଜଣା ଲୋକ। ଅଧିକାଂଶ ନିକଟତର ଆତ୍ମୀୟ। ଏବଂ ଅସଲ କଥା ହେଲା, ପଞ୍ଚସ୍ତରୀ ଭାଗ ଧର୍ଷଣ ଅଭିଯୁକ୍ତ ଆସାମୀ ନ୍ୟାୟାଳୟରେ ନିର୍ଦ୍ଦୋଶ ହୋଇ ଖସି ଯାଆନ୍ତି।

ଏବେ ପ୍ରଶ୍ନ ଆସୁଛି, ଭାରତରେ କ୍ରମବର୍ଦ୍ଧିଷ୍ଣୁ ନାରୀ ନିର୍ଯ୍ୟାତନା ପାଇଁ ଏଠି ଦୁର୍ବଳ ଆଇନ ଦାୟୀ ନା ମାନସିକତା ଦାୟୀ ? ଏହା ଆଇନ ଅଭାବର ପ୍ରଶ୍ନ ନା ସାମାଜିକ ବ୍ୟବସ୍ଥାର କଥା ?

ଭାରତରେ ନାରୀ ସୁରକ୍ଷା ତଥା ଅଧିକାର ନେଇ ପ୍ରାୟ ପଚାଶରୁ ଉର୍ଦ୍ଧ୍ୱ ଆଇନ ରହିଛି। ନାରୀ ଜୀବନର ଏଠି ସେମିତି କିଛି ଇଲାକା ନାହିଁ ଯେଉଁଥିପାଇଁ ଆଇନ ରହିନାହିଁ। ବିବାହ ବିଚ୍ଛେଦ, ପୋଷ୍ୟପୁତ୍ର, ଭରଣ ପୋଷଣ, ସଂପତ୍ତି ପ୍ରତି ଅଧିକାର, ଶିଶୁଯତ୍ନ, ଘରୋଇ ହିଂସା, ଅଭିଭାବକୀୟ ଦାୟିତ୍ୱ, ସମାନ ମଜୁରୀ, ସତୀପ୍ରଥା, ଭ୍ରୁଣ ନିରୁପଣ, ଗର୍ଭପାତ ଏବଂ ପ୍ରସୂତି କଳୀନ ସୁବିଧା ଏସବୁ ପାଇଁ ଭାରତବର୍ଷରେ ଆଇନମାନ ରହିଛି। ଭାରତୀୟ ପିଙ୍ଗଲ କୋର୍ଡ୍, କ୍ରିମିନାଲ ପ୍ରୋସେଡୁୟର କୋର୍ଡ୍, ସାକ୍ଷ୍ୟ ପ୍ରଦାନ ପାଇଁ ଭାରତୀୟ ଏଭିଡ଼େନ୍ସ ଆଇନ ଏସବୁ ବି ଏଠି ଅଛି। ତଥାପି, ନ୍ୟାୟ ଅଧିକାର ଏବଂ ସୁରକ୍ଷା ନେଇ ଭାରତରେ ମହିଳା ଆଇନ ନାହିଁ ବୋଲି ଅଭିଯୋଗ ଆସୁଛି। ଦୃଢ଼ ଆଇନ ପାଇଁ ଦାବୀ ଆସୁଛି।

ଏ ଲେଖକ ବି ବିଚାର କରେ- ଧର୍ଷଣ ଏବଂ ନିର୍ଯ୍ୟାତନା ପାଇଁ ଶକ୍ତ ଆଇନ ହେବା ଉଚିତ୍। ଧର୍ଷଣକାରୀକୁ କଠୋର ଦଣ୍ଡ ଦେବାର ବ୍ୟବସ୍ଥା ହେବା ଦରକାର। କିନ୍ତୁ ଏକଥା ବି ଏ ଲେଖକ କହିବାକୁ ଚାହେଁ, ଆଇନର ପ୍ରସ୍ତୁତି ଏବଂ ନ୍ୟାୟାଳୟରେ ଆଇନର ତର୍ଜମା କୌଣସି ଆବେଗର କଥା ନୁହେଁ। ଏଠି ଭାବ ପ୍ରବଣତା ନଥାଏ। ଧର୍ଷଣକାରୀ ପାଇଁ ମୃତ୍ୟୁଦଣ୍ଡ ବା ରାସାୟନିକ କ୍ଲିବତ୍ୱ ଦଣ୍ଡ କଥା ଉଠିଲା ବେଳେ ଏହାର ପୁଙ୍ଖାନୁପୁଙ୍ଖ ବିଚାର ହେବା ଉଚିତ୍। ଏହାର ସୁଦୁର ପ୍ରସାରୀ ପ୍ରଭାବ ନେଇ ଆଲୋଚନା ହେବା ଦରକାର।

ଏକଥା ସ୍ପଷ୍ଟ ଯେ, ନାରୀ ନିର୍ଯ୍ୟାତନା, ହିଂସା ତଥା ଅଧିକାର ହାସଲର ଅଭାବ ନେଇ ଭାରତରେ ଦୁଇଟି ସମସ୍ୟା ରହିଛି। ପ୍ରଥମଟି ହେଉଛି ବର୍ତ୍ତମାନର ଆଇନକୁ କାର୍ଯ୍ୟକାରୀ କରିବାର ସମସ୍ୟା ଏବଂ ଦ୍ୱିତୀୟଟି ହେଉଛି ନାରୀମାନଙ୍କ ପ୍ରତି ସାମାଜିକ ଦୃଷ୍ଟିଭଙ୍ଗୀର ସମସ୍ୟା।

ଅନେକ ଆଇନ ଥିଲେ ବି ଏହା ଠିକ୍ ସମୟରେ କାର୍ଯ୍ୟକାରୀ ହେଉନାହିଁ। ଏଥିପାଇଁ ଆବଶ୍ୟକୀୟ ନ୍ୟାୟାଳୟ ନାହିଁ, ବିଚାରପତି ନାହାନ୍ତି ଏବଂ ତଦନ୍ତକାରୀ ଅଫିସରଙ୍କର ଅଭାବ ରହିଛି। ଏ ସବୁର ଅଭାବ ଭିତରେ ନାରୀ ସମସ୍ୟା ନେଇ ଅନେକ ଆଇନ ବହି ଥାକ ଭିତରେ ପଡ଼ି ରହି ନୀରବରେ ଉପହାସ କରି କହୁଛି- ଦାମିନୀମାନଙ୍କ ପାଇଁ ଏଠି ସୁରକ୍ଷାର ସ୍ଥାନ ନାହିଁ।

ଏବଂ ସବୁଠାରୁ ବଡ଼କଥା ହେଲା, ଭାରତୀୟ ସମାଜର ଏ ପୁରୁଷ ପ୍ରଧାନ୍ୟ ମାନସିକତା ବଦଳୁ ନାହିଁ। ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ହେଉନାହିଁ। ଏ ଦୃଷ୍ଟିଭଙ୍ଗୀ ମୁଁ, ଆପଣ, ଆମ ସମସ୍ତଙ୍କ ଭିତରେ କିଛି ମାତ୍ରାରେ ରହିଛି। ଗଣମାଧ୍ୟମ, ବିଚାରପତି, ତଦନ୍ତକାରୀ ଅଫିସର ଏବଂ ଅଧିବକ୍ତାଙ୍କ ପାଖରେ ଏ ଦୃଷ୍ଟିକୋଣ ରହିଛି। ମହିଳାଟି ପ୍ରତି ହିଂସା ବାସ୍ତବରେ ଭ୍ରୁଣ ନିରୁପଣରୁ ହିଁ ଏଠି ଆରମ୍ଭ ହୁଏ। ସୁତରାଂ ଆଇନ ଏଠି ଯେତିକି ଦୁର୍ବଳ, ଆମ ମାନସିକତା ବି ସେତିକି ଦୁର୍ବଳ।

ଅନ୍ତତଃ ଗୋଟିଏ କଥା ଏଠି ଶେଷରେ କହିହେବ- ନାରୀ ନିର୍ଯ୍ୟାତନା ତଥା ଧର୍ଷଣ କେଶ୍‌ର ବିଚାର ପାଇଁ ଫାଷ୍ଟଟ୍ରାକ୍ କୋର୍ଟ କରି ଏକ ନିର୍ଦ୍ଦିଷ୍ଟ ସମୟ ଭିତରେ ମକଦ୍ଦମାର ବିଚାର କରାଯାଇପାରେ।

ଏହାହିଁ ହେବ ଦାମିନୀ ପ୍ରତି ଶ୍ରଦ୍ଧାଞ୍ଜଳୀ।



# ଲିଭ୍-ଇନ୍‌ର ବିପଦ

ସହରୀ ଝିଅମାନଙ୍କର ଆତ୍ମହତ୍ୟାର କାରଣ ନେଇ ଏକ ସର୍ଭେକ୍ଷଣର ରିପୋର୍ଟ ଏ ଲେଖକ ଏବେ ଦେଖୁଥିଲା। ଦିଲ୍ଲୀ ସହରରେ ଥିବା ଏକ ପୋଲିସ ଥାନାର ଫ୍ୟାମିଲି କାଉନସିଲ କେନ୍ଦ୍ର ଉପରେ ଏ ସର୍ଭେ ହୋଇଥିଲା। ସର୍ଭେର ରିପୋର୍ଟ ହେଲା- ସହରୀ ଝିଅମାନଙ୍କର ବେଶି ଆତ୍ମହତ୍ୟାର କାରଣ ହେଉଛି ଲିଭ-ଇନ୍ ସଂପର୍କ। ଯେତେବେଳେ ଏ ସଂପର୍କ ଭାଙ୍ଗିଯାଉଛି ଏବଂ ପୁଅଟି ବିଶ୍ୱାସ ଘାତକତା କରି ରହିଯାଉଛି, ଝିଅଟି ଅବସାଦ ଗ୍ରସ୍ତ ହେଉଛି। ଏବଂ ମାନସିକ ସନ୍ତୁଳନ ହରାଇ ସେ ଆତ୍ମହତ୍ୟା କରୁଛି।

ସର୍ଭେକ୍ଷଣର ରିପୋର୍ଟ ଏକଥା ବି କୁହେ- ପ୍ରେମ ହେଉଛି ଜୀବନର ଏକ ଶକ୍ତିଶାଳୀ ଆବେଗ; ଭାବପ୍ରବଣତା। ଏବଂ ଯେହେତୁ ଝିଅମାନେ ସ୍ୱାଭାବିକ ଭାବେ ଖୁବ୍ ଭାବପ୍ରବଣ, ସେମାନେ ବିଫଳ ଲିଭ୍-ଇନ୍ ସଂପର୍କକୁ ସହ୍ୟ କରିନପାରି ଆତ୍ମହତ୍ୟା ପରି ଚରମ ପଦକ୍ଷେପ ନେଉଛନ୍ତି। ଏହା ସତ ଯେ, ଲିଭ୍-ଇନ୍ ବିବାହ ପରି ଲାଗେ। ଏହା କିନ୍ତୁ ବିବାହ ନୁହେଁ। ଝିଅମାନେ ଲିଭ୍-ଇନ୍ ସଂପର୍କର ପରିଣତି ପ୍ରତି ସଚେତନ ନହେବା ବେଶ୍ ଦୁର୍ଭାଗ୍ୟଜନକ ବୋଲି ଫ୍ୟାମିଲି କାଉନସିଲ କେନ୍ଦ୍ରର କର୍ତ୍ତୃପକ୍ଷମାନେ ଯୁକ୍ତି ଦେବା କଥା ରିପୋର୍ଟରେ ରହିଛି।

ଭାରତର ମାନ୍ୟବର ସୁପ୍ରିମକୋର୍ଟ ଏବେ ରାୟ ଦେଇ କହିଛନ୍ତି- ଲିଭ୍-ଇନ୍‌ରେ ସେମିତି କିଛି ଅସ୍ୱାଭାବିକତା ନାହିଁ। ଏହା ଆଇନତଃ ସିଦ୍ଧ। ଦୁଇଟି ସାବାଳକ ଯୁବକ ଯୁବତୀ ନିଜ ସହମତିରେ ଏକାଠି ରହିଲେ ଏହା ଧର୍ତ୍ତବ୍ୟ ଅପରାଧ ନୁହେଁ।

ମାନ୍ୟବର ସୁପ୍ରିମକୋର୍ଟଙ୍କର ଏପରି ରାୟରେ ଭାରତ ସାରା ଚର୍ଚ୍ଚା ହୋଇଥିଲା। ଲିଭ୍-ଇନ୍ ପରି ଏକ ବିଦେଶୀ ସଂସ୍କୃତିକୁ ମାନ୍ୟବର ଉଚ୍ଚତମ ନ୍ୟାୟାଳୟ କିପରି ସମର୍ଥନ ଏଠି କଲେ ଏଥିନେଇ ପ୍ରଶ୍ନ ମଧ୍ୟ ଆସିଥିଲା। ଏ ପ୍ରଶ୍ନ ଏଇଥିପାଇଁ ଆସିଲା ଯେ, ଲିଭ-ଇନ୍‌ର ଚାପରେ ବିବାହ ପରି ଏକ ପବିତ୍ର ଅନୁଷ୍ଠାନ ଭାରତରେ ଦିନେ ହୁଏତ ଭାଙ୍ଗିଯାଇପାରେ। ଲିଭ୍-ଇନ୍ ନେଇ ବିତର୍କ ଏବେ ବି ଚାଲିଛି। ବିବାହ ପରି କମିଟିମେଣ୍ଟ ତଥା ମୂଲ୍ୟବୋଧ ନଥିବା ପ୍ରାକ୍ ବିବାହିତ ଜୀବନରେ ଏକାଠି ରହିବାକୁ ଏ ଭାରତୀୟ ସମାଜ କେତେଦୂର ସହ୍ୟ କରିପାରିବ ଏହା ମଧ୍ୟ ଏକ ପ୍ରଶ୍ନବାଚୀ।

ଲିଭ୍-ଇନ୍‌ର ପ୍ରବକ୍ତାମାନେ କହନ୍ତି- ବିବାହ ପୂର୍ବରୁ ଲିଭ୍-ଇନ୍‌ରେ ରହିବା ଏକ

ପରୀକ୍ଷା। ପୁଅ ଝିଅ ପରସ୍ପରକୁ ବୁଝିବା ପାଇଁ ଏହା ଏକ ଭଲ ପ୍ରାକ୍ ବୈବାହିକ ଅଭ୍ୟାସ। ଆଧୁନିକ ଭାରତରେ ଅନେକ ବିବାହ ଅସଫଳ ହେବାର କାରଣ ହେଉଛି, ପରସ୍ପରକୁ ଭଲ ଭାବେ ନବୁଝି ବିବାହ କରିବାରେ ସେ ବିବାହ ସ୍ଥାୟୀ ହୋଇ ରହୁନାହିଁ। ବିବାହ ବିଚ୍ଛେଦ ହେଉଛି। ଛାଡ଼ପତ୍ରର ମାତ୍ରା ବଢୁଛି। ଛାଡ଼ପତ୍ର ନେଇ ଜୀବନ ବିତେଇବା ଅପେକ୍ଷା ଲିଭ୍-ଇନ୍ ସଂପର୍କ ଭଲ, ଯଦିଓ ବା ଏହା ବିଫଳ ହୋଇଯାଏ। ଇଏ ହେଉଛି ଲିଭ୍-ଇନ୍ ସପକ୍ଷବାଦୀଙ୍କ ଯୁକ୍ତି।

ବାସ୍ତବତା ହେଲା, ଭାରତୀୟ ସଂସ୍କୃତି କୌଣସି ପ୍ରାକ୍ ଯୌନ ସଂପର୍କକୁ ପସନ୍ଦ କରେ ନାହିଁ। ଏହା ଲିଭ୍-ଇନ୍ ବି ହୋଇପାରେ। ଏ ଦେଶରେ ବିବାହ ଏକ ପବିତ୍ର ବନ୍ଧନ। ଏବଂ ବିବାହ ପରେ ଏଠି ପ୍ରେମ ଆସେ। ସୃଷ୍ଟି ଆଉ ସଂସାର ପାଇଁ ବିବାହିତ ନାରୀ ପୁରୁଷର ଦୈହିକ ସଂପର୍କକୁ ପବିତ୍ର ମନ୍ତ୍ର ଉଚ୍ଚାରଣ କରି ଆତ୍ମୀୟଙ୍କ ଅନୁମୋଦନ କ୍ରମେ ଆରମ୍ଭ କରାଯାଏ। କିନ୍ତୁ ବିବାହ ପୂର୍ବରୁ ଲିଭ୍-ଇନ୍ ଆଳରେ ବିବାହକୁ ପରୀକ୍ଷା କରିବାର ପ୍ରୟାସ କେବେ ବି ଭାରତୀୟ ସଂସ୍କୃତି ନୁହେଁ।

ଏଇ ଅଳ୍ପଦିନ ତଳେ ଭାରତୀୟ ବିବାହ ଉପରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ନେତା ମୋହନ ଭାଗବତଙ୍କ ମନ୍ତବ୍ୟ ନେଇ ଏଠି ବେଶ୍ ଚର୍ଚ୍ଚା ହେଲା। ଏହା ଭାରତୀୟ ପୁରୁଷ ପ୍ରଧାନ ମାନସିକତାର ଏକ ସୂକ୍ଷ୍ମ ପ୍ରତିଫଳନ ବୋଲି ମୋହନଙ୍କୁ ସମାଲୋଚନା କରାଗଲା। ମୋହନ ଭାଗବତଙ୍କ ମନ୍ତବ୍ୟ ଥିଲା- ବିବାହ ଏକ ସାମାଜିକ ଚୁକ୍ତି। ଅନ୍ୟକଥାରେ କହିଲେ, ଏହା ଏକ ସୋସିଆଲ କଣ୍ଟ୍ରାକ୍ଟ। ଯେଉଁ ଚୁକ୍ତିର ଅର୍ଥ ହେଲା- ବିବାହ ପରେ ସ୍ତ୍ରୀ ଘରେ ରହିବ। ପିଲାଙ୍କ ଯତ୍ନ ନେବ। ଏବଂ ରୋଜଗାର ପାଇଁ ପୁରୁଷ ବାହାରକୁ ଯିବ।

ଅବଶ୍ୟ ମୋହନ ଭାଗବତଙ୍କ ଏହା ନିଜସ୍ୱ ତତ୍ତ୍ୱ ନୁହେଁ। ପ୍ରାକ୍ ସାମାଜିକ ଜୀବନରେ ପରିବାର ଗଠନ ପାଇଁ ଏକ ଅଲିଖିତ ସାମାଜିକ ଚୁକ୍ତି ହୋଇଥାଇ ପାରେ ବୋଲି ତତ୍ତ୍ୱବିତ୍‌ମାନେ କହନ୍ତି।

ଆଦ୍ୟ ପରିବାର ଗଠନ ବେଳର ଏକ କାହାଣୀଟିଏ ରହିଛି। ଏ କାହାଣୀ ହେଉଛି ସେ ସମୟର ଯେତେବେଳେ ଏଠି ପରିବାର ନଥିଲା, ବିବାହ ନଥିଲା, ସମାଜ ନଥିଲା, ଏବଂ ମଣିଷ ନିଃସଙ୍ଗ ଥିଲା। ଗରିବ ବି ଥିଲା। କାହାଣୀଟି ଠିକ୍ ଏମିତି ...

ଦିନେ କୌଣସି ଏକ ପୁରୁଷଟି ଅଜଣା ଏକ ସ୍ତ୍ରୀ ସହ ରାତ୍ରୀଯାପନ କରି ସକାଳୁ ଉଠି ଫେରିଯାଉଥିଲା। ପଛରୁ ସ୍ତ୍ରୀଟି ଡ଼ାକିଲା ଏବଂ କହିଲା- "ହେ ଶୁଣୁଛ, ସଂଧ୍ୟା ବେଳକୁ ତୁମେ ମୋ ଘରକୁ ଆସିଲେ ଭଲ ହୁଅନ୍ତା। ଆସିଲା ବେଳେ ମୋ ପାଇଁ ଯଦି କିଛି ଖାଦ୍ୟ ନେଇ ଆସନ୍ତ, ମୁଁ ଆଉ ଖାଦ୍ୟ ସଂଗ୍ରହ ପାଇଁ ବାହାରକୁ ଯାଆନ୍ତି ନାହିଁ"।

ପୁରୁଷ ପ୍ରଶ୍ନ କଲା- "ବାହାରକୁ ଖାଦ୍ୟ ପାଇଁ ଗଲେ ତୋର କ୍ଷତି କ'ଣ ?" ସ୍ତ୍ରୀଟି ଏଥର ଉତ୍ତର ଦେଲା- "କାରଣ ହେଉଛି, ଏବେ ମୋର ଛୋଟ ପିଲାଟିଏ ଅଛି। ସେ ଚାଲି ଶିଖିଲାଣି। କଥା କହିଲାଣି। ପୂର୍ବରୁ ମଧ୍ୟ ମୋର ଛୋଟ ପିଲାଟିଏ ଥିଲା। ଠିକ୍ ଯାରି ପରି ଚାଲୁଥିଲା। କଥା କହୁଥିଲା। ଦିନେ ସଞ୍ଜ ବେଳକୁ ମୁଁ ଆସି ଦେଖେତ ସେ ଘରେ ନାହିଁ। ଖୋଜିବାରେ ଦେଖିଲି, କିଛି ଦୂରରେ ତାକୁ ବାଘ ଖାଇଯାଇଛି। ସେଇଥିପାଇଁ ତୁମକୁ ମୁଁ ଅନୁରୋଧ କରୁଛି- ତୁମେ ଯଦି କିଛି ଖାଦ୍ୟ ନେଇ ସଂଧ୍ୟା ବେଳକୁ ମୋ ପାଖକୁ ଆସନ୍ତ, ମୁଁ ଏ ପିଲାଟିକୁ ଜଗି ରହନ୍ତି। ତାକୁ ଆଉ ବାଘ ଖାଇ ଯାଆନ୍ତା ନାହିଁ।" ସେଦିନ କ'ଣ ହେଲା କେଜାଣି, ପୁରୁଷ ଖାଦ୍ୟ ନେଇ ସେ ଘରକୁ ଆସିଥିଲା। ସେବେଠୁଁ ତେଣୁ ଆସୁଛି। ଇଏ ହେଉଛି ପରିବାର ଗଠନ ପାଇଁ ସେଦିନ ହୋଇଥିବା ପୁରୁଷ ଏବଂ ସ୍ତ୍ରୀ ଭିତରେ ଅଲିଖିତ ସାମାଜିକ ଚୁକ୍ତି।

କିନ୍ତୁ ପରିତାପର ବିଷୟ ଯେ, କିଛି ବ୍ୟକ୍ତି ଏ ଚୁକ୍ତିକୁ ଏକ ରକ୍ଷଣଶୀଳ ମାନସିକତା ନେଇ ଏକ ଅଲଘଂନୀୟ ଚୁକ୍ତି ବୋଲି ଭାବନ୍ତି। କର୍ମଜୀବୀ ମହିଳାଙ୍କ ପାଇଁ ଭୃକୁଞ୍ଚନ କରନ୍ତି।

ଅନେକ କର୍ମଜୀବୀ ମହିଳା ଯେ ଖୁବ୍ ଚମତ୍କାର ଗୃହିଣୀ, ଏ ଲେଖକର ଅନୁଭବରେ ଆସିଛି। ଦପ୍ତର, କଂପାନୀ, ସ୍କୁଲ, କଲେଜରେ କାମ କରୁଥିବା ମହିଳାଟି ସକାଳୁ ଉଠି ନିଜ ପିଲାଙ୍କ ପାଇଁ ଟିଫିନ୍ ପ୍ରସ୍ତୁତ କରେ। ପିଲାଙ୍କୁ ସ୍କୁଲ ଛାଡ଼େ। ଖବର କାଗଜ ପଢୁଥିବା ସ୍ୱାମୀକୁ ଚା ଦିଏ। ଶାଶୁ ଶ୍ୱଶୁରଙ୍କ କଥା ବୁଝେ। ଏବଂ ରୋଷେଇ ସାରି ନିଜେ ଖାଇଦେଇ ଏବଂ ଅନ୍ୟମାନଙ୍କ ପାଇଁ ଖାଦ୍ୟ ସାଇତି ରଖି ନିଜେ ତରତରରେ ନିଜ କର୍ମସ୍ଥଳକୁ ବାହାରିଯାଏ। ଏଇଥି ପାଇଁ ହଜାର ହଜାର ବର୍ଷର ସେ ସାମାଜିକ ଚୁକ୍ତିରେ ଆଜି ବିବର୍ତ୍ତନ ଆସିଛି। ନାରୀକୁ ଘର କୋଣରେ ବସାଇ ରଖି କେବଳ ପିଲା ପାଳିବାର ରୁଗ୍ଣ ଚୁକ୍ତି କଥା କହିବା ଏକ ବିଚ୍ୟୁତି ତେଣୁ ହୋଇପାରେ।

ସୁତରାଂ ଘର ବାନ୍ଧୁଥିବା ବିବାହକୁ ଆହୁରି ସୁଦୃଢ଼ ଏବଂ ପବିତ୍ର କରାଯାଉ। ଲିଭ୍-ଇନ୍ ତ ବିବାହ ଅନୁଷ୍ଠାନକୁ ଭାଙ୍ଗି ଦେବାର ଏକ ମାଧ୍ୟମ। ଲିଭ୍-ଇନ୍‌ର ପ୍ରବକ୍ତାମାନେ ମାନନ୍ତୁ ବା ନମାନନ୍ତୁ, ଏହା ସତ।



# ଭୋକର ଭୂଗୋଳ

ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା ଏବେ ଓଡ଼ିଶାର ଭୋକିଲା ସଂଖ୍ୟାକୁ ନେଇ ବିବାଦ ଦେଖା ଦେଇଛି । ଏଥିରେ ଓଡ଼ିଶାର ଜଣେ କେନ୍ଦ୍ରମନ୍ତ୍ରୀ ଏବଂ ରାଜ୍ୟ ସରକାରଙ୍କର ଅନ୍ୟ ଜଣେ ବରିଷ୍ଠ ମନ୍ତ୍ରୀଙ୍କ ମଧ୍ୟରେ ଆରୋପ ଏବଂ ପ୍ରତିଆରୋପ ଚାଲିଛି ।

ଭୋକ ଏବଂ ଭୋକିଲାଙ୍କ ସଂପର୍କରେ ଭାରତର ସାମ୍ପଲ ସର୍ଭେ ରିପୋର୍ଟ ହେଲା- ଓଡ଼ିଶାରେ ଭୋକିଲାଙ୍କ ସଂଖ୍ୟା ବେଶି । ସବୁ ରାଜ୍ୟ ଭିତରେ ଏହା ଦ୍ୱିତୀୟ । ସାମ୍ପଲ ସର୍ଭେର ଏମିତି ପରିସଂଖ୍ୟାନକୁ ଦେଖି ଓଡ଼ିଶାର ଜଣେ ମନ୍ତ୍ରୀ ଅଭିଯୋଗ ଆଣିଲେଣି- ଏପରି ପରିସଂଖ୍ୟନ କେନ୍ଦ୍ର ସରକାର ଜାଣି ଜାଣି କରିଛନ୍ତି । ଏଥିରେ ଓଡ଼ିଶାରୁ କଂଗ୍ରେସରୁ ଯାଇଥିବା ଜଣେ କେନ୍ଦ୍ରମନ୍ତ୍ରୀ ସଂପୃକ୍ତ ଥାଇପାରନ୍ତି । କେନ୍ଦ୍ର ଅବହେଳାର ଇଏ ଏକ ନମୁନା । ଓଡ଼ିଶାକୁ ବଦନାମ କରିବାକୁ ଏହା ଏକ ପ୍ରୟାସ । ଅବଶ୍ୟ ଓଡ଼ିଶାରେ ଭୋକିଲା ଲୋକ ନାହାନ୍ତି ବୋଲି ଓଡ଼ିଶାର ରାଜ୍ୟ ସରକାରଙ୍କର ମନ୍ତ୍ରୀ ଏପର୍ଯ୍ୟନ୍ତ କହିନାହାନ୍ତି ।

ସ୍ପଷ୍ଟ କହିଲେ, ଭାରତର ରାଜନେତାମାନଙ୍କର ସଂପ୍ରତି ଗଣତାନ୍ତ୍ରିକ ଅନୁଷ୍ଠାନ ପ୍ରତି ଆଉ ସେତେ ସମ୍ମାନ ନାହିଁ । ଯେକୌଣସି ରିପୋର୍ଟ ଆସିଲେ ଏହାର ରାଜନୀତିକରଣ ହେଉଛି । ରିପୋଟକୁ ଗ୍ରହଣ କରି କାର୍ଯ୍ୟାନୁଷ୍ଠାନ କରିବାର ଚିନ୍ତା ଆଉ ଏମାନଙ୍କ ଭିତରେ ନାହିଁ । ଏଇ ଯେମିତି ଟୁ ଜି ଟେଲିଫୋନ ଆବଣ୍ଟନ ନେଇ ସି.ଏ.ଜି. ରିପୋର୍ଟ ଆସିଲା ପରେ କେନ୍ଦ୍ରରେ ସରକାରରେ ଥିବା କଂଗ୍ରେସ ଦଳ ସି.ଏ.ଜି.ଙ୍କ ବିରୁଦ୍ଧରେ ଅଭିଯୋଗ ଆଣି କହିଦେଲେ, ସି.ଏ.ଜି. ବିରୋଧୀ ଦଳର ହାତ ବାରିସୀ ହୋଇଛନ୍ତି । ତାଙ୍କର ରାଜନୈତିକ ଅଭିସନ୍ଧି ରହିଛି ।

ଭାରତର ପ୍ରେସ କାଉନସିଲ ଅଫ୍ ଇଣ୍ଡିଆର ଅଧ୍ୟକ୍ଷ ନ୍ୟାୟମୂର୍ତ୍ତି ମାର୍କଣ୍ଡେୟ କାଟଜୁଙ୍କ ଅବସ୍ଥା ମଧ୍ୟ ଏବେ ସି.ଏ.ଜି.ଙ୍କ ପରି । ରାଜ୍ୟ ମାନଙ୍କରେ ଗଣମାଧ୍ୟମର ସ୍ୱାଧୀନତା ଉପରେ ଏକ କମିଟି ରିପୋର୍ଟ ପାଇବା ପରେ ବିହାର ତଥା ଗୁଜୁରାଟ ଉପରେ କାଟଜୁଙ୍କର ଟିପ୍‌ଣୀ ଏକ ବିବାଦ ଆଣିଛି । ଭାରତୀୟ ଜନତା ପାର୍ଟି ଖୋଲା ଖୋଲି କହିଲେଣି, କାଟ୍‌ଜୁ ଏକ କଂଗ୍ରେସୀ ଲୋକ । ସେ ତାଙ୍କ ନିଯୁକ୍ତିଦାତା କଂଗ୍ରେସ ଦଳକୁ ସନ୍ତୁଷ୍ଟ କରିବାକୁ ଅଣକଂଗ୍ରସି ଶାସିତ ରାଜ୍ୟମାନଙ୍କ ବିରୁଦ୍ଧରେ ଏପରି ରିପୋର୍ଟ

ପ୍ରସ୍ତୁତ କରୁଛନ୍ତି। ପ୍ରେସ କାଉନସିଲର ରିପୋର୍ଟ ହେଲା- ବିହାର ଏବଂ ଗୁଜୁରାଟରେ ଏବେ ଏକ ପ୍ରକାର ଏକଛତ୍ରବାଦୀ ଶାସନ ଚାଲିଛି। ପ୍ରେସର ସ୍ୱାଧୀନତା ଏଠି ନାହିଁ। ଠିକ୍ ସେମିତି ଅନାହାର ଉପରେ ଭାରତର ସାମ୍ପଲ ସର୍ଭେ ରିପୋର୍ଟ ନେଇ ଓଡ଼ିଶାର ମନ୍ତ୍ରୀ କହନ୍ତି- ଏହା ଏକ ରାଜନୈତିକ ରିପୋର୍ଟ। ଏଥିରେ କେନ୍ଦ୍ରମନ୍ତ୍ରୀ ଅଛନ୍ତି।

କୌଣସି ସ୍ୱାଧୀନ ଅନୁଷ୍ଠାନର ରିପୋର୍ଟକୁ ରାଜନୀତି କରଣ କରିବାର କାରଣ ସ୍ପଷ୍ଟ। କାରଣ ହେଲା- ସରକାରୀ କର୍ଯ୍ୟକଳାପ ଉପରେ ପ୍ରସ୍ତୁତ ରିପୋର୍ଟ ଅନେକ ସମୟରେ ଶାସକ ଦଳର ବିରୁଦ୍ଧରେ ଯାଇଥାଏ। ବିରୋଧି ଦଳ ଏହାର ସୁଯୋଗ ନେଇ ସରକାରଙ୍କୁ ସମାଲୋଚନା କରନ୍ତି। କିନ୍ତୁ ଅସଲ କଥା ହେଲା ଭାରତରେ ଏବେ କିଏ ଆଉ ଅନୁଷ୍ଠାନିକ ବିରୋଧି ଦଳ ନାହାନ୍ତି। ସମସ୍ତେ ଶାସକ ଦଳ। କିଏ କେନ୍ଦ୍ରରେ ଶାସନ କରେ ତ, ଅନ୍ୟ କିଏ ରାଜ୍ୟରେ। ଏମାନେ ତେଣୁ କୌଣସି ରିପୋର୍ଟରେ ବାସ୍ତବତାକୁ ରାଜନୈତିକ ସ୍ୱାର୍ଥ ଦୃଷ୍ଟିରୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥାନ୍ତି।

ପ୍ରକୃତ କଥା ହେଲା, ଭାରତର ଗ୍ରାମାଞ୍ଚଳମାନଙ୍କରେ ଭୋକ ଏବଂ କୁପୋଷଣ ବର୍ତ୍ତମାନ ଏକ ଦୈନନ୍ଦିନ ବାସ୍ତବତା। ଉପାସରେ ଏଠି କିଏ ନାହାନ୍ତି ବୋଲି କହିବା ଏହା ଏକ ଆତ୍ମ ପ୍ରବଚନା ହୋଇପାରେ।

ବି.ପି.ଏଲ୍. କାର୍ଡ଼ଧାରୀମାନଙ୍କୁ ଏଠି ରିହାତି ଦରରେ ଚାଉଳ ମିଳୁଛି। ଦୁଇ ଟଙ୍କାରେ ଚାଉଳ ମିଳୁଥିଲା, ଏବେ କିନ୍ତୁ ଟଙ୍କାକୁ କେଜିଏ। ଭାରତର ଅନେକ ରାଜ୍ୟରେ ମଧ୍ୟ ଏଇ ରିହାତି ଦରରେ ଚାଉଳ ମିଳେ, ଏହା ସତ୍ତ୍ୱେ ଭୋକ କମିନାହିଁ। କୁପୋଷଣ ହ୍ରାସ ପାଇନାହିଁ। ପୁଷ୍ଟିସାର ପାଇଁ ଯେଉଁ ତେଲ ଓ ଡ଼ାଲି ଦରକାର ଥାଏ ଏହାକୁ କ୍ରୟ କରିବାକୁ ଲୋକଙ୍କ ପାଖରେ ଅର୍ଥ ନାହିଁ। ଗାଁ ମାନଙ୍କରେ ଅର୍ଦ୍ଧନଗ୍ନ ପିଲା ଏବଂ ଏଇ ପିଲାଙ୍କର ସରୁ ସରୁ ହାତଗୋଡ଼ ଏବଂ ବଢ଼ିଲା ପେଟ ଦେଖିଲେ ଭୋକ ତଥା କୁପୋଷଣର ଚିତ୍ରଟିଏ ସ୍ପଷ୍ଟ ବାରି ହୋଇଯାଏ।

ଭାରତର ଗ୍ରାମାଞ୍ଚଳରେ ଭୋକର ଚିତ୍ର ଦେଇ ପ୍ରକାଶ ପାଇଥିବା ଏକ ରିପୋର୍ଟ ସଂପ୍ରତି ଏ ଲେଖକ ଦେଖିଥିଲା। ନିଜ ପିଲାଙ୍କୁ ପୁଷ୍ଟିସାର ଖାଦ୍ୟ ଦେଇ ନପାରି ହତାଶରେ ଜଣେ ଦୁସ୍ଥ ମହିଳା କହୁଥିଲେ- ଯଦି ଛାତି ଭିତରୁ ନିଜ କଳିଜା ବାହାର କରି ହେଉ ଥାଆନ୍ତା, ତାହେଲେ ହୁଏତ ସେ ସେହି କଳିଜାକୁ ତାଙ୍କ ପିଲାଙ୍କୁ ଦେଇଥାଆନ୍ତେ। କଳିଜାରେ ସାର ବେଶି। ପଖାଳ ଭାତ, ବାଉଁଶ କରଡ଼ି ଏବଂ ମହୁଲି କସାରେ ପୁଷ୍ଟିସାର ନଥାଏ। ପିଲାଙ୍କୁ ସୁଆଦ ବି ଲାଗୁନାହିଁ।

ଆଜକୁ ପାଞ୍ଚ ଦଶନ୍ଧି ତଳେ ଏ ଲେଖକ ମଧ୍ୟ ନିଜ ଗାଁର ଅନେକ ଗରିବ ଏବଂ ଦଳିତଙ୍କ ଘରେ ଭୋକର ଚିତ୍ର ଦେଖିଥିଲା। ପଡ଼ିଶା ଘର ଭାତଗଳା ପେଜ ପାଇଁ ଏମାନେ

ଅପେକ୍ଷାରେ ରହୁଥିଲେ। ପେଜ, ଜାଉ, ଶାଗ ଖରଡ଼ା, ପଖାଳ ତୋରାଣି ଥିଲା ପିଲାଙ୍କର ଖାଦ୍ୟ। ସବୁଦିନ ଏ ଖାଦ୍ୟ ନପାଇ ମଧ୍ୟ ଲୋକେ ଉପାସରେ ରହୁଥିଲେ। ଆଜି ମଧ୍ୟ ଓଡ଼ିଶାର ଅନେକ ଆଦିବାସୀ ଅଞ୍ଚଳରେ ଆମ୍ବ କୋଇଲିର ଜାଉ, ବାଉଁଶ କରଡ଼ିର ଖାଦ୍ୟକୁ ପୋଷଣଯୁକ୍ତ ଖାଦ୍ୟ ଭାବେ ଗଣାଯାଏ। ପ୍ରକୃତରେ ଏହା ଅଭାବର ତାଡ଼ନା ନା ସ୍ୱାଦର ଏକ ପସନ୍ଦ, ଏହା ପ୍ରଶ୍ନ ଉଠେ।

ଭୋକିଲାଙ୍କ ରିପୋର୍ଟରେ କିଛି କେଶ୍ ଷ୍ଟଡ଼ି ଥିଲା। ଏ ଲେଖକ ସେଇ କେଶ୍ ଷ୍ଟଡ଼ିରୁ ଏଠାରେ କିଛି ଉଲ୍ଲେଖ କରିବାକୁ ଚାହେଁ। ଏଇ ଅଧ୍ୟୟନରେ କିଛି ବିଧବା ମହିଳା, ଭିନ୍ନକ୍ଷମ ବ୍ୟକ୍ତି ଏବଂ ସ୍ୱାମୀ ପରିତ୍ୟକ୍ତ ମହିଳାଙ୍କ ଦାରିଦ୍ର୍ୟ ଏବଂ ଭୋକ କଥା ବି ରହିଛି।

ଜଣେ ବିଧବା ମହିଳା କହୁଥିଲେ- ପଡ଼ିଶା ଘରର ପିଲାଙ୍କ ବିସ୍କୁଟ୍ ଓ ଚକ୍‌ଲେଟ୍ ଖିଆ ଦେଖିଲେ ତାଙ୍କ ପିଲା ଜିଦ୍ ଧରନ୍ତି। ସେ ତାକୁ ନିଜ ଦାରିଦ୍ର୍ୟ କଥା କହି ନିଜର ଅକ୍ଷମତା କଥା କହେ। ବେଶି ଅଝଟ ହେଲେ ରକ୍ତ ହୀନତାରେ ଝିମ୍ ଝିମ୍ ହେଉଥିବା ନିଜ ଡ଼ାହାଣ ହାତରେ ପିଲାଙ୍କୁ ଶାନ୍ତ କରିବାକୁ ଚପୁଡ଼ା ଦିଏ। ଏବଂ ଆସନ୍ତାକାଲି ଆଣିଦେବ ବୋଲି ପ୍ରତିଶ୍ରୁତି ଦିଏ- ଯଦିଓ ସେ ଜାଣିଥାଏ, ଏ ପ୍ରତିଶ୍ରୁତି କେବେ ପୁରଣ ହୋଇପାରିବନି।

ଭୋକର ଏପରି ଅସଂଖ୍ୟ ଭଙ୍ଗାଚିତ୍ର ଭାରତ ସାରା ରହିଛି। ଓଡ଼ିଶା ମଧ୍ୟ ବାଦ ଯାଇନି। କ୍ଷୁଧା ଏବଂ ଭୋକ ଏଠି କେବଳ ଏକ ଆର୍ଥିକ ପ୍ରସଙ୍ଗ ନୁହେଁ। ଏହା ମଧ୍ୟ ସାମାଜିକ ପ୍ରସଙ୍ଗ। ଖୁବ କମ୍ ବୟସରେ ନିଜେ ଏବଂ ପରିବାର ବଞ୍ଚିବାର ବାଧ୍ୟତା ନେଇ ଅନେକ ଶିଶୁ ତାଙ୍କର ଭୂମିକା ବଦଳେଇ ଦିଅନ୍ତି। ରାସ୍ତାରେ ଜରି ଗୋଟେଇବା, କାଗଜ ବିକିବା, ଛୋଟ ଛୋଟ ଅପରାଧ କରିବା ଏବଂ ଅପ୍ରାକୃତିକ ଯୌନ ସଂପର୍କରେ ଲିପ୍ତ ରହିବା ଏମାନେ ବାଧ୍ୟ ହୋଇ କରନ୍ତି- କେବଳ ରୋଜଗାର ପାଇଁ।

ପ୍ରଶ୍ନ ତେଣୁ ଆସୁଛି, ଭୋକିଲାଙ୍କ ପାଇଁ ଖାଦ୍ୟର ସୁରକ୍ଷା କେବେ? ବିଶ୍ୱ କ୍ଷୁଧା ସୂଚଙ୍କରେ ଭାରତ ଆଉ କେତେ ଦିନ ରହିବ। ଲକ୍ଷ ଲକ୍ଷ ଟନ୍‌ର ଖାଦ୍ୟ ଶସ୍ୟ ସଢ଼ି ପୋଚ଼ ହୋଇଯାଉଥିଲେ ବି ଭୋକିଲାଙ୍କ ସଂଖ୍ୟା ଏଠି ବଢ଼ି ଚାଲିଛି କାହିଁକି? ଏଥିନେଇ କୌଣସି ରିପୋର୍ଟର ତଥ୍ୟକୁ ଗ୍ରହଣ କରି ଏବଂ ଏହାର ପ୍ରତିକାର ନକରି, ରିପୋର୍ଟ ନେଇ ରାଜନୀତି କରିବା ଦୁର୍ଭାଗ୍ୟ।

ଓଡ଼ିଶା ସରକାର ମାନନ୍ତୁ ବା ନମାନନ୍ତୁ ଓଡ଼ିଶାର ଗ୍ରାମାଞ୍ଚଳରେ ଏବେ ବି ଭୋକର ମାନଚିତ୍ରଟିଏ ରହିଛି। ଏହା ଏକ ନୀତି ଦିନିଆ ବାସ୍ତବତା।



# ସ୍ୱାର୍ଥପର ମଧ୍ୟବର୍ଗୀ

ବର୍ତ୍ତମାନର ବଡ଼ ବିଡ଼ମ୍ବନା ହେଲା, ଭାରତୀୟ ମଧ୍ୟବିତ୍ତ ଶ୍ରେଣୀ ଏବେ ବେଶ୍ ଅସହିଷ୍ଣୁ। ସବୁ କଥାରେ କ୍ଷୁବ୍ଧ। କୌଣସି ସମସ୍ୟାର ସମାଧାନ କଥା ଉଠିଲେ ଏମାନେ ଏତେ ଅସ୍ଥିର ଯେ କୌଣସି ସଠିକ୍ ରାୟ ଦେବାରେ ଅସମର୍ଥ। ଏଇ ମଧ୍ୟବିତ୍ତଙ୍କ ଭିତରେ ଅଛନ୍ତି ଡ଼ାକ୍ତର, ଇଞ୍ଜିନିୟର, ଅଧ୍ୟାପକ, ଓକିଲ, ସରକାରୀ ବାବୁ, ବ୍ୟବସାୟୀ ଏବଂ ଠିକାଦାର। ଏମାନେ ଏବେ ଭାରତୀୟ ଜନସଂଖ୍ୟାର ପ୍ରାୟ ତିରିଶ ପ୍ରତିଶତରୁ ଅଧିକ। ଗତ ଦୁଇ ଦଶନ୍ଧି ଧରି ଏମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି।

ବେଳେ ବେଳେ ଆଶ୍ଚର୍ଯ୍ୟ ଲାଗେ ଯେତେବେଳେ ନିଜର ଦାମିକା କାରକୁ ରାସ୍ତା ଉପରେ ରଖି ଏବଂ ଦୋକାନରୁ ଟ୍ରିପଲ ଫାଇଭ ସିଗାରେଟ୍ କିଣିଲା ବେଳେ ମଧ୍ୟବର୍ଗୀ ଜଣକ ପେଟ୍ରୋଲରେ ଚାଳିଶ ପଇସା ବଢ଼ିଗଲା ଜାଣି ସରକାରକୁ ଗାଳିଦିଏ। ଏବଂ ଏ ଆଶ୍ଚର୍ଯ୍ୟ ବି ଲାଗେ, ଯେତେବେଳେ ସେଇ ମଧ୍ୟବର୍ଗୀ ଜାଳେଣୀ ଗ୍ୟାସରେ ରିହାତି ଉଠିବା ଖବର ପାଇ ବେଶ୍ ଅସହିଷ୍ଣୁ ହୋଇଯାଏ। ଭାରତୀୟ ମଧ୍ୟବିତ୍ତ ଶ୍ରେଣୀ ତେଣୁ କିପରି ସ୍ୱାର୍ଥପର ହିଁ ଲାଗୁଛି। ଯେମିତି ଏଠି ସବୁ ପିଠା ତା'ର।

ପୃଥିବୀର ସମସ୍ତ ସମାଜରେ ତିନୋଟି ଶ୍ରେଣୀ ଥାଏ। ଉଚ୍ଚବର୍ଗ, ମଧ୍ୟବର୍ଗ ଏବଂ ନିମ୍ନବର୍ଗ। ଏଇ ତିନୋଟି ସାମାଜିକ ଶ୍ରେଣୀ ଭିତରେ ସନ୍ତୁଳନ ରହିଲେ ସମାଜ ସମୃଦ୍ଧ ହୋଇଥାଏ। ଏବଂ ଅସଲ କଥା ହେଲା, ଏଇ ତିନି ଶ୍ରେଣୀ ମଧ୍ୟରେ ମଧ୍ୟବର୍ଗୀମାନେ ଅଧିକ ସଚେତନ।

ଏଇ ତିନିଶ୍ରେଣୀଙ୍କ ସ୍ୱଭାବ ଏବଂ ସ୍ୱରୂପର କିଛି କଥା ଏଇଠି ଅବତାରଣା କରାଯାଇପାରେ। ମଧ୍ୟବର୍ଗୀ ଦେଶ ଗଠନ କଥା ଚିନ୍ତା କରେ। ଭବିଷ୍ୟତ ପାଇଁ ଏଜେଣ୍ଡା ପ୍ରସ୍ତୁତ କରେ। ଅର୍ଥନୀତିର ବ୍ଲୁ ପ୍ରିଣ୍ଟ ତିଆରି କରେ। ସାମାଜିକ ମୂଲ୍ୟବୋଧ ଏବଂ ନୈତିକତାର କିପରି ସୁରକ୍ଷା ହେବ ଏକଥା ଚିନ୍ତା କରେ। କୁହାଯାଏ, କୌଣସି ସମାଜର ମଧ୍ୟବର୍ଗୀ ସେ ସମାଜର ମେରୁଦଣ୍ଡ।

ଦେଶର ନିମ୍ନବର୍ଗୀ ଗରିବ ଲୋକ କିନ୍ତୁ ଅନ୍ୟ ଚିନ୍ତାରେ ଥାଆନ୍ତି। ଡ଼ିଜେଲ ଏବଂ ପେଟ୍ରୋଲ ଦର ବଢ଼ିବା ନେଇ ସେମାନଙ୍କର ବ୍ୟସ୍ତତା ନଥାଏ। ସୁଭ୍ ବିଳାସପୂର୍ଣ୍ଣ କାରର ଦାମ୍ କେତେ ବଢ଼ିଲା, ଏ ଖବରରେ ସେମାନେ ନଥାନ୍ତି। କେଉଁ କଂପାନୀର

ସୂଚ଼ଙ୍କ କେତେ ଅଛି ଜାଣନ୍ତି ନାହିଁ। ଜିନିଷର ବିଜ୍ଞାପନ ତାଙ୍କ ପାଇଁ ମାନେ ରଖେନା। ସେମାନେ କେବଳ ନିଜର ମୌଳିକ ଆବଶ୍ୟକତା ନେଇ ଚିନ୍ତାରେ ରହିଥାଆନ୍ତି। ସେ ଆବଶ୍ୟକତା ଭିତରେ ଖାଦ୍ୟ, ବାସଗୃହ, ପୋଷାକ, ପିଲାଙ୍କ ଶିକ୍ଷା ଏବଂ ସ୍ୱାସ୍ଥ୍ୟ ଚିନ୍ତା ରହିଥାଏ। ନିର୍ବାଚନରେ ଏମାନେ ଭାଗ ନିଅନ୍ତି। ଦରକାର ହେଲେ ସରକାର ବଦଳାନ୍ତି। ଏବଂ ଅନ୍ୟ ସବୁ କାମ ମଧ୍ୟବର୍ଗୀଙ୍କ ପାଇଁଛାଡ଼ି ଦେଇଥାନ୍ତି। ମଧ୍ୟବର୍ଗୀମାନଙ୍କୁ ଭାରତୀୟ ନିମ୍ନବର୍ଗୀମାନେ ରୋଲ ମଡ଼େଲ୍ ଭାବେ ଦେଖନ୍ତି।

ଅଥଚ ଭାରତୀୟ ଉଚ୍ଚବର୍ଗୀ ଧନୀମାନଙ୍କର ସ୍ୱଭାବ କିନ୍ତୁ ନିଆରା। ଜାତୀୟତାବୋଧ ଏମାନଙ୍କ ପାଖରେ ପ୍ରାୟ କମ୍। ପୃଥିବୀକୁ ଏକ ବୃହତ ବଜାର ଭାବି ଏମାନଙ୍କର ସବୁ କଳ୍ପନା ଏବଂ ସବୁ କାମ ସ୍ଥିରିକୃତ ହୋଇଥାଏ। ନିଜର ଡ୍ରଇଁ ରୁମ୍ କିମ୍ବା ବାର୍‌ରେ ବସି ଭାରତର ଭଲ ପେଣ୍ଟିଂ ନେଇ ଏମାନେ ଆଲୋଚନା କରନ୍ତି। ସଦ୍ୟ ପ୍ରକାଶ ପାଇଥିବା କୌଣସି ଏକ ଉପନ୍ୟାସରେ କେଉଁ ସମ୍ଭ୍ରାନ୍ତ ଜୀବନ ଶୈଳୀର ବର୍ଣ୍ଣନା ରହିଛି ତାକୁ ନେଇ ତର୍ଜମା କରନ୍ତି। ଏବଂ ଏମାନେ ସ୍ୱପ୍ନ ଦେଖନ୍ତି ଭାରତ କେବେ ସୁପର ପାୱାର ହେବ। ଆର୍ଥିକ ତଥା ସାମରିକ ଭାବେ ଦେଶ କେବେ ମହାଶକ୍ତି ହୋଇଯିବ। ଅନ୍ୟ କଥାରେ କହିଲେ, ଏକ ସମୃଦ୍ଧ ଦେଶ ଗଠନ ପାଇଁ ଏମାନଙ୍କର ସେମିତି କିଛି ଠୋସ୍ କାର୍ଯ୍ୟକ୍ରମ ନଥାଏ।

ସତକଥା ହେଲା ଧନୀମାନଙ୍କ ସ୍ୱପ୍ନକୁ ଭାରତୀୟ ମଧ୍ୟବର୍ଗୀମାନେ କିଣନ୍ତି। କିନ୍ତୁ ସ୍ୱପ୍ନକୁ ସାକାର କରିବାକୁ ଯେତେବେଳେ ତ୍ୟାଗ କରିବା କଥା ଉଠେ, ଏମାନେ କୁଣ୍ଠାବୋଧ କରିଥାଆନ୍ତି।

ଆମେ ସ୍ୱପ୍ନ ଦେଖୁଛୁ ଭାରତ ମହାଶକ୍ତି ହେଉ। ମହାଶକ୍ତିର ଅର୍ଥ ହେଲା ଯେଉଁ ଦେଶର ସାମରିକ ଉପସ୍ଥିତି ପୃଥିବୀର ସବୁ ଦେଶରେ ଥାଏ। ଆକାଶ, ଜଳ, ସ୍ଥଳ ସବୁଠି ସାମରିକ ଶକ୍ତିର ପ୍ରଦର୍ଶନ ଥିଲେ ଜଣେ ସୁପର ପାୱାର ହୁଏ। ଏପରି ସାମରିକ ଉପସ୍ଥିତି ପାଇଁ ଅର୍ଥ ଦାରକାର। ସେଇଥିପାଇଁ ପ୍ରଶ୍ନ ଆସେ, ଏ ଶକ୍ତି ଆହରଣ ପାଇଁ ଅର୍ଥ ଆସିବ କୁଆଡୁ?

ଗତ ବଜେଟ ଉପସ୍ଥାପନ ବେଳେ ଭାରତର କେନ୍ଦ୍ର ଅର୍ଥମନ୍ତ୍ରୀ ପି. ଚିଦାମ୍ବରମ୍ ଅସନ୍ତୋଷ ପୋଷଣ କରି କହିଲେ- ଭାରତର ଧନୀଙ୍କ ସଂଖ୍ୟା ମାତ୍ର ବୟାଳିଶ ହଜାର ଆଠଶହ। ଧନୀର ଅର୍ଥ ହେଲା ଯେଉଁମାନେ ବାର୍ଷିକ କୋଟିଏ ଟଙ୍କା ବା ତଦୂର୍ଦ୍ଧ୍ୱ ଆୟ ଦେଖାନ୍ତି। ଅନ୍ୟ ଅର୍ଥରେ କହିଲେ, ଯେଉଁମାନଙ୍କର ସର୍ବନିମ୍ନ ମାସିକ ଆୟ ପ୍ରାୟ ୮ଲକ୍ଷ ପଚ଼ଶ ହଜାର ଟଙ୍କା। ଚିଦାମ୍ବରମ କହିଲେ, ଆୟକର ଅଫିସରେ ଥିବା ଏ ହେଉଛି ସରକାରୀ ହିସାବ। ମନ୍ତ୍ରୀ ମହୋଦୟ ଏକଥା ବି କହିଥିଲେ, ତାଙ୍କର ଯାହା ରିପୋର୍ଟ, ଭାରତରେ ରାଜଧାନୀ ଦିଲ୍ଲୀରେ କେବଳ ବର୍ଷକୁ କୋଟିଏ ଟଙ୍କାରୁ ଅଧିକ

ରୋଜଗାର କରୁଥିବା ଲୋକଙ୍କ ସଂଖ୍ୟା ସେଇ ବୟାଳିଶ ହଜାର ଆଠଶହ ହେବ। କିମ୍ବା ତା'ଠାରୁ ଅଧିକ ହୋଇପାରେ। ଏ ଲେଖକ ମଧ୍ୟ ଭାବେ, କୌଣସି ଏକ ଛୋଟ ସହରରେ ମାସିକ ସାଢ଼େ ଆଠଲକ୍ଷ ଟଙ୍କା ଆୟ କରୁଥିବା ବ୍ୟକ୍ତିମାନେ ଶତାଧିକ ଥାଇପାରନ୍ତି।

ପ୍ରଶ୍ନ ଆସେ, ଧନୀ ନିଜକୁ ଧନୀ କହିବାକୁ କୁଣ୍ଠା କାହିଁକି କରୁଛି। ଉଚ୍ଚବର୍ଗୀ ହେବା ଲଜ୍ଜ୍ୟା କିମ୍ବା ଅପମାନ ବି ନୁହେଁ। ଉତ୍ତର ବୋଧେ ଏଇଆ ହୋଇପାରେ, ପ୍ରତ୍ୟେକ ସାମାଜିକ ଶ୍ରେଣୀ ସଂପ୍ରତି ତା'ଠାରୁ ନିମ୍ନବର୍ଗୀ ହେବାକୁ ଉଚିତ୍ ମଣୁଛନ୍ତି। ଧନୀ ଚାହେଁ ମଧ୍ୟବର୍ଗୀ ହେଉ। ମଧ୍ୟବର୍ଗୀ ବି ଚାହେଁ ସେ ଧନୀ ହେବାର ସ୍ୱପ୍ନ ଦେଖୁ, କିନ୍ତୁ ନିମ୍ନବର୍ଗର ସୁବିଧା ପାଉ। ଏବଂ ସବୁଠାରୁ ବଡ଼କଥା ହେଲା ଅନେକ ମଧ୍ୟବର୍ଗୀ ଲଜ୍ଜ୍ୟା ହୀନ ଭାବେ ଦାରିଦ୍ର୍ୟ ସୀମାରେଖା ତଳେ ରହି ବି.ପି.ଏଲ୍. ହେବାକୁ ପ୍ରତିଯୋଗୀତା କରୁଛନ୍ତି।

ଆର୍ଥିକ ସ୍ଥିତିକୁ ନେଇ ନିମ୍ନମୁଖୀ ହେବାର ଏ ପ୍ରତିଯୋଗୀତା ଭାରତରେ ଏବେ ଏକ ସାମାଜିକ ଅସନ୍ତୁଳନ ବି ସୃଷ୍ଟି କଲାଣି। ପ୍ରାୟ ଅଧିକାଂଶ ଏବେ ନୀଚ ଜାତି ହେବାକୁ ଆନ୍ଦୋଳନ କରୁଛନ୍ତି। ସାଧାରଣ ବର୍ଗର ଲୋକମାନେ ପଛୁଆବର୍ଗ ବା ଓ.ବି.ସି. ହେବାକୁ ଚିନ୍ତିତ। ଓ.ବି.ସି.ମାନେ ଦଳିତ ହେବାକୁ ପ୍ରତିଯୋଗୀତାରେ ଅଛନ୍ତି। ଦଳିତମାନେ ଆଦିବାସୀ ହେବାକୁ ତତ୍ପର। ଏଇ କାରଣକୁ ନେଇ ଗତ କିଛିବର୍ଷ ତଳେ ଫୁଲବାଣୀରେ ବଙ୍ଗା ବି ହୋଇଗଲା। କିନ୍ତୁ ସ୍ୱାଧୀନତା ପୂର୍ବରୁ ଯେଉଁ ଜାତିଭିତ୍ତିକ ଜନଗଣନା ହେଉଥିଲା ସେବେ ଅନେକ ନୀଚ ଜାତିର ଲୋକ ଉଚ୍ଚ ଜାତିରେ ନିଜକୁ ପଞ୍ଜିକରଣ କରିବାକୁ ଆବେଦନ କରୁଥିଲେ। ଏଥିନେଇ ଅନେକ ଜାତିଗତ ସଂଘର୍ଷ ହେବା କଥା ୧୯୩୧ ଜନଗଣନାରେ ରହିଛି। ଦୁଃଖ ହେଲା, ଭାରତୀୟ ମଧ୍ୟବର୍ଗୀ ନିଜର ସ୍ୱାର୍ଥ ପାଇଁ କୌଣସି ସରକାରୀ ସୁବିଧାକୁ ହାତଛଡ଼ା କରିବାକୁ ଚାହୁଁ ନାହିଁ।

ଗତବର୍ଷ ଧନତରାସ ଦିନ ଖବର ଆସିଲା, ଭାରତସାରା ଶହ ଶହ କୁଇଣ୍ଟାଲ ସୁନା ବିକ୍ରି ହେଲା। ଭାରତୀୟ ମଧ୍ୟବର୍ଗୀମାନେ ନିଜପାଇଁ ଦାମିକା ଅଳଙ୍କାରମାନ କିଣିଲେ। ଏବେ ୧୦ ଗ୍ରାମ୍ ସୁନାର ଦାମ୍ ପ୍ରାୟ ତିରିଶ ହଜାର ଟଙ୍କା। ୧୯୭୫ ମସିହାରେ ଏଇ ପରିମାଣର ସୁନା ଦାମ୍ ଥିଲା ମାତ୍ର ୫୦୦ଟଙ୍କା।

ଭାରତର ମଧ୍ୟବିତ୍ତ ଶ୍ରେଣୀ କିନ୍ତୁ ଏଇ ସୁନା ଦର ବୃଦ୍ଧିକୁ କେବେ ପ୍ରତିବାଦ କରେ ନାହିଁ। ଯଦିଓ ସେ ଜାଣେ ଦେଶର ଗଚ୍ଛିତ ବିଦେଶୀ ପୁଞ୍ଜି ବ୍ୟୟ କରି ଏ ଦେଶର ଜାତୀୟ ସରକାର ବିଦେଶରୁ ସୁନାକିଣି ଥାଆନ୍ତି ଏବଂ ମଧ୍ୟବର୍ଗୀଙ୍କର ଚାହିଦା ମେଣ୍ଟାଇ ଥାଆନ୍ତି। କିନ୍ତୁ ବିଡ଼ମ୍ବନାର କଥା ହେଲା, ସୁନା ବୃଦ୍ଧିକୁ ବିରୁଦ୍ଧ କରୁନଥିବା

ମଧ୍ୟବର୍ଗୀ ନିଜ ଘର ଚାକରାଣୀର ରେସନ ଦୋକାନରେ ବି.ପି.ଏଲ୍.ରେ ଚାଉଳ ଦର କମିବା ଶୁଣିଲେ ଚିହିଁକି ପଡ଼େ; ନିଜ ଡ୍ରାଇଭର ପିଲାର ମାଗଣା ପୋଷାକ ଖବର ପାଇଲେ ଅସହିଷ୍ଣୁ ହୋଇଯାଏ। ବିଧବା ଏବଂ ବାର୍ଦ୍ଧକ୍ୟ ଭତ୍ତା ପାଇଁ ସାମାଜିକ କ୍ଷେତ୍ରରେ ବ୍ୟୟବରାଦକୁ ଏମାନେ ସହ୍ୟ କରୁଥିବା କାହିଁକି ମନେ ହୁଏ ନାହିଁ।

ସୁତରାଂ ଏ ଲେଖକର ଶେଷକଥା ହେଲା, ଭାରତୀୟ ମଧ୍ୟବର୍ଗୀ ଏଠି ଯେପରି ଆଦର୍ଶ ତଥା ରୋଲମଡ଼େଲ ହେବା କଥା ହେଉ। ସିଭିଲ ସମାଜ ସମାବେଶରେ ଦୁର୍ନୀତି ବିରୁଦ୍ଧରେ ସ୍ଲୋଗାନ ଦେଲାବେଳେ ସେ ନିଜେ ଯେ ଦୁର୍ନୀତି ଗ୍ରସ୍ତ ନୁହଁ, ତାର ଆତ୍ମ ସମୀକ୍ଷା କରୁ। ଏବଂ ନିଜେ ମଲ୍ ତଥା ରେଷ୍ଟୁରାଣ୍ଟ୍‌ରେ ଭଲ ଖାଇବା ବେଳେ ଗରିବ ପିଲାଙ୍କର ମଧ୍ୟାହ୍ନ ଭୋଜନ କିପରି ଆହୁରି ଭଲ ହେବ ଚିନ୍ତା କରୁ।

ମଧ୍ୟବର୍ଗୀଙ୍କ ଏ ହେଉଛି ସାମାଜିକ ପ୍ରତିବଦ୍ଧତା। ଉତ୍ତର ଦାୟିତ୍ୱ। ପ୍ରତିବଦ୍ଧତା ନ ରହିଲେ ଭାରତୀୟ ସମାଜ ଏମାନଙ୍କୁ ସ୍ୱାର୍ଥପର ବୋଲି ହିଁ କହିବ।



# ଗଣତନ୍ତ୍ରର ରାଜପୁତ୍ରମାନେ

ଭାରତୀୟ ଜାତୀୟ କଂଗ୍ରେସର ଉପସଭାପତି ରାହୁଲ ଗାନ୍ଧୀଙ୍କ ଘୋଷଣା ଏବେ କଂଗ୍ରେସ ଦଳ ଭିତରେ ଭୟ ସଂଚର କରିଦେଇଛି । ଏବଂ ଏ ଆଶଙ୍କା ବି ସୃଷ୍ଟି ହୋଇଛି, ଯଦି କଂଗ୍ରେସ ଦଳ ଉଦାହରଣ ସୃଷ୍ଟି କରେ, ତେବେ ହୁଏତ ରାହୁଲ ଗାନ୍ଧୀଙ୍କ ଧାରା ଅନ୍ୟ ରାଜନୈତିକ ଦଳକୁ ପ୍ରଭାବିତ କରିପାରେ । ହଁ ପାଠକ ବନ୍ଧୁ ! ରାହୁଲଙ୍କ ଘୋଷଣା ହେଲା, ଗୋଟିଏ ପରିବାରର ଜଣଙ୍କୁ ଏଥର ନିର୍ବାଚନ ପାଇଁ ଦଳୀୟ ଟିକେଟ ମିଳିବ । ଏ ପର୍ଯ୍ୟନ୍ତ ବାପ, ପୁଅ, ମା', ଝିଅ, ବୋହୁଙ୍କୁ ଯେଉଁ ଏକ ସାଙ୍ଗରେ ଟିକେଟ ମିଳିଯାଉଥିଲା, ଆଉ ତାହା ମିଳିବନି । ଅର୍ଥାତ୍ ପରିବାରଟିଏ ରାଜନୀତି କରିପାରେ କିନ୍ତୁ ନିର୍ବାଚନ ଲଢ଼ିବାକୁ ଜଣଙ୍କୁ ମାତ୍ର ଦଳ ସୁବିଧା ଦେବ । ଘୋଷଣା ପ୍ରକୃତରେ ମନ୍ଦ ନୁହେଁ; ଭଲ ।

ଦୀର୍ଘ ୬୩ ବର୍ଷ ଧରି ଭାରତରେ ଗଣତନ୍ତ ଚାଲିଥିଲେ ବି ମନେହୁଏ, ଏଠାରେ ଯେପରି ରାଜତନ୍ତ ଚାଲିଛି । ରାଜାଙ୍କ ପରେ ରାଜପୁତ୍ର ବା ରାଜଜେମାମାନେ କ୍ଷମତାର ସିଂହାସନକୁ ଆସୁଛନ୍ତି । ଏବଂ ଭାରତୀୟ ଭୋଟରମାନେ ନିଜର ମତ ଦେଇ ଏମାନଙ୍କୁ ସ୍ୱୀକୃତି ବି ଦେଉଛନ୍ତି । କ୍ଷମତାରେ ଥିବା ଜଣେ ରାଜନୈତିକ ଶାସକକୁ ତା'ର ନିଜ ଆତ୍ମୀୟକୁ କାହିଁକି ଉତ୍ତରାଧୀକାରୀ ବାଛୁଛି ବୋଲି ପ୍ରଶ୍ନ କଲେ ଉତ୍ତର ଆସୁଛି- ଏଠାରେ ଯଦି ପିଅନ ନିଜ ପୁଅକୁ ପିଅନ ରଖିବାକୁ ଲବି କରିପାରେ, ନେତା ତା ପୁଅ ପାଇଁ ସୁଯୋଗ ସୃଷ୍ଟି କଲେ କ୍ଷତି କ'ଣ ? ଏପରି ବି ହେଉଛି ବଡ଼ ବଡ଼ ଚାକିରୀ କରୁଥିବା ଅନେକ ବ୍ୟକ୍ତି ନିଜ ଚାକିରୀ ଛାଡ଼ି ବାପାଙ୍କ ରାଜନୈତିକ କ୍ୟାରିୟରରେ ଯୋଗ ଦେଉଛନ୍ତି । କାରଣ ରାଜନୀତି ଏବେ ବେଶ୍ ଲୋଭନୀୟ କ୍ୟାରିୟର । ଏଥିରେ କ୍ଷମତା, ମର୍ଯ୍ୟାଦା, ଉପଭୋଗ ଏବଂ ଉପାର୍ଜନ ବହୁତ ଭଲ ଅଛି ।

ପ୍ରଶ୍ନ ଆସେଁ, ଗଣତାନ୍ତ୍ରିକ ଶାସନରେ ଯେଉଁ ଦୃଢ଼ ପ୍ରଗତି ହେବା କଥା ତାହା ହେଉ ନାହିଁ କାହିଁକି ? ଉତ୍ତର ହେଲା, ଆମେ ଉପଯୁକ୍ତ ଲୋକପ୍ରତିନିଧି ବାଛି ପାରୁନାହୁଁ । ପ୍ରତିନିଧି ନିର୍ବାଚନରେ ଆମେ ସେତେ ବିଚାରବନ୍ତ ହେଉ ନାହୁଁ ।

ଏହାର କିଛି କାରଣ ଦିଆଯାଏ । ପ୍ରଥମେ କାରଣ ହେଲା, ପ୍ରାର୍ଥୀ ବାଛିବାରେ ଆମେ ଭୋଟଦାତାମାନେ ଅନେକ ସମୟରେ ଆବେଗର ବଶବର୍ତ୍ତୀ ହେଉ । ଏମିତି ତ

ଦେଖିବାକୁ ଗଲେ ଭାରତୀୟମାନେ ବେଶ୍ ଭାବପ୍ରବଣ। ଯେଉଁ ଜଣଙ୍କୁ ଭଲ ପାଉ, ତା'ର ଆତ୍ମୀୟମାନଙ୍କୁ ଭଲ ପାଇବା ଏକ ଧାରାରେ ପରିଣତ କରିଦେଉ। ଟି.ଭି. ଏବଂ ଫିଲ୍ମରେ ସଫଳତା ପାଇଥିବା ନାୟକ ନାୟିକାଙ୍କ ପିଲାମାନଙ୍କୁ କେବେ ବ୍ରେକ୍ ମିଳିଲେ ଆମେ ତାକୁ ତାରିଫ୍ କରୁ। ଏଇ ଯେମିତି ଅମିତାଭ ବଚନଙ୍କ ପୁଅ ସିନେମାରେ ଆସିଲା ବେଳେ ବିଗ୍ ବି ଙ୍କର ଏକ କ୍ଲୋନ୍ ଆସିଗଲା କହି ଆମେ ଆହ୍ଲାଦିତ ହୋଇଗଲୁ। ଜୁନିୟରଙ୍କ ଭିତରେ କିଛି ପ୍ରତିଭା ଥାଉ ବା ନଥାଉ, ଯା'ଆସ ନାହିଁ। ଅସଲ କଥା କିନ୍ତୁ ହେଲା- ସିନେମାରେ ଜୁନିୟର ଫ୍ଲପ୍ କଲେ କିଛି ଅସୁବିଧା ହୁଏ ନାହିଁ। ଅଥଚ ରାଜନୀତିରେ ନେତାଙ୍କ ଜୁନିୟର ଯଦି ବିଫଳ ହୁଏ ଏହା ଦେଶ ପାଇଁ ବିପଦ ହୋଇଯାଇଥାଏ। ସୁତରାଂ, ଭୋଟ ଦାତାମାନେ ବିଗ୍ଚରଣୀଳ ଏବଂ ର୍‍ୟାସନାଲ ହେବା ଦରକାର। କାରଣ ଜଣଙ୍କୁ ଶ୍ରଦ୍ଧା କରିବା ଏବଂ ରାଜନୈତିକ ନିଷ୍ପତ୍ତି ନେଇ ଭୋଟ ଦେବା ଏକା କଥା ନୁହେଁ।

ଏ ଲେଖକ ଏକଥା କିନ୍ତୁ କହିବାକୁ ଚାହେଁନା ଯେ ରାହୁଲ ଗାନ୍ଧୀ ଏକ ଫ୍ଲପ୍ ସୋ'ରେ ଅଛନ୍ତି। ଏହା ନିଶ୍ଚିତ ଯେ, ରାହୁଲ ଜଣେ ଭଲ ବକ୍ତା। ଉଭୟ ଇଂରାଜୀ ଓ ହିନ୍ଦୀରେ ଖୁବ୍ ସୁନ୍ଦର ଭାଷଣ ଦେଇ ପାରନ୍ତି। ସାଂଗଠନିକ ଦକ୍ଷତା ତାଙ୍କର ଅଛି। ଭାରତର ଗାଁ ଗହଳିର ଆଭ୍ୟନ୍ତରୀଣ ଚିତ୍ର ବ୍ୟକ୍ତିଗତ ଭାବେ ଜାଣିବାରେ ସେ ବେଶ୍ ଇଚ୍ଛୁକ। ନିଜର ନିଜସ୍ୱ ସ୍ୱପ୍ନ ତଥା ଚିନ୍ତା ମଧ୍ୟ ଅଛି। କିନ୍ତୁ ଦେଶକୁ ଶାସନ କରିବାର ଦକ୍ଷତା ଏବେ ଅପରିକ୍ଷିତ ହୋଇ ରହିଛି। ଅଥଚ ଏ ଦେଶରେ ଆହୁରି ଅନେକ ରାଜପୁତ୍ରମାନେ ରାଜଗାଦୀ ପାଇଁ ଅପେକ୍ଷାରେ ଅଛନ୍ତି ଯେଉଁମାନେ ନିଜର ବାପା ମା'ଙ୍କ ପ୍ରତି ଥିବା ସାଧାରଣ ଜନତାର ଆବେଗକୁ ପାଥେୟ କରି ରାଜୁତି କରିବାର ଆଶା ରଖିଛନ୍ତି।

ଗଣତନ୍ତ୍ରରେ ରାଜପୁତ୍ରମାନେ ସୃଷ୍ଟି ହେବାର ଦ୍ୱିତୀୟ କାରଣଟି ହେଲା, ରାଜନୈତିକ ପ୍ରତିଭା ଚିହ୍ନଟ କରି ତାଙ୍କୁ ପ୍ରଶିକ୍ଷିତ କରିବା ନିମନ୍ତେ ଭାରତରେ ସେମିତି କିଛି ଅନୁଷ୍ଠାନ ବା ମେକାନିଜିମ୍ ନାହିଁ, ଯଦିଓ ଡ଼ାକ୍ତର ଏବଂ ଇଞ୍ଜିନିୟର ଗଢ଼ିବା ପାଇଁ ଆମେ ଅନେକ ଅନୁଷ୍ଠାନ ପ୍ରତିଷ୍ଠା କରିଛୁ। ଆମେରିକା ଜର୍ଜଟାଉନ୍‌ରେ ଏକ ବିଶ୍ୱବିଦ୍ୟାଳୟ ରହିଛି ଯେଉଁଠି ରାଜନୈତିକ କ୍ୟାରିୟର ଗଢ଼ିବା ପାଇଁ ପ୍ରଶିକ୍ଷଣ ଦିଆଯାଏ। ରାଜନୀତିରେ ରୁଚି ଏବଂ ପ୍ରତିଭା ଥିବା ବ୍ୟକ୍ତିଙ୍କୁ ଏଠି ଚିହ୍ନଟ କରାଯାଏ।

କୌଣସି ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ପ୍ରତିଭାକୁ ଭଗବାନଙ୍କ ଦ୍ୱାରା ଦିଆଯାଇଥିବା ବର ବୋଲି କୁହାଯାଏ। ଏହି ବର ସମସ୍ତଙ୍କ ପାଖରେ ନଥାଏ। ଏହା ଜଣଙ୍କୁ ଅନ୍ୟ ଜଣଙ୍କ ଠାରୁ ପୃଥକ ବୋଲି ପରିଚୟ ଦେଇଥାଏ। ସେଇଥିପାଇଁ ତ କୁହାଯାଏ ପ୍ରତିଭା ଗୋଟେ ସାର୍ବଜନୀନ ବର ବା ଦାନ ନୁହେଁ। ଏହା ଅନ୍‌ଫେୟାର ଗିଫ୍ଟ।

ଦୁଃଖ ଯେ, ଭାରତରେ ସାଧାରଣରେ ଥିବା ରାଜନୈତିକ ପ୍ରତିଭା ସମ୍ପନ୍ନ ବ୍ୟକ୍ତିଙ୍କୁ ଅନ୍ୱେଷଣ କରି ମୁଖ୍ୟ ସ୍ରୋତକୁ ଅଣାଯାଇପାରିନାହିଁ। ଯେଉଁମାନେ ବା ଆସୁଛନ୍ତି, ସେମାନଙ୍କର ଉତ୍ସାହ କମ୍। କାରଣ ହେଉଛି, ଯେତେବେଳେ ରାଜପୁତ୍ରମାନେ ରାଜାଙ୍କ ପରେ ଗାଦିରେ ଅଭିଷିକ୍ତ ହେବେ ଏବଂ ସାଧାରଣ ଜନତା ତାଙ୍କୁ ଭୋଟ ଦେଇ ସମର୍ଥନ କରିବେ, ସେତେବେଳେ ଅନ୍ୟଜଣେ ବ୍ୟକ୍ତି ପରିଶ୍ରମ ବା କରିବ କାହିଁକି ? ରାଜନୀତିରେ ଶୀର୍ଷ ସ୍ଥାନରେ ଅବସ୍ଥାପିତ ହେବା ତା ପାଇଁ ତ ଅସମ୍ଭବ।

ଗଣତନ୍ତ୍ରର ଯୁବରାଜ ମାନଙ୍କ ଅଭ୍ୟୁଦୟର ତୃତୀୟ କାରଣଟି ହେଉଛି, ଏବେ ମଧ୍ୟ ଭାରତୀୟମାନେ ରାଜତନ୍ତ୍ର ତଥା ସାମନ୍ତବାଦର ନିଶାରୁ ମୁକୁଳି ପାରି ନାହାନ୍ତି। ହଜାର ହଜାର ବର୍ଷ ଧରି ରାଜତନ୍ତ୍ରର ମାନସିକତା ଆମ ଭିତରେ ଏବେ ବି ରହିଛି। ସମ୍ଭବତଃ ରାଜନୈତିକ ଧାରା ଆମ ଡ଼ି.ଏନ୍.ଏ. ଭିତରେ ଅଛି। ଜଣେ ରାଜ ପରିବାରର ଲୋକଟି ସାଧାରଣ ଜନତା ମଧ୍ୟକୁ ଓହ୍ଲାଇ ଆସିଲେ, ସାଧାରଣରେ ଉତ୍ସୁକତା ବଢ଼ିଯାଏ। ଦେଖିବାକୁ ଲମ୍ବା ଧାଡ଼ି ହୁଏ। ରାଜତନ୍ତ୍ର ପ୍ରତି ଥିବା ଆମ ଭିତରେ ଏଇ କେନ୍ଦ୍ରୀଭୂତ ମୋହ ଏଠି ପ୍ରତିଷ୍ଠିତ ନେତାଙ୍କ ପୁତ୍ର କନ୍ୟାଙ୍କୁ ଉତ୍ତରାଧିକାରୀ ଭାବେ ଗଢ଼ିତୋଳିବାକୁ ସାହାଯ୍ୟ କରୁଛି। ୬୩ ବର୍ଷର ଗଣତନ୍ତ୍ର କିଛି ଫରକ ଆଣି ପାରିନାହିଁ।

ଏବଂ ଶେଷକଥା ହେଲା, ଏ ଦେଶରେ ଏବେ ମଧ୍ୟ କୋଟି କୋଟି ଲୋକ ଅଛନ୍ତି ଯେଉଁମାନେ ଗଣତନ୍ତ୍ର କ'ଣ ବୁଝନ୍ତି ନାହିଁ। ପ୍ରତିଦିନ ବଞ୍ଚିବା ପାଇଁ ସେମାନେ ସଂଗ୍ରାମ କରୁଥାଆନ୍ତି। ଗଣତନ୍ତ୍ର ଯେ, "ଲୋକଙ୍କର, ଲୋକଙ୍କ ଦ୍ୱାରା ଏବଂ ଲୋକମାନଙ୍କ ପାଇଁ" ଏପରି ସ୍ଲୋଗାନର ସେମାନଙ୍କ ପାଇଁ କିଛି ଅର୍ଥ ନଥାଏ। ନେତାଙ୍କ ପୁଅ ବ୍ୟତୀତ ଅନ୍ୟମାନେ ଯେ ପ୍ରତିଭାପୂର୍ଣ୍ଣ ବ୍ୟକ୍ତି ଏଠି ରହିଛନ୍ତି, ତାଙ୍କୁ ଚିହ୍ନଟ କରି ଜାଣିବା ଏମାନଙ୍କ ପାଇଁ ସମ୍ଭବ ହୁଏ ନାହିଁ। ସେଥିପାଇଁ ବୋଧେ ରାଜନେତାମାନଙ୍କ ନିଜ ପୁତ୍ର, କନ୍ୟାଙ୍କୁ ଯୁବରାଜ, ଯୁବରାଣୀ କରିବାଟା ସହଜ ହୋଇ ଯାଉଛି।

ସୁତରାଂ 'ପରିବାରରୁ ନେତାଟିଏ", ରାହୁଲଙ୍କ ଏ ଫର୍ମୁଲା ଦେଶ ତଥା ଗଣତନ୍ତ୍ର ପାଇଁ ଭଲ ଫର୍ମୁଲା। ରାଜନୈତିକ ପରିବାରର ବାହାରେ ଥିବା ଅନେକ ପ୍ରତିଭା ସଂପନ୍ନ ବ୍ୟକ୍ତି ଏହାଦ୍ୱାରା ରାଜନୀତିର ଶୀର୍ଷକୁ ଆସିପାରିବେ। କିନ୍ତୁ, ଫର୍ମୁଲା ସଠିକ୍ ତଥା ନିରପେକ୍ଷ ଭାବେ କାର୍ଯ୍ୟକାରୀ ହେଲେ ହେଲା।





## ଲେଖକ ପରିଚିତି :

ନାମ : ଗୌରାଙ୍ଗ ଚରଣ ପରିଡ଼ା
ପିତା : ସ୍ୱର୍ଗତ ଚିନ୍ତାମଣି ପରିଡ଼ା
ମାତା : ସ୍ୱର୍ଗତା ନିଶାମଣି ଦେବୀ
ଜନ୍ମସ୍ଥାନ : ବରକେରା, ଡ଼େଲାଙ୍ଗ, ଜି.: ପୁରୀ
ବର୍ତ୍ତମାନ ବାସସ୍ଥାନ : ସର୍ବୋଦୟ ନଗର, ପୁରୀ
ଜନ୍ମ ତାରିଖ : ଫାଲଗୁନ ଶୁକ୍ଳ ଦ୍ୱିତୀୟା, ୧୯୫୪ ମସିହା
ଶିକ୍ଷାଗତ ଯୋଗ୍ୟତା : ଏମ୍.ଏ., ଏଲ୍.ଏଲ୍.ବି.

***ସାଂଗଠନିକ ପଦବୀ*** - ଜାତୀୟ ଅଡ଼ିଟ୍ ମହାସଂଘର ବିଭିନ୍ନ ପଦପଦବୀରେ ଅଧିଷ୍ଠିତ । ରାଷ୍ଟ୍ରୀୟ ଅଧକ୍ଷ ଏବଂ ବର୍ତ୍ତମାନ ଏହାର ରାଷ୍ଟ୍ରୀୟ ମହାସଚିବ (ସେକ୍ରେଟାରୀ ଜେନେରାଲ) । ଜାତୀୟ ଅଡ଼ିଟ୍ ମହାସଂଘ ଭାରତର କଂପ୍‌ଟ୍ରୋଲର ଏବଂ ଅଡ଼ିଟର ଜେନେରାଲ (ସି. ଏ.ଜି.)ଙ୍କ ଅଧୀନରେ ଥିବା ଏକ ସର୍ବଭାରତୀୟ କର୍ମଚାରୀ ମହାସଂଘ ।

***ପୁରସ୍କାର ଓ ସମ୍ମାନ*** - ସ୍ତମ୍ଭ ଲେଖା ତଥା ସାମାଜିକ ସେବା ପାଇଁ 'ଉତ୍କଳ ନକ୍ଷତ୍ର ସମ୍ମାନ-୨୦୦୯', ପ୍ରିୟପତ୍ର ସମ୍ମାନ -୨୦୦୯', ପୁରୀ ଜିଲ୍ଲା ସାମ୍ବାଦିକ ସଂଘ ସମ୍ମାନ-୨୦୧୨', ଶ୍ରୀଜଗନ୍ନାଥ ସଂସ୍କୃତି-ସୁରକ୍ଷା ବାହିନୀ ପ୍ରଦତ୍ତ 'ପ୍ରାଇଡ୍ ଅଫ୍ ଶ୍ରୀକ୍ଷେତ୍ର ସମ୍ମାନ-୨୦୧୩ ଏବଂ କିଛି ସାମାଜିକ ଅନୁଷ୍ଠାନ ଦ୍ୱାରା ବିଶେଷ ସମ୍ବର୍ଦ୍ଧିତ ।